# ପ୍ରଗତି ଉତ୍କଳ ସଂଘ

ଓ

## ରାଉରକେଲାର ସାଂସ୍କୃତିକ ବିକାଶଧାରା



ସଂପାଦକ : ଡକ୍ଟର ଶ୍ରୀଚରଣ ମହାନ୍ତି

# ପ୍ରଗତି ଉତ୍କଳ ସଂଘ
# ଓ
# ରାଉରକେଲାର ସାଂସ୍କୃତିକ ବିକାଶଧାରା




ସଂପାଦକ

ଡକ୍ଟର ଶ୍ରୀଚରଣ ମହାନ୍ତି

# ପ୍ରଗତି ଉତ୍କଳ ସଂଘ ଓ ରାଉରକେଲାର ସାଂସ୍କୃତିକ ବିକାଶଧାରା

ସଂପାଦକ — ଡକ୍ଟର ଶ୍ରୀଚରଣ ମହାନ୍ତି,
ଏମ୍.ଏ., ଏମ୍.ଫିଲ୍., ପିଏଚ୍.ଡି., ଓ.ଇ.ଏସ୍.
ଅଧ୍ୟାପକ, ରାଉରକେଲା ସରକାରୀ ମହାବିଦ୍ୟାଳୟ,

ପ୍ରକାଶକ — ପ୍ରଗତି ଉତ୍କଳ ସଂଘ,
ବି/୯, ଫକୀରମୋହନ ନଗର (ସେକ୍ଟର-୭),
ରାଉରକେଲା—୭୬୯୦୦୩ ।

ପ୍ରଥମ ସଂସ୍କରଣ : ୧୯୯୦

ପରିବେଷକ — ଦି ବେଷ୍ଟ, ମଧୁସୂଦନ ମାର୍କେଟ,
ରାଉରକେଲା—୭୬୯୦୧୧ ।

— ସରସ୍ୱତୀ ପ୍ରିଣ୍ଟିଂ ପ୍ରେସ, ଶକ୍ତିନଗର,
ରାଉରକେଲା—୧୪ ।

ମୂଲ୍ୟ — କୋଡ଼ିଏ ଟଙ୍କା ମାତ୍ର ।

**Pragati Utkal Sangh O**
**Rourkelar Samskrutik Vikashdhara**
(Pragati Utkal Sangh and
Cultural Development of Rourkela)

Editor : Dr. S. Mohanty,
Lecturer, Govt. College, Rourkela

Published by : Pragati Utkal Sangh,
B/9, Sector - 7
Rourkela - 769003

Distributer : The Best
Madhusudan Market
Rourkela - 769011

Printed at : Saraswati Printing Press
Shaktinagar, Rourkela-769014

**Price - Rupees Twenty Only**

# ସୂଚୀପତ୍ର

## ପ୍ରଥମ ଭାଗ

# ଦ୍ୱିତୀୟ ଭାଗ

## ରାଉରକେଲାର ସାଂସ୍କୃତିକ ବିକାଶଧାରା

# ସେମାନଙ୍କ ଦୃଷ୍ଟିରେ...............

ଆପଣମାନଙ୍କର ଉଦ୍ୟମ ସଫଳ ହେଉ, ମୋର ଯିବାପାଇଁ ପ୍ରବଳ ଇଚ୍ଛା ଥିଲେ ମଧ୍ୟ ରକ୍ତଚାପ ବଢିଥିବାରୁ ଏମାନେ ମନା କରୁଛନ୍ତି । ଆପଣମାନଙ୍କ କାର୍ଯ୍ୟପ୍ରତି ଶୁଭେଚ୍ଛା ଓ ଆଶୀର୍ବାଦ ରହୁଛି । ଭଲ ମଣିଷ ହୋଇ ଭଲକାମ ସମସ୍ତେ କରନ୍ତୁ ।

ଆଚାର୍ଯ୍ୟ ହରିହର ଦାସ
୨୬-୩-୧୯୭୯

ରାଉରକେଲା ଯାଇ ଆପଣମାନଙ୍କ ସହ ଭେଟନ୍ତି — କେତେ ସୌଭାଗ୍ୟ ହୁଅନ୍ତା, ତେବେ ଏ ବାର୍ଦ୍ଧକ୍ୟ ବୟସରେ ଏତେବାଟ କେମିତି ଯିବି -- କେବଳ ସେଇଚିନ୍ତା ।

ମୁକୁନ୍ଦ ପ୍ରସାଦ ଦାସ (ପ୍ରଥମ ବାଚସ୍ପତି)
୧୪-୧-୧୯୭୯

ଏ ଅନୁଷ୍ଠାନକୁ ଆସି ମୋ ଜୀବନ ସାର୍ଥକ ହୋଇଛି । ଈଶ୍ୱର ଆପଣମାନଙ୍କର ଲକ୍ଷ୍ୟ ପୂରଣ କରନ୍ତୁ, 'ମଧୁବାବୁ' ବଞ୍ଚନ୍ତୁ ।

ବ୍ରଜବନ୍ଧୁ ଦାସ
୨-୪-୧୯୭୩

ବ୍ୟକ୍ତିଗତ ଅସୁବିଧା ବଶତଃ ଉତ୍ସବରେ ଯୋଗଦେଇ ନପାରିବାରୁ ଦୁଃଖିତ । ଉଦ୍ଦେଶ୍ୟ ସଫଳ ହେଉ, ଏହାହିଁ କାମନା ।

ପ୍ରାଣକୃଷ୍ଣ ପରିଜା
୨୯-୨-୧୯୭୮

ଅନୁଷ୍ଠାନର ପ୍ରଗତି ସମ୍ବାଦ ପତ୍ରରୁ ଜାଣିଥିଲି । ଆଜ କଲୁ ନଜେ ଦେଖିଗଲି । ଏକ ପକ୍ଷରେ ପ୍ରାଚୀନ ଉତ୍କଳର ମହାନ ସଂସ୍କୃତି ଏବଂ ଅନ୍ୟ ପକ୍ଷରେ ଆଧୁନିକ ଉତ୍କଳର ଅର୍ଥନୀତିକ ବିଭବ, ଏ ଦୁଇ ବୈଶିଷ୍ଟ୍ୟର ପରିପ୍ରେକ୍ଷୀରେ ଉତ୍କଳୀୟମାନଙ୍କ

ମନରେ ଦେଶାତ୍ମବୋଧ, ଐକ୍ୟ ତଥା ସଂହତି ଉଦ୍ରେକ କରିବା ପାଇଁ ଆପଣମାନଙ୍କର ପ୍ରଚେଷ୍ଟା ପ୍ରଶଂସନୀୟ । ଜନ୍ମଭୂମିର ଐତିହ୍ୟ ଓ ମହାପୁରୁଷମାନଙ୍କର ଜୀବନୀ ପର୍ଯ୍ୟାଲୋଚନା ପ୍ରତ୍ୟେକ ସଚେତନ ଦେଶପ୍ରେମୀ ବ୍ୟକ୍ତିର କର୍ତ୍ତବ୍ୟ । ସେହି କର୍ତ୍ତବ୍ୟ ପ୍ରତି ପ୍ରେରଣାର ସୃଜନ ପାଇଁ ଆପଣମାନଙ୍କୁ ଆନ୍ତରିକ ଅଭିନନ୍ଦନ ଜ୍ଞାପନ କରୁଛି ।

ମନ୍ମଥନାଥ ଦାସ
୨-୪ ୧୯୬୮

ଆହୁରି ବହୁଦୂର ଯିବାକୁ ଅଛି । ଆପଣମାନେ ଯିବା ପାଇଁ ସମର୍ଥ ହେବେ । ଏହି ଭରସା ରଖିଲି ।

ମନମୋହନ ମିଶ୍ର
୨୪-୧୧-୬୮

ଓଁ ଶ୍ରୀମା ! ଶ୍ରୀଅରବିନ୍ଦ !

ଏକ ସଚେତନ ଓ ସକ୍ରିୟ ଶକ୍ତିରେ ଆମେ ଉଦ୍‌ବୁଦ୍ଧ ହେଉଁ । ଆମ ପଛରେ ଏକ ପ୍ରଦୀପ୍ତ ଆଧ୍ୟାତ୍ମିକ ଶକ୍ତି ରହିଛି । ମୋର ଦୃଢ଼ ବିଶ୍ୱାସ—ଆପଣମାନଙ୍କ ମାଧ୍ୟମରେ ଏଠି ସ୍ୱତନ୍ତ୍ରକେନ୍ଦ୍ରରୁହିଁ ଓଡ଼ିଆ ଜାତିର ନବ ଅଭ୍ୟୁତ୍‌ଥାନ ହେବ । ତାହା ଆରମ୍ଭ ହୋଇଗଲାଣି । ଜୟହିନ୍ଦ୍ ।

ମହାପାତ୍ର ନୀଳମଣି ସାହୁ
୩୧-୧୨ ୬୮

ଆଜି ଏ ଅନୁଷ୍ଠାନକୁ ଆସି ମୁଁ ଆନନ୍ଦିତ । ସନ ୧୯୫୮ ମସିହାରେ ମୁଁ ଏ ସହରକୁ ପ୍ରଥମେ ଆସେ । କିନ୍ତୁ ସେତେବେଳେ ଏ ସହରରେ ଓଡ଼ିଆ ପ୍ରାଣ-ପ୍ରତିଷ୍ଠା ନେଇ ମୁଁ ସନ୍ଦିହାନ ହୋଇ ପଡ଼ିଥିଲି । କିନ୍ତୁ ଆଜି ମୋର ସେ ସନ୍ଦେହ ଦୂର କରିବାରେ ଏ ଅନୁଷ୍ଠାନ ସାହାଯ୍ୟ କରିଛି ।

ମୋର ପ୍ରାର୍ଥନା ମା' ଏ ଅନୁଷ୍ଠାନକୁ ତାଙ୍କର ଆଶିଷ ଦେଇ ଓଡ଼ିଶା ତଥା ଭାରତର ନବ-ଜାଗରଣରେ ଆମର ଯଥାଶକ୍ତି ସକ୍ରିୟ ଅଂଶ ଗ୍ରହଣ କରିବାରେ ସାହାଯ୍ୟ କରନ୍ତୁ ।

ଜଗନ୍ନାଥ ପଣ୍ଡା
୩୧-୧୨-୭୮

ଅଧ୍ୟକ୍ଷ, ଅନ୍ଧ-ମୂକ ବଧିର ବିଦ୍ୟାଳୟ, ଭୁବନେଶ୍ୱର

ଆଜ ମୁଁ ପ୍ରଗତି ଉତ୍କଳ ସଂଘ ଆନୁକୂଲ୍ୟରେ "ସ୍ୱତନ୍ତ୍ର ଉତ୍କଳ ଦିବସ ଓ ମଧୁ ଜୟନ୍ତୀ" ଉତ୍ସବରେ ଯୋଗ ଦେବାକୁ ଆସି ସଂଘର ଲକ୍ଷ୍ୟ, ଉଦ୍ୟମ ଓ ଆଭିମୁଖ୍ୟ ଦେଖି ସନ୍ତୁଷ୍ଟ । ମୁଁ ସଂଘର ଉନ୍ନତି କାମନା କରୁଛି ।

ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ,
୧-୪-୭୯

ପ୍ରଗତି ଉତ୍କଳ ସଂଘର କାମ ଆରମ୍ଭ ମାତ୍ର ହୋଇଛି । ପ୍ରକୃତରେ ପ୍ରଗତି ଉତ୍କଳ ସଂଘର ଲକ୍ଷ୍ୟ ଓ କାର୍ଯ୍ୟ ଯାହା ହେବା ଆବଶ୍ୟକ ତାହା ପୂରଣ କରିବା ଦିଗରେ ସଂଘ ସଦା ଉଦ୍ୟମଶୀଳ ହେବେ ଏହାହିଁ ଆଶା କରୁଛି । ପ୍ରଗତିର ନାନା ଦିଗ ଅଛି । ସଂଘ ସେ ସବୁ ପ୍ରତି ଦୃଷ୍ଟି ରଖି କାର୍ଯ୍ୟ କରିବା ବାଞ୍ଛନୀୟ ।

ରମାଦେବୀ
୧-୪-୭୯

ସଂଘ ଶକ୍ତି ବଡ ଶକ୍ତି । ବିଶ୍ୱମୈତ୍ରୀ ଭାବନାରେ ଅନୁପ୍ରାଣିତ ହେଲେ ସଂଘର ପ୍ରଗତି ହୁଏ । ଭଗବାନ ସଂଘକୁ ବିଶ୍ୱମୈତ୍ରୀ ସାଧନା ପାଇଁ ପ୍ରେରଣା ଦିଅନ୍ତୁ, ଏହାହିଁ କାମନା ।

ଅନ୍ନପୂର୍ଣ୍ଣା ମହାରଣା
୧-୪-୭୯

ପ୍ରଗତି ଉତ୍କଳ ସଂଘର ନିମନ୍ତ୍ରଣ ପାଇ ପ୍ରଥମ ଥର ଏଠାରେ ସଙ୍ଗୀତ ପରିବେଷଣ କରି ବିଶେଷ ଆନନ୍ଦିତ ହେଲି । ଶ୍ରୀ ଶ୍ରୀ ଜଗନ୍ନାଥଙ୍କ ଶ୍ରୀଚରଣରେ ଜଣାଉଛି, 'ପ୍ରଗତି ଉତ୍କଳ ସଂଘ' ଉତ୍ତରୋତ୍ତର ଉନ୍ନତି ହେଉ ଏହାହିଁ କାମନା । ଯାହାହେଉ ଓଡ଼ିଆ ଭାଇମାନେ ମିଶି ମଧୁସୂଦନ ଜୟନ୍ତୀ କରିବାରୁ ବିଶେଷ ଆନନ୍ଦିତ ହେଲି ।

(ବାଣୀକଣ୍ଠ) ଶ୍ରୀ ନିମାଇଁଚରଣ ହରିଚନ୍ଦନ
୧-୪-୬୯

ପ୍ରଗତି ଉତ୍କଳ ସଂଘ ରାଉରକେଲା ନଗରୀର ଏକ ପ୍ରଖ୍ୟାତ ସାଂସ୍କୃତିକ ଅନୁଷ୍ଠାନ । ଏହି ଅନୁଷ୍ଠାନ ସହ ମୁଁ ନାନା ଭାବରେ ସଂପୃକ୍ତ । ଓଡ଼ିଶାର ଐତିହ୍ୟ ଓ ସଂସ୍କୃତିର ଅନୁଧ୍ୟାନ ଓ ଗବେଷଣା କରି ନୂତନ ଆଲୋକର ସନ୍ଧାନ ଏହି ଅନୁଷ୍ଠାନର ଲକ୍ଷ୍ୟ । ଏହାର ଲକ୍ଷ୍ୟ ଓ ଆଦର୍ଶ ସଫଳ ହେଉ — ଏହା ସର୍ବଥା କାମ୍ୟ ।

ଡକ୍ଟର ନବୀନ କୁମାର ସାହୁ

ଯାହାହେଉ — ଧନ୍ୟବାଦ । ମୁଁ ଆଜି ସେହି ଜୀବନଙ୍କୁ ଧନ୍ୟ ମନେ କରୁଛି, ଯେଉଁଙ୍କରୁ ମୋର ଜାତି ମାତୃଭୂମିର ପୂଜା କରିବାକୁ ସତତ ବ୍ୟଗ୍ର ବିଶେଷତଃ ନୂତନ ଉତ୍କଳର ସ୍ରଷ୍ଟା ମଧୁବାବୁଙ୍କ ଜୟନ୍ତୀ ଏବଂ ଉତ୍କଳ ଜନନୀର ପୂଜା ରାଉରକେଲା ଇସ୍ପାତ ନଗରୀର ଓଡ଼ିଆ ଭାଇମାନଙ୍କ ଚେଷ୍ଟାରେ ପ୍ରଗତି ଉତ୍କଳ ସଂଘ ଗଠନ ଆଜି ବହୁତ ଆଗେଇ ପାରିଛି । ଭଗବାନଙ୍କ ନିକଟରେ ପ୍ରାର୍ଥନା ଏ ସଂଘ ଅମର ହେଉ ଏହାହିଁ ମୋର କାମ୍ୟ ।

କଳାକାର ବାଞ୍ଛାନିଧି ଶତପଥୀ

ସଂଘର କାର୍ଯ୍ୟ ଓ ଉଦ୍ୟମ ପ୍ରଶଂସନୀୟ । ଈଶ୍ୱର ମଙ୍ଗଳ କରନ୍ତୁ ।

ରାଧାନାଥ ରଥ
ସମ୍ପାଦକ ସମାଜ,
ସଭାପତି, ଉତ୍କଳ ସମ୍ମିଳନୀ, ୧୮-୨-୭୦

ଓଡ଼ିଶାର ଅନ୍ୟତମ ପ୍ରାଣ କେନ୍ଦ୍ର ରାଉରକେଲାରେ 'ପ୍ରଗତି ଉତ୍କଳ ସଂଘ'ର ଅବଦାନର ମହନୀୟତା ବିଶେଷ ପ୍ରଣିଧାନ ଯୋଗ୍ୟ । ସମଗ୍ର ଓଡ଼ିଶାବାସୀଙ୍କ ଚିନ୍ତା ଆଶା ଓ ଭରସାର ଏକ ବୃହତ ସାମାଜିକ କେନ୍ଦ୍ରରେ ଯେଉଁ ବନ୍ଧୁମାନେ ନିଜର ଜାତୀୟତା, ଭାଷା ଓ ସାହିତ୍ୟର ପ୍ରସାର ଦିଗରେ ଉଦ୍ୟମଶୀଳ ସେମାନଙ୍କୁ ସର୍ବପ୍ରକାର ସହଯୋଗ ପ୍ରଦାନର ମହାନ ଦାୟିତ୍ୱ ପ୍ରତ୍ୟେକ ଓଡ଼ିଆ ଅଧିବାସୀଙ୍କର ରହିବା ଉଚିତ । ଓଡ଼ିଆ ସରକାରଙ୍କ ସାଂସ୍କୃତିକ ବିଭାଗ ତରଫରୁ ଏତାଦୃଶ ଅନୁଷ୍ଠାନ ଗୁଡ଼ିକୁ ସକ୍ରିୟ ସହଯୋଗ ରହିବାର ଆବଶ୍ୟକତା ମୁଁ ଗଭୀର ଭାବରେ ଅନୁଭବ କରୁଛି । ଓଡ଼ିଶାର ପଶ୍ଚିମ ସୀମାନ୍ତରେ ନିଜର ସାଂସ୍କୃତିକ ଗୌରବର ଟେକ ରଖିବାକୁ ହେଲେ ସମାଜରେ ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କର ଅଧିକ ସହାନୁଭୂତି ଆବଶ୍ୟକ । ସଂଘର ପ୍ରଗତିମୂଳକ କାର୍ଯ୍ୟସୂଚୀରେ ମୋର ସମସ୍ତ ସହଯୋଗ କାମନା କରି ରହିଲି ।

ହୃଦାନନ୍ଦ ମଲ୍ଲିକ
୫-୧-୭୦
(ଆସନ୍ତାକାଲି,ର ପୂର୍ବତନ ସମ୍ପାଦକ), ସମ୍ପାଦକ

ମୁଁ ଆଜି ଉତ୍କଳ ସମ୍ମିଳନୀ କର୍ମକର୍ତ୍ତାମାନଙ୍କ ସହ ପ୍ରଗତି ଉତ୍କଳ ସଂଘର ଅଫିସକୁ ଆସି ଏଠିକା ବନ୍ଧୁମାନଙ୍କ ସହିତ ଆଲୋଚନା କରିବାର ସୁଯୋଗ ପାଇ ଅତ୍ୟନ୍ତ ଆନନ୍ଦିତ ହେଲି ।

ଶ୍ରୀ ନନ୍ଦାମଣି ଖୁଣ୍ଟିଆ
ଏମ୍.ଏଲ୍.ଏ.
୧୮-୨-୭୦

ପ୍ରଗତି ଉତ୍କଳ ସଂଘ'ର କାର୍ଯ୍ୟକ୍ରମ ସବୁ ଶୁଣିଥିଲି, ବର୍ତ୍ତମାନ ଦେଖି ଅତ୍ୟନ୍ତ ମୁଗ୍ଧ ହେଲି । ଓଡ଼ିଆ ସାହିତ୍ୟ ସଂସ୍କୃତି ରକ୍ଷା କରିବାରେ ଏହି ଅନୁଷ୍ଠାନର ତତ୍ପରତା ଅନ୍ୟମାନଙ୍କ ଅନୁକରଣୀୟ । 'ଉତ୍କଳ ଦିବସ' ପାଳନ କରି ଏବଂ ମଧୁବାବୁଙ୍କ ସ୍ମରଣିକା ପ୍ରକାଶ କରି ଏହି ଅନୁଷ୍ଠାନ ଜାତିର ସେବାରେ ନିଷ୍ଠାପର ସହିତ ଲାଗି ପଡ଼ିଛନ୍ତି । ଜାତି, ଭାଷା ଓ ସାହିତ୍ୟର ସେବାରେ 'ପ୍ରଗତି ଉତ୍କଳ ସଂଘ'ର

କର୍ମକର୍ତ୍ତା ଓ ସଭ୍ୟମାନଙ୍କୁ ଜଗନ୍ନାଥ ସହାୟକ ହେବେ, ଏହାହିଁ କାମନା ।

ବସନ୍ତ କୁମାର ପାଣିଗ୍ରାହୀ
୧୮-୨-୭୦
ସାଧାରଣ ସମ୍ପାଦକ, ଉତ୍କଳ ସମ୍ମିଳନୀ

ଆଜ ତା ୧୨-୩-୭୦ରେ ମୁଁ ଖଡ଼ଗପୁର ପ୍ରଗତି ଉତ୍କଳ ସଂଘର ନାମ ଶୁଣି ସେଠାକୁ ଆସି ଦେଖିଲି । ଓଡ଼ିଆ ଜାତିର ଉନ୍ନତି ସାଧନ ପାଇଁ ତାଙ୍କର ଯେଉଁ କଳ୍ପନା ରହିଛି ଜାଣି ଅତିବ ଆନନ୍ଦିତ ହେଲି ।

ମଧୁସୂଦନ ଆଗ୍ନେୟ
ଷଡ଼େଶ୍ୱରକଳା

ପ୍ରଗତି ଉତ୍କଳ ସଂଘ ଖଡ଼ଗପୁରଙ୍କ ସୌଜନ୍ୟରେ ପାଳିତ ହୋଇଥିବା ମଧୁସୂଦନ ଜୟନ୍ତୀ ଉତ୍ସବରେ ମୁଁ ଏବଂ ମୋର ସଂସ୍ଥା ଆଗ୍ନେୟ କଳାମନ୍ଦିର ଯୋଗ ଦେଇଥିଲୁ । ଆମ୍ଭମାନଙ୍କୁ ପ୍ରଗତି ଉତ୍କଳ ସଂଘ ଯେଉଁ ସମ୍ମାନ ଦେଇଅଛନ୍ତି ତାହା ଆମ୍ଭେମାନେ କେବେହେଲେ ଭୁଲିପାରିବୁ ନାହିଁ । ବିଶେଷ କରି ଆଗ୍ନେୟ କଳାମନ୍ଦିରର ସମସ୍ତ ସଭ୍ୟ ବୃନ୍ଦଙ୍କୁ ପ୍ରଗତି ଉତ୍କଳ ସଂଘ ଯେଉଁ ସମ୍ମାନ ଦେଇଛନ୍ତି ତାହା ପ୍ରଶଂସନୀୟ । ମୁଁ ଜଣେ ପ୍ରବାସୀ ଓଡ଼ିଆ, ପ୍ରଗତି ଉତ୍କଳ ସଂଘ ଓଡ଼ିଆ ସଂସ୍କୃତିକୁ ବଢାଇବାରେ ଯେଉଁ ଉଦ୍ୟମ କରୁଛି ତାହା ପ୍ରଶଂସନୀୟ । ଏହି ସଂସ୍ଥା ଉନ୍ନତିରୁ ଉନ୍ନତ ସ୍ତରକୁ ବଢିଚାଲୁ ଏହାହିଁ ମୋର ଭଗବାନଙ୍କ ପାଖରେ କାମନା ।

ଶ୍ରୀ ବନବିହାରୀ ଆଗ୍ନେୟ
୧-୪-୭୦
ଅଧ୍ୟକ୍ଷ, ଆଗ୍ନେୟ କଳା ମନ୍ଦିର, ଜାମସେଦପୁର

ପ୍ରଗତି ଉତ୍କଳ ସଂଘ ଦ୍ୱାରା ଅନୁଷ୍ଠିତ ଉତ୍କଳ ଦିବସ ଓ ମଧୁସୂଦନ ଜୟନ୍ତୀ ଉତ୍ସବରେ ଯୋଗ ଦେବାର ସୁଯୋଗ ପାଇ କର୍ମକର୍ତ୍ତାମାନଙ୍କୁ କୃତଜ୍ଞତା ଜ୍ଞାପନ କରୁଛି । ରାଉରକେଲା ପ୍ରାଚୀନ ଏବଂ ଆଧୁନିକ ବିଭବର ସମ୍ମିଶ୍ରଣ । ଏଠାରେ ଯେଉଁ ଉଦ୍ୟୋକ୍ତାମାନେ ଉତ୍କଳର ସଂସ୍କୃତି ଜାଗରିତ ରଖି ତାକୁ ଅଧିକ ଉଜ୍ଜ୍ୱଳ କରିବାକୁ ପ୍ରୟାସ କରୁଛନ୍ତି, ସେମାନେ ଧନ୍ୟବାଦାର୍ହ । ମୁଁ ଏ ସମିତିର ଉତ୍ତରୋତ୍ତର ଉନ୍ନତି କାମନା କରୁଛି । ଉତ୍କଳୀୟ ସଂସ୍କୃତି ବ୍ୟାପକ ଭାବରେ ପ୍ରତି ସହରର ପଲ୍ଲୀ ମଧ୍ୟରେ ପ୍ରବେଶ କରି ଏ ଦେଶର ଭିତ୍ତିକୁ ସୁଦୃଢ଼ କରିବ ନିଶ୍ଚୟ ।

ଡଃ ସଦାଶିବ ମିଶ୍ର
୨-୪-୭୦

ଓଡ଼ିଶାର ଶିଳ୍ପ ନଗରୀ ରାଉରକେଲାକୁ ଆସିଥିଲି ଏହି ଅନୁଷ୍ଠାନର କର୍ମକର୍ତ୍ତାଙ୍କ ଅନୁରୋଧ ଏଡ଼ି ନପାରି ମାତ୍ର ଏହି ସ୍ୱଳ୍ପ ରହଣି ଭିତରେ ଯାହା ଦେଖିଲି ତାହା ଦେଖିଲି ତାହା ମୋର ବହୁ ଦିନ ମନେ ରହିବ । ଏତେ ସୁନ୍ଦର ଅନୁଷ୍ଠାନ ଓଡ଼ିଶାର ଅନ୍ୟଠାରେ ବିରଳ । ପ୍ରତ୍ୟେକ ସଭ୍ୟ ତାଙ୍କର ପ୍ରାଣ ଦେଇ ଅନୁଷ୍ଠାନର ଉନ୍ନତି ପାଇଁ ଚେଷ୍ଟା କରୁଛନ୍ତି । ଏଠି ପୁସ୍ତକାଗାର, ବ୍ୟାୟାମ, କ୍ରୀଡ଼ାଗୃହ, ନୃତ୍ୟ ଶିକ୍ଷା, ନାଟକ ପରିବେଷଣ ବିଭାଗ ଓ ପାଠାଗାର ସବୁ ରହିଛି । ସୁନ୍ଦର, ପରିଷ୍କାର ଓଡ଼ିଆ ସଂସ୍କୃତିର ପରିଚୟ ଏଠାରୁ ଶିଖିବାକୁ ମିଳେ । ମୁଁ ସର୍ବାନ୍ତକରଣରେ ଏହି ଅନୁଷ୍ଠାନର ଉନ୍ନତି କାମନା କରୁଛି ଏବଂ ନିଜକୁ ଏହି ଅନୁଷ୍ଠାନର ଏକ ସଭ୍ୟ ରୂପେ ଆଜିଠାରୁ ରହିବାର ଅନୁରୋଧ କରୁଛି ।

ନାଟ୍ୟକାର କାର୍ତ୍ତିକ କୁମାର ଘୋଷ
୭-୪-୭୦

ପ୍ରଗତି ଉତ୍କଳ ସଂଘ ଆନୁକୂଲ୍ୟରେ ହୋଇଥିବା ଭଲିବଲ ପ୍ରତିଯୋଗିତା ଉତ୍ସବରେ ମୁଖ୍ୟ ଅତିଥି ଭାବରେ ଯୋଗ ଦେବାର ସୁଯୋଗ ଆଜି ମିଳିଥିବାରୁ ନିଜକୁ ଆପ୍ୟାୟିତ ମନେ କରୁଛି । ସଂଘର ପାଠାଗାର, ମ— ସ୍ମାରକୀର ତିନୋଟି ସଂସ୍କରଣ ଓ ଅନ୍ୟାନ୍ୟ ସାଂସ୍କୃତିକ କାର୍ଯ୍ୟାବଳୀ ପରିଦର୍ଶନ କରି ଅତ୍ୟନ୍ତ ପ୍ରୀତ ହେଲି ।

ରାଉରକେଲା ପରି ଏକ ଶିଳ୍ପ ସହରରେ ସାଧାରଣ ଉତ୍କଳୀୟର ସ୍ଥାନ ଅତ୍ୟନ୍ତ ନଗଣ୍ୟ । ଉତ୍କଳୀୟ ସଂସ୍କୃତି ଓ ମୂଲ୍ୟବୋଧର ସମୁଚିତ ବିକାଶ ପାଇଁ ଓ ସାଧାରଣ ଉତ୍କଳୀୟର ମର୍ଯ୍ୟାଦା ଓ ସାମାଜିକ ମାନ ବୃଦ୍ଧି ପାଇଁ ସଂଘ ଯେ ଚିର ସଚେଷ୍ଟ ଓ ସକ୍ରିୟ ଏହା ଏକ ଗୌରବର ବିଷୟ । ପ୍ରଗତି ଉତ୍କଳ ସଂଘ ପ୍ରତି ମୋର ବିନମ୍ର ସହାନୁଭୂତି ଏଥି ସହ ଜ୍ଞାପନ କରୁଛି ।

ଶ୍ରୀ ନରସିଂହ ସ୍ୱାଇଁ
୧୩-୧୨-୭୦
(ଡ଼ି.ଆଇ.ଜି., ପଶ୍ଚିମାଞ୍ଚଳ) ଓଡ଼ିଶା

ଆଜି ସନ୍ଧ୍ୟାରେ ପ୍ରଗତି ଉତ୍କଳ ସଂଘର ବନ୍ଧୁମାନଙ୍କୁ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲି । ସେମାନଙ୍କର କର୍ମ-ଧନ୍ଦା ଓ କର୍ମ କାଳର ପାର୍ଥକ୍ୟ ସତ୍ତ୍ୱେ ଏଠାରେ କାହିଁ ସମସ୍ତ ପାଇଁ ଏକତ୍ରିତ ହୋଇ ଭାବର ଆଦାନ ପ୍ରଦାନ କରିବାକୁ ସକ୍ଷମ ହୋଇ ପାରୁଛନ୍ତି । ଏଥିପାଇଁ ମୁଁ ଅତ୍ୟନ୍ତ ଖୁସି ହେଲି । ଭଗବାନଙ୍କଠାରେ ପ୍ରାର୍ଥନା ଯେ ଏମାନଙ୍କର ଏକତା ଓ କର୍ମକୁଶଳତାରେ ଭଗବାନ ପୁଷ୍ପ ବୃଷ୍ଟି କରନ୍ତୁ ।

ଡ଼ଃ ଦାଶରଥି ମିଶ୍ର, (ଅଧ୍ୟାପକ)
୧-୩-୭୧

'ପ୍ରଗତି ଉତ୍କଳ ସଂଘ' ପରିଦର୍ଶନ କରି ଅନୁଭବ କଲି ଏ ଜାତି, ଏବେ ମଧ୍ୟ ବଞ୍ଚିଛି ।' ମୁଁ ଏହାର ଉତ୍ତରୋତ୍ତର ଉନ୍ନତି କାମନା କରି ଉତ୍କଳର ନେତା ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା କରୁଛି ।

ସୁରେନ୍ଦ୍ର କୁମାର ମହାନ୍ତି
୨୫-୩-୭୧
ସାଧାରଣ ସମ୍ପାଦକ, ନୀଳଚକ୍ର, କେନ୍ଦ୍ର କାର୍ଯ୍ୟାଳୟ, କଟକ

ପ୍ରଗତି ଉତ୍କଳ ସଂଘ ଓଡ଼ିଆ ଭାଷା ଓ ସଂସ୍କୃତି ପ୍ରଚାର ପାଇଁ ଯେଉଁ ପାଠାଗାର ଆରମ୍ଭ କରିଛନ୍ତି ତା'ର ଚେଷ୍ଟା ଦେଖି ମୁଁ ଅତ୍ୟନ୍ତ ଆନନ୍ଦିତ । ଏହାର ଉତ୍ତରୋତ୍ତର ଉନ୍ନତି କାମନା କରୁଛି ଏବଂ ପ୍ରତ୍ୟେକ ଓଡ଼ିଶାବାସୀ ଏହାର ଶ୍ରୀବୃଦ୍ଧି ପାଇଁ ଚେଷ୍ଟା କଲେ ମୁଁ ସୁଖୀ ହେବି ।

ଶରତ କୁମାର କର
୧୭ ୫-୭୧

ପ୍ରଗତି ଉତ୍କଳ ସଂଘ ଓ ସଂଘ ଦ୍ୱାରା ପରିଚାଳିତ ଲାଇବ୍ରେରୀ ମୁଁ ଏବଂ ଶ୍ରୀ ବୃନ୍ଦାବନ ନାୟକ, ମନ୍ତ୍ରୀ, ପରିଦର୍ଶନ କଲୁ । ଏହି ଅନୁଷ୍ଠାନର କାର୍ଯ୍ୟକ୍ରମ ବିଶେଷତଃ ଉତ୍କଳ ଗୌରବ ସ୍ମାରକୀ ପ୍ରକାଶନ ପାଇଁ ଏହି ଅନୁଷ୍ଠାନ ଏବଂ ତାହାର କର୍ମକର୍ତ୍ତା-ମାନଙ୍କୁ ଧନ୍ୟବାଦ ଦେଉଅଛୁ ଏବଂ ଏହାର ଉତ୍ତରୋତ୍ତର ମଙ୍ଗଳ କାମନା କରି ରହିଲୁ ।

ଶ୍ରୀ ବିଶ୍ୱନାଥ ଦାସ
୨୪-୮-୭୧

ଶ୍ରୀ ବୃନ୍ଦାବନ ନାୟକ
୨୪-୮-୭୧

ପ୍ରଗତି ଉତ୍କଳ ସଂଘର ମହନୀୟ କାର୍ଯ୍ୟକଳାପ ଦେଖି ମୋତେ ବହୁତ ଖୁସି ଲାଗିଲା । ମୋର ଆଶା ପ୍ରଗତି ଉତ୍କଳ ସଂଘ ରାଉରକେଲାର ଓଡ଼ିଆ ଭାଇମାନଙ୍କ ମଧ୍ୟରେ ଭ୍ରାତୃଭାବ ପ୍ରଚାର କରିବାରେ କୃତକାର୍ଯ୍ୟ ହେବ ।

ପ୍ରଫେସର ଭୁବନେଶ୍ୱର ବେହେରା
୧-୪-୭୨

ଇସ୍ପାତ ନଗରୀ ରାଉରକେଲାରେ 'ପ୍ରଗତି ଉତ୍କଳ ସଂଘ' ଯେପରି ଭାବରେ ଓଡ଼ିଆ ଭାଷା, ସଂସ୍କୃତି ଓ ଐତିହ୍ୟର ସୁରକ୍ଷା ପାଇଁ କାର୍ଯ୍ୟକରି ଆସୁଛି, ସେଥିରୁ ଓଡ଼ିଶାବାସୀ ଯଥେଷ୍ଟ ପ୍ରେରଣା ଆହରଣ କରିବାର ଅଛି । ଏହି ଅନୁଷ୍ଠାନର ମୁଁ ଅଭିବୃଦ୍ଧି କାମନା କରୁଛି ।

ସୁରେନ୍ଦ୍ର ମହାନ୍ତି
୧-୪-୭୨

ପ୍ରଗତି ଉତ୍କଳ ସଂଘ କେବଳ ରାଉରକେଲାର ନୁହେଁ, ସମଗ୍ର ଓଡ଼ିଶାର ଏକ ଆଦର୍ଶ ଅନୁଷ୍ଠାନ । ଉତ୍କଳର ଯଥାର୍ଥ ପ୍ରଗତି ଏହାର ପ୍ରତ୍ୟେକ ସଭ୍ୟଙ୍କ ଜୀବନର ଶ୍ରେଷ୍ଠ କାମ୍ୟ ହେଉ । ଆଜି ଏ ଅବସରରେ ଏତିକ ମୋର କାମନା ।

ଶ୍ରୀହର୍ଷ ମିଶ୍ର
(୧-୪-୭୨)

ପ୍ରଗତି ଉତ୍କଳ ସଂଘର ଉତ୍ସାହୀ ସଭ୍ୟମାନଙ୍କୁ ମୋର ହାର୍ଦ୍ଦିକ ଶୁଭେଚ୍ଛା ଜଣାଉଛି । ଯେଉଁ ମହତ୍ ଉଦ୍ଦେଶ୍ୟରେ ଅନୁପ୍ରାଣିତ ହୋଇ ସେମାନେ ସାଂସ୍କୃତିକ କାର୍ଯ୍ୟରେ ଆତ୍ମ ନିୟୋଜିତ ହୋଇଛନ୍ତି ତାହା ସର୍ବତୋଭାବେ ଅଭିନନ୍ଦନୀୟ । ଏହି ଅନୁଷ୍ଠାନର ପ୍ରଗତି ହିଁ ମୋର ଏକାନ୍ତ କାମନା ।

ପ୍ରଫେସର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)
(୧୪-୫-୭୨)

ଅନୁଷ୍ଠାନ ବ୍ୟକ୍ତି ଗଢେ ନା ବ୍ୟକ୍ତି ଅନୁଷ୍ଠାନ ଗଢେ ? ଏହି ପ୍ରଶ୍ନର ଉତ୍ତର ମିଳିବ ପ୍ରଗତି ଉତ୍କଳ ସଂଘର କାର୍ଯ୍ୟାବଳୀରୁ । ନିଷ୍ଠା ଥିଲେ ସବୁବେଳେ ସବୁଠାରେ ଚେଷ୍ଟା ସଫଳ ହୁଏ ।

ଜଷ୍ଟିସ୍ ହରିହର ମହାପାତ୍ର
(୧-୪-୭୩)

ପ୍ରଗତି ଉତ୍କଳ ସଂଘର ଅଫିସ୍ ଓ ଲାଇବ୍ରେରୀ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲି । ଓଡ଼ିଶାରେ ଯେଉଁ ବହୁ ସାଂସ୍କୃତିକ ସଂଘ ଅଛି, ସେଥି ମଧ୍ୟରୁ ଏ ସଂଘଟି ଅନ୍ୟତମ । ମାତ୍ର ଏହାର ବିଶେଷତ୍ୱ ଏହି ଯେ, ଏଥିରେ ନିଷ୍ଠା ଓ ଆନ୍ତରିକତାର ସୁସ୍ପଷ୍ଟ ନିଦର୍ଶନ ଦେଖାଯାଏ ।

ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ
(୧-୪-୭୩)

ପ୍ରଗତି ଉତ୍କଳ ସଂଘକୁ ଆସି ଅନୁଷ୍ଠାନର ଉନ୍ନତି ସମ୍ପର୍କରେ ସଦସ୍ୟମାନଙ୍କ ସହ ଆଲୋଚନା କଲି । ଅଦମ୍ୟ ଉତ୍ସାହ ଓ ଅପୂର୍ବ ଉନ୍ମାଦନା ନେଇ ନାନା ପ୍ରକାର ଅସ୍ୱଚ୍ଛଳତା ଭିତରେ ଏହି ଅନୁଷ୍ଠାନ ଅଗ୍ରଗତି କରି ଚାଲିଥିବାର ଦେଖି ଆଚମ୍ବିତ ହେଲି । ମୁଁ ସର୍ବାନ୍ତକରଣରେ ଏହାର ଉଜ୍ଜ୍ୱଳ ଭବିଷ୍ୟତ କାମନା କରେ ।

ବିନୋଦ ଚନ୍ଦ୍ର ନାୟକ
୨୯-୪-୭୩

ପ୍ରଗତି ଉତ୍କଳ ସଂଘ ଏକ ସୁପରିଚାଳିତ ଅନୁଷ୍ଠାନ । ଏହାର ଶୃଙ୍ଖଳା ଓ କର୍ମୀମାନଙ୍କ ମଧ୍ୟରେ ଥିବା ଭ୍ରାତୃତ୍ୱ ଦେଖି ମୁଗ୍ଧ ହେଲି । ଉପରିସ୍ଥ କର୍ମଚାରୀଙ୍କ ଦେଶାତ୍ମବୋଧ ସାଧାରଣଙ୍କ ସହିତ ଏକୀଭୂତ ମୈତ୍ରୀ କର୍ମନିଷ୍ଠା ଦେଖି ଭାବିଲି—ଏମାନେ ଜାତିର ପିତା ମଧୁସୂଦନଙ୍କ ଭାବ ଅକ୍ଷରେ ଅକ୍ଷରେ ପାଳୁଛନ୍ତି । ସଂଘର ଉତ୍କୃଷ୍ଟ ଯାଦୁଘର କଳ୍ପନା ସାର୍ଥକ ହେଉ ।

ଲୋକରତ୍ନ ଡକ୍ଟର କୃଷ୍ଣଚନ୍ଦ୍ର ଦାସ
୨-୪-୭୪

ଠିକଏ ପୁଣି ଅବତରଣ ନକରି କହିପାରେ ଯେ ରାଉରକେଲାରୁ ମୁଁ ନୂତନ ଉତ୍ସାହ ଓ ପ୍ରେରଣା ନେଇ ଫେରୁଛି । ଏହା ଫଳରେ ମୋ ଆୟୁଷ ବଢିଯିବ ବୋଧହୁଏ । ପ୍ରଗତି ଉତ୍କଳ ସଂଘର କର୍ମକର୍ତ୍ତାମାନେ ଆନ୍ତରିକତା, ଉତ୍ସାହ, କର୍ମପ୍ରବଣତା ଓ ଶ୍ରଦ୍ଧାର ଅପୂର୍ବ ସମ୍ମିଶ୍ରଣ ଦେଖି ଅନୁଭବ କଲି, ଏ ଅନୁଷ୍ଠାନକୁ କେନ୍ଦ୍ର କରି ଓଡ଼ିଆ ଜାତିର ସଂସ୍କୃତି ନୂତନ ଉନ୍ନତି ପଥରେ ଆଗେଇଯିବା ପାଇଁ ସମର୍ଥ ହେଉ, ଏତିକି ଭଗବାନଙ୍କ ନିକଟରେ ପ୍ରାର୍ଥନା ।

ବିନୋଦ କାନୁନ୍‌ଗୋ
୨-୪-୭୪

ପ୍ରଗତି ଉତ୍କଳ ସଂଘ, ମୁଖ୍ୟ ଅନୁଷ୍ଠାନ, ଦେଖିବାର ସୁଯୋଗ ଆଜି ମୋତେ ମିଳିଛି । ଏହି ସଂଘର କର୍ମକର୍ତ୍ତାମାନେ ରାଉରକେଲା ସହରରେ ନାନାବିଧ ଜାତୀୟତା ମୂଳକ ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠାନ କରିଆନ୍ତି । ଏହି ସଂଘର ଏଭଳି

ଉଦ୍ୟମ ରାଉରକେଲା ଭଳି ଉପାନ୍ତ ଅଞ୍ଚଳରେ ଅତ୍ୟନ୍ତ ପ୍ରଶଂସନୀୟ । ସେମାନଙ୍କର ଜାତୀୟତାବୋଧ ସଂକୀର୍ଣ୍ଣ ନୁହେଁ । ଅନ୍ୟଭାଷା ତଥା ସଂପ୍ରଦାୟପ୍ରତି ସେମାନଙ୍କର ଯଥାବିଧି ଶ୍ରଦ୍ଧା ଓ ସମ୍ମାନ ବାସ୍ତବିକ ପ୍ରଶଂସନୀୟ । ଏହି ସଂଘର ସଭ୍ୟମାନଙ୍କ ମଧ୍ୟରେ ଥିବା ଏକତା ଓ ଭ୍ରାତୃଭାବ ଦେଖି ମୁଁ ଅତ୍ୟନ୍ତ ଖୁସୀ ହେଲି । ଏହି ଅନୁଷ୍ଠାନର ଉତ୍ତରୋତ୍ତର ଉନ୍ନତି ମୁଁ କାମନା କରୁଛି । ଏଦ୍ୱାରା ଉତ୍ସାହୀ ଉଦ୍ୟୋକ୍ତାମାନଙ୍କୁ ସାଧୁବାଦ ଜଣାଉଛି ।

ଶ୍ରୀନିବାସ ରଥ
୧-୬-୭୪

ଏତେ ସ୍ନେହ ଏତେ ଆନ୍ତରିକତା, ସତେ ଭୁଲି ହେବ ନାହିଁ । ଆଜି ପ୍ରଗତି ଉତ୍କଳ ସଂଘ ପକ୍ଷରୁ ଆୟୋଜିତ ସଂଦଢ ଉତ୍ସବ ଆମ ପ୍ରାଣରେ ଅଭିନବ ପ୍ରେରଣା ଓ ଉତ୍ସାହ ସୃଷ୍ଟି କରିଛି । ଓଡ଼ିଆ ଶିଖୁଥିବା ଆସାମ, ବଙ୍ଗଳା, ଆନ୍ଧ୍ର, ମେଘାଳୟ ପ୍ରଭୃତିର ପ୍ରଶିକ୍ଷଣାର୍ଥୀମାନେ ଏଠାରେ ଓଡ଼ିଆ ପ୍ରାଣର ପରିଚୟ ପାଇଗଲେ । ଓଡ଼ିଆ ଭାଷା ଶିଖିବା ପରେ ଏପରି ଏକ ଅନୁଷ୍ଠାନରେ ଅଂଶ ଗ୍ରହଣ କରିବା ଦ୍ୱାରା ଏମାନେ ଓଡ଼ିଆର ଚିନ୍ତା, ଚେତନା ଓ ଉଦାରତା ସହିତ ପରିଚିତ ହୋଇଗଲେ । ଆଜିର ସନ୍ଧ୍ୟାଟି ପ୍ରକୃତରେ ମଧୁମୟ । ଅନୁଷ୍ଠାନର ପନ୍ଥା ସୁଗମ ଓ ଦୀର୍ଘାୟିତ ହେଉ ।

ଶ୍ରୀ ଅରବିନ୍ଦ ପଟ୍ଟନାୟକ
୩୧-୧-୭୫

ପ୍ରଗତି ଉତ୍କଳ ସଂଘ ଆନୁକୂଲ୍ୟରେ ଅନୁଷ୍ଠିତ ଉତ୍କଳ ଦିବସ ଅନୁଷ୍ଠାନରେ ସହଯୋଗ କରିବାର ସୁଯୋଗ ମିଳିଲା । ଜାତୀୟ ଜୀବନର ପ୍ରାଣ-ପ୍ରତିଷ୍ଠା ଓ ଆତ୍ମ-ବିଶ୍ୱାସ ଫେରାଇ ଆଣିବା ପାଇଁ ଅନୁଷ୍ଠାନର କର୍ମୀମାନେ ବଦ୍ଧ ପରିକର ହେଲେ ଏ ସମାଜର ଅନ୍ଧକାର ଅପସରିଯିବ । ଜାତିକୁ ହୀନମନ୍ୟତାର ଗ୍ଲାନିରୁ ଉଦ୍ଧାର କରିବା ପାଇଁ ତରୁଣ ବନ୍ଧୁମାନେ ଝଟେ ପ୍ରସ୍ତୁତ ହେବା ଉଚିତ । ଏହି ଅବସରରେ ଅନୁଷ୍ଠାନର ଶୁଭ କାମନା କରି ସୁଖୀ ହେଉଛି ।

ପଠାଣି ପଟ୍ଟନାୟକ
୧-୪-୭୫

ପ୍ରବାସ ଉତ୍କଳ ସଂଘ ଦ୍ୱାରା ଆୟୋଜିତ ଉତ୍କଳ ଦିବସ ଉତ୍ସବରେ ଯୋଗଦାନ କରିବାର ସୁଯୋଗ ପାଇ ମୁଁ ବାସ୍ତବିକ୍ ବିଶେଷ ଆନନ୍ଦିତ । ଦୀର୍ଘ ଆଠ ବର୍ଷ ଧରି ଏହି ଅନୁଷ୍ଠାନଟି ସ୍ୱର୍ଗତ ମଧୁସୂଦନ ଦାସଙ୍କ ଜନ୍ମଦିବସ ଏହି ଦିନଟିରେ ପାଳି ଆସୁଛନ୍ତି, ଅତ୍ୟନ୍ତ ନିଷ୍ଠା ଓ ଆନ୍ତରିକତାର ସହିତ । ମୋର ଗଭୀର ବିଶ୍ୱାସ ପ୍ରବାସ ଉତ୍କଳ ସଂଘ ଯେଉଁ ଆଦର୍ଶ ଓ ଲକ୍ଷ୍ୟ ନେଇ କାମ କରୁଛନ୍ତି ଦିନେ ନା ଦିନେ ସେମାନେ ସେ ଲକ୍ଷ୍ୟରେ ପହଞ୍ଚିବେ । ଓଡ଼ିଆ ଜାତିର ଲୁପ୍ତ ଗୌରବ ଓ ମହାନ୍ ପରମ୍ପରାକୁ ସେମାନେ ଏକ ନୂତନ ରୂପରେଖ ଦେଇ ଫେରାଇ ଆଣି ପାରିବେ । ସେମାନଙ୍କର ଏ ପ୍ରଚେଷ୍ଟାରେ ସାଫଲ୍ୟ ହାସଲ ପାଇଁ ମୋର ଆନ୍ତରିକ ଶୁଭେଚ୍ଛା ରହିଲା ।

ପ୍ରାଣବନ୍ଧୁ କର
୧-୪-୭୫

ପ୍ରବାସ ଉତ୍କଳ ସଂଘର ସଭ୍ୟମାନେ ଯେଉଁ ଆଦର୍ଶ ଓ ଲକ୍ଷ୍ୟ ନେଇ ଆଗେଇ ଚାଲିଛନ୍ତି, ଭଗବାନ କରନ୍ତୁ — ସେମାନେ ସେହି ଲକ୍ଷ୍ୟରେ ପହଁଞ୍ଚି ପାରିବେ ।

ସାମୁଏଲ୍ ସାହୁ (ବାବି)
୧-୪-୭୫

ଖୁବ୍ କମ୍ ସମୟର ଅବଗତ ସତ୍ତ୍ୱେ ପ୍ରବାସ ଉତ୍କଳ ସଂଘର କର୍ମକର୍ତ୍ତାଗଣ ଏହି ସ୍ୱାଗତ ଉତ୍ସବ ଆୟୋଜନରେ ଯେଉଁ ଆନ୍ତରିକତା ଓ ନିଷ୍ଠା ପ୍ରଦର୍ଶନ କରିଛନ୍ତି, ମୋର ଗଭୀର ବିଶ୍ୱାସ ଯେ, ଏହା ନିଶ୍ଚିତ ଭାବେ ଆସାମ ଓ ମଧ୍ୟପ୍ରଦେଶ ସରକାରଙ୍କ ଦ୍ୱାରା ପ୍ରେରିତ ହୋଇଥିବା ପୂର୍ବାଞ୍ଚଳ ଭାଷା କେନ୍ଦ୍ରର ପ୍ରଶିକ୍ଷଣାର୍ଥୀମାନଙ୍କ ମନରେ ଘନଛାପ ପକାଇବ ।

ଉମାଚରଣ ପୃଷ୍ଟି
୫-୧-୭୭

ପ୍ରବାସ ଉତ୍କଳ ସଂଘର ଉଦ୍ଦେଶ୍ୟ ଓ ସାଧନା ବାସ୍ତବିକ୍ ଉତ୍କଳୀୟଙ୍କ ପକ୍ଷରେ ଏକ ଆଦର୍ଶ । ଏହାର କର୍ମକର୍ତ୍ତା ଓ ସଭ୍ୟମାନଙ୍କ ଆନ୍ତରିକତା, ଉଦ୍‌ଯୋଗ ଓ ସହଯୋଗ ଦ୍ୱାରା ଏହି ଅନୁଷ୍ଠାନର ଉନ୍ନତି ଅଳ୍ପ ସମୟରେ ସମାହିତ ହୋଇ ପାରିଛି ।

ଏହିଭଳି ପ୍ରଚେଷ୍ଟା ଓଡ଼ିଶାର ଅନ୍ୟସବୁ ଅନୁଷ୍ଠାନ କଲେ, ଆଜିର ଉତ୍କଳର କଳା, ସଂସ୍କୃତି ଓ ଐତିହ୍ୟର ପରାକାଷ୍ଠା, ଅଚିରେ ପ୍ରତିପାଦିତ ହୋଇପାରିବ ।

ନବକୁମାର ଦାସ
୧-୪-୭୭

ଆଜି ସୌଭାଗ୍ୟକ୍ରମେ, ପ୍ରଗତି ଉତ୍କଳ ସଂଘ ପରିଦର୍ଶନ କରି ଆପ୍ୟାୟିତ ହେଲି, ପାଠାଗାରରେ ବିଭିନ୍ନ ଭାଷାର ବହୁ ସଂଖ୍ୟକ ବହି ଦେଖି ଆନନ୍ଦିତ ହେଲି, ମୁଁ ଏହି ଅନୁଷ୍ଠାନର ଉତ୍ତରୋତ୍ତର ଅଭ୍ୟୁଦୟ କାମନା କରେ ।

ତାରଣୀ ଚରଣ ପାଣ୍ଡ
୨-୪-୭୭

ଓଡ଼ିଶାର ପ୍ରତ୍ୟେକ ଅନୁଷ୍ଠାନ ପ୍ରଗତି ଉତ୍କଳ ସଂଘ ପରିଦର୍ଶନ କରି ସେମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହେବା ଆବଶ୍ୟକ । ଏହି ଅନୁଷ୍ଠାନ ପରିଦର୍ଶନ କରି ମୁଁ ଆଶ୍ଚର୍ଯ୍ୟ ହେଉଛି ଏତେ କମ୍ ସମୟରେ ସେମାନେ ଯେ ଏତେବାଟ ଆଗେଇ ପାରିଛନ୍ତି । ତାହାହିଁ ସେମାନଙ୍କର ପ୍ରଗତିର ପ୍ରତୀକ ।

ବସନ୍ତ ପଟ୍ଟନାୟକ
୨୬-୯-୭୭

ପ୍ରଗତି ଉତ୍କଳ ସଂଘର ଉଦ୍ୟୋକ୍ତା ଓ ସଭ୍ୟମାନେ ନିଷ୍ଠା ସହିତ ଯେଉଁ କାର୍ଯ୍ୟରେ ନିଜକୁ ଉତ୍ସର୍ଗ କରିଛନ୍ତି, ତାହାର ମାହାତ୍ମ୍ୟ ଆଜି ଏ ଜାତି ସମ୍ୟକ ଉପଲବ୍‌ଧି କଲେ ମଧ୍ୟ, ଦିନେ ଏହାର କିରଣ ସମସ୍ତ ଓଡ଼ିଶାରେ ବିକ୍ଷିପ୍ତ ହେବ ଏବଂ ଓଡ଼ିଶାର ଗୋଟିଏ ପ୍ରାନ୍ତରୁ ଏ ପ୍ରେରଣାର ପ୍ରଭାବ ଚଉଦିଆଡେ ବିକ୍ଷିପ୍ତ ହୋଇ ଓ ଓଡ଼ିଆଙ୍କ ମଥା ଉଚ୍ଚରେ ରହୁ ।

ବାମା[redacted] ଦାସ
୪-୨-୭୮

ମୁଁ ନିଜକୁ ଭାଗ୍ୟବାନ ମନେ କରୁଛି—ଆଜି ପ୍ରଗତି ଉତ୍କଳ ସଂଘ ଦପ୍ତରରେ ସଂଘର କର୍ମକର୍ତ୍ତାମାନଙ୍କ ଗହଣରେ ଅଳ୍ପ ସମୟ ପାଇଁ ଦରିଦ୍ର କବିର କବିତା ତଥା ହାସ୍ୟରସ ପରିବେଷଣ କରି କିଞ୍ଚିତ୍ ଖୁସୀ କରାଇ ପାରିଥିବାରୁ । ପ୍ରାକୃତିକ ସୌନ୍ଦର୍ଯ୍ୟ ଭରା ଇସ୍ପାତ ନଗରୀରେ ଓଡ଼ିଆତ୍ୱ ଦେଖିବାକୁ ପାଇଲି ଆଜି ଏହି ପ୍ରଗତି ଉତ୍କଳ ସଂଘ ଦପ୍ତରରେ । ଏହି ଓଡ଼ିଆତ୍ୱ ବଞ୍ଚାଏ ରହୁ ଯୁଗେ ଯୁଗେ ଏହାହିଁ କାମନା ।

ଭାଗିରଥୀ ମିଶ୍ର
୧୪-୨-୭୮

ପ୍ରଗତି ଉତ୍କଳ ସଂଘର ଆନୁକୂଲ୍ୟରେ ଅନୁଷ୍ଠିତ ଉତ୍କଳ ଦିବସ ଏବଂ ମଧୁସୂଦନ ଜୟନ୍ତୀରେ ଯୋଗଦାନ କରିବାର ସୌଭାଗ୍ୟ ଲାଭ କଲି ପ୍ରଗତି ଉତ୍କଳ ସଂଘର କର୍ମ-କର୍ତ୍ତାଗଣଙ୍କ ପାଇଁ । ରାଉରକେଲା ପହଞ୍ଚି ଏବଂ ତାଙ୍କ ଉତ୍ସବରେ ଯୋଗଦାନ କରି ଏବଂ ତାଙ୍କ କାର୍ଯ୍ୟାଳୟକୁ ଦେଖି ଜାଣିଲି ଯେ, ସେମାନେ ଓଡ଼ିଆବାସୀ ରୂପେ କର୍ମମୟ ଜୀବନରେ ଖୁବ୍ ଆଦର୍ଶ ପଥରେ ଆଗେଇଛନ୍ତି । ଏଣୁ ତାଙ୍କ ବିଷୟରେ କିଛି କହିବା ଅପେକ୍ଷା ବରଂ ମୁଁ ଜଣେ ଗୃହିଣୀରୂପେ କାମନା କରୁଛି ଯେ ସେମାନଙ୍କର ଆଶୀର୍ବାଦ ମୋ ଉପରେ ରହୁ ଏବଂ ମୁଁ ନିଜର କର୍ତ୍ତବ୍ୟ ପଥରେ ଆଗେଇ ଚାଲେ । ତାଙ୍କର ପ୍ରେରଣା ଓ ଉତ୍ସାହ ପାଇଁ ମୁଁ ଚିରଋଣୀ । ଶେଷରେ ଶୁଭ କାମନା ସହ ।

ସାଧୁ ମେହେର
୪-୭୮

ମଧୁସୂଦନ ଉପଲକ୍ଷ୍ୟେ ରାଉରକେଲା ଆଗମନ ବେଳେ ପ୍ରଗତି ଉତ୍କଳ ସଂଘ ଭବନ ପରିଦର୍ଶନ କରି ଆନନ୍ଦିତ ହେଲି କାରଣ ଏହି ଅନୁଷ୍ଠାନ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ପାଇଁ ଅନେକ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ଏହି ଅନୁଷ୍ଠାନର ଉଦ୍ୟମ ପ୍ରଶଂସନୀୟ । ମଧୁବାରିଷ୍ଟରଙ୍କର ପ୍ରତିମୂର୍ତ୍ତି ସ୍ଥାପନ ପରେ ରେଲ ଷ୍ଟେସନରୁ ପ୍ରଥମ ଥର ପାଇଁ ଉପରମୁହାଁ କରି ଛାତି ଫୁଲାଇ ସହର ମଧ୍ୟକୁ ପ୍ରବେଶ କରିବାର ସୁଯୋଗ ମିଳିଲା ।

ଶ୍ରୀ ଅର୍ଜୁନ ଯୋଷୀ
୨୮-୪-୭୮

ରାଉରକେଲା ପ୍ରଗତି ଉତ୍କଳ ସଂଘର ମୁଖ୍ୟ ଅଫିସ୍ ଓ ଲାଇବ୍ରେରୀ ପରିଦର୍ଶନ କରିବାର ସୁଯୋଗ ପାଇ ମୁଁ ବଡ଼ ଆନନ୍ଦିତ ହୋଇଛି । ଏହି ଅନୁଷ୍ଠାନ ଏକ କ୍ରିୟାଶୀଳ ସାଂସ୍କୃତିକ ଅନୁଷ୍ଠାନ ରୂପେ ଇସ୍ପାତ ନଗରୀରେ କଳା ଓ ସାହିତ୍ୟର ପରମ୍ପରାକୁ ବୃଦ୍ଧିମନ୍ତ କରୁଛି । ଏହି ଅନୁଷ୍ଠାନ ପ୍ରତିବର୍ଷ ଉତ୍କଳ ଦିବସ ଓ ମଧୁସୂଦନ ଜୟନ୍ତୀ ପାଳନ କରିଥାଏ । ମୁଁ ଏହି ଅନୁଷ୍ଠାନର ସର୍ବାଙ୍ଗୀନ ଉନ୍ନତି କାମନା କରୁଛି । ଏହା ରାଉରକେଲା ଭଳି ଏକ ନଗରୀରେ ଓଡ଼ିଆ ଭାଷା, ସଂସ୍କୃତି ଓ ସାହିତ୍ୟର ଗୌରବ ରକ୍ଷା କରିପାରିବ ବୋଲି ମୋର ବିଶ୍ୱାସ ।

ସଚ୍ଚିଦାନନ୍ଦ ରାଉତରାୟ
୧-୪-୭୯

ପ୍ରଗତି ଉତ୍କଳ ସଂଘ ରାଉରକେଲାଙ୍କ ଆଭିମୁଖ୍ୟ, ଏହାର ଉତ୍ସାହୀ ଉଦ୍ୟୋକ୍ତା-ମାନଙ୍କର ସ୍ୱେଚ୍ଛାପ୍ରଣୋଦିତ କର୍ମନିଷ୍ଠା, ଉତ୍କଳୀୟ ସଂସ୍କୃତି ଓ ସାଙ୍ଗଠନିକ କାର୍ଯ୍ୟକ୍ରମ ପ୍ରଭୃତିରୁ ମନେହୁଏ ଯେ, ଏହା ଯେପରି ଉତ୍କଳୀୟ ସଂସ୍କୃତି ଓ ଚେତନାର ଏ ଯୁଗର ସ୍ୱର କେନ୍ଦ୍ର । ମନେହୁଏ, ଯେପରିକି ଏହାର କର୍ମୀମାନଙ୍କ ଲାଗି ଓଡ଼ିଶାର କୁଳବୃଦ୍ଧ ମଧୁବାବୁଙ୍କ ଅମର ଆତ୍ମାର ପ୍ରେରଣାର ଧାରା ସ୍ରୋତ ପ୍ରଗତି ଉତ୍କଳ ସଂଘକୁ ଉତ୍ତରୋତ୍ତର ପ୍ରଗତି ପଥରେ ଆଗେଇ ନେଇ ଚାଲିଛି ।

ଡକ୍ଟର ସଦାନନ୍ଦ ଚୌଧୁରୀ
୧-୪-୭୯

ପ୍ରଗତି ଉତ୍କଳ ସଂଘର କାର୍ଯ୍ୟାଳୟରେ ବସି କେତେ ଜଣ କର୍ମୀ ବନ୍ଧୁଙ୍କ ସହିତ ଅନୁଷ୍ଠାନ ତଥା ରାଉରକେଲାରେ ଦେଖାଦେଇଥିବା ସାଂସ୍କୃତିକ ସଙ୍କଟ ସମ୍ପର୍କରେ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନା କଲି । କର୍ମୀବନ୍ଧୁମାନଙ୍କର ନିଷ୍ଠା, ଆନ୍ତରିକତା ଓ ଦେଶପ୍ରୀତି ଜାଣି ମୁଁ ଅତ୍ୟନ୍ତ ଖୁସି ହେଲି । ଏଇ ମନୋଭାବ ଓ ଓଡ଼ିଶା ଜାତି-ପ୍ରେମ ରହିଲେ ଆଜି ନହେଲେ ବି କେତେ ଦିନ ପରେ ଆମେ ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରିବା—ଏ ବିଶ୍ୱାସ ମୋର ରହିଛି । ପାଠାଗାରଟି ମଧ୍ୟ ସମୃଦ୍ଧ । ବହୁ ଉପାଦେୟ ଗ୍ରନ୍ଥ ଏଥିରେ ରହିଛି । ପାଠାଗାର ଓ ପ୍ରଗତି ଉତ୍କଳ ସଂଘର ବିଭିନ୍ନ କାର୍ଯ୍ୟ ଦେଖି ମନେ ହେଲା ଅନୁଷ୍ଠାନଟି ସୁଶୃଙ୍ଖଳିତ ଓ ସୁପରିଚାଳିତ । ଏଇ ଅନୁଷ୍ଠାନଟି ତାର ଲକ୍ଷ୍ୟ ପଥରେ ଅଗ୍ରସର ହେଲେ ଓଡ଼ିଆ ଜାତିର ଅଶେଷ ଉନ୍ନତି ହେବ ।

ଅଧ୍ୟାପକ କୃଷ୍ଣଚନ୍ଦ୍ର ଭୂୟାଁ
୧୭-୧-୮୦

ପ୍ରଗତି ଉତ୍କଳ ସଂଘ ଏକ ଅତ୍ୟନ୍ତ କ୍ରିୟାଶୀଳ, ସଂସ୍କୃତି - ଚେତନା ପ୍ରବଣ ଅନୁଷ୍ଠାନ । ଏହି ଅନୁଷ୍ଠାନ ପକ୍ଷରୁ ଆୟୋଜିତ ଉତ୍କଳ ଦିବସ (୧-୪-୮୦) ରେ ଯୋଗଦେଇ ମୁଁ ଖୁବ୍ ମୁଗ୍‌ଧ । ଏ ଅନୁଷ୍ଠାନର ସର୍ବୋତ ଉନ୍ନତି କାମନା କରେ ।

ଡକ୍ଟର ଖଗେଶ୍ୱର ମହାପାତ୍ର
୨-୪-୮୦

ପ୍ରଗତି ଉତ୍କଳ ସଂଘ ଆନୁକୂଲ୍ୟରେ ଆୟୋଜିତ 'ମଧୁସୂଦନ ' ଦି କଲେକ୍ଟେଡ୍-ଲେଟର' ପୁସ୍ତକ ଉଦ୍‌ଘାଟନ ଉତ୍ସବରେ ଯୋଗଦେବାର ସୁଯୋଗ ଲାଭକରି ମୁଁ ସଂଘର କାର୍ଯ୍ୟକୁ ଦେଖି ମୁଗ୍‌ଧ ହୋଇଛି । ମୁଁ ସଂଘର ଉତ୍ତରୋତ୍ତର ଉନ୍ନତି କାମନା କରୁଛି ।

ଶ୍ରୀମତୀ ନନ୍ଦିନୀ ପଟ୍ଟନାୟକ
୯-୧୧-୮୦

ପ୍ରଗତି ଉତ୍କଳ ସଂଘ ପରିଦର୍ଶନ କରିବାର ସୁଯୋଗ ପାଇଥିଲି । ଏହି ସଂଘର କର୍ମକର୍ତ୍ତାମାନେ ଏହାର ବିକାଶ ପାଇଁ ଯଥାସାଧ୍ୟ ଉଦ୍ୟମ କରୁଛନ୍ତି । ଏହାର ପାଠାଗାର ସଂସ୍କୃତିର ଏକ ପ୍ରତୀକ । ସଂଘର ଆନୁକୂଲ୍ୟରେ ମଧୁସୂଦନ ଦାସ : ଦି କଲେକ୍‌ଟେଡ଼ଲେଟର' ବହିଟି ପ୍ରକାଶ ପାଇଛି । ଆମ ଐତିହ୍ୟର ପ୍ରସାର ପାଇଁ ଏହା ଏକ ବିଶିଷ୍ଟ ପଦକ୍ଷେପ । ସଂଘର ଆଉ ଏକ ବଳିଷ୍ଠ ପଦକ୍ଷେପ ହେଉଛି ମଧୁସୂଦନ ଦାସଙ୍କ ଏକ ପୂର୍ଣ୍ଣାବୟବ ମୂର୍ତ୍ତି ସ୍ଥାପନ । ଏହି ମୂର୍ତ୍ତି ରାଉରକେଲାରେ ସ୍ଥାପିତ ହୋଇଛି ଆଶାକରେ ସଂଘ ମାଧ୍ୟମରେ ଅନେକ ଗବେଷଣା ମୂଳକ ତଥ୍ୟମାନ ପ୍ରକାଶ ପାଇବ ।

ପି. ଏସ୍. ଏନ୍. ପାତ୍ର
୨୯-୪-୮୨

ଯେ କୌଣସି ଶିଳ୍ପ ସଭ୍ୟତାର ସହର ଭିତରେ ପ୍ରାଣ ଉତ୍ସ ଶୁଖି ଆସେ ଚିମିନିର କଳା ଧୂଆଁରେ । ଅଣନିଶ୍ୱାସୀ ହୋଇଉଠେ ସୃଜନଶୀଳ ପ୍ରାଣ । ଏହି ପରିବେଶରେ ସାହିତ୍ୟ, ସଂସ୍କୃତି ଏବଂ ଭାଷାକୁ ବଞ୍ଚାଇବା ପାଇଁ ଏବଂ ଜୀବନର ସୃଜନୀ ପ୍ରକ୍ରିୟାକୁ ବଞ୍ଚାଇ ରଖିବା ପାଇଁ ଆନୁଷ୍ଠାନିକ ଉଦ୍ୟମ ଏକାନ୍ତ ଅପରିହାର୍ଯ୍ୟ ।

ପ୍ରଗତି ଉତ୍କଳ ସଂଘ ଏହି ଦିଗରେ ଯେଉଁ ପ୍ରଚେଷ୍ଟା କରୁଛି ସେଥିଲାଗି ଜାତି ଏବଂ ଓଡ଼ିଶା କୃତଜ୍ଞ । ଏହି ସଂଘର ପାଠାଗାର ଏବଂ କାର୍ଯ୍ୟାଳୟ ଦେଖି ମୁଁ ବହୁତ ଆନନ୍ଦିତ । ଏହାର ଉନ୍ନତି ଏବଂ ପ୍ରଗତି କାମନା କରୁଛି ।

ପ୍ରଫୁଲ୍ଲ କୁମାର ମହାନ୍ତି
୨୭-୪-୮୨

ଆଜ ମତେ ପ୍ରଗତି ଉତ୍କଳ ସଂଘ ତରଫରୁ ଯେଉଁ ସମ୍ମାନ ଓ ସୁଯୋଗ ଦିଆହୋଇଛି ତା' ପାଇଁ ମୁଁ ଚିରଋଣୀ । ଓଡ଼ିଶା ସୋସାଇଟି ଅଫ୍ ଆମେରିକା (ଓ. ଏସ. ଏ) ତରଫରୁ ତାଙ୍କ କାର୍ଯ୍ୟକ୍ରମ ଓ ଓଡ଼ିଶାର କଳା ସଂସ୍କୃତିକୁ ପୁଷ୍ଟୀଭୂତ ଓ ବଞ୍ଚାଇବା ଉଦ୍ୟମ ପାଇଁ ଅନେକ ଶୁଭେଚ୍ଛା । ଆଶା ଓଏସଏ ଓ ପ୍ରଗତି ଦୁହେଁ ଦେଶରେ ଓ ବିଦେଶରେ ଓଡ଼ିଶାକୁ ବଞ୍ଚେଇ ରଖନ୍ତୁ ଓ ଯଶ ବଢେଇ ଚାଲନ୍ତୁ ।

ପ୍ରତାପ କୁମାର ଦାସ
୧୩-୧-୮୪

ଆଜ ପ୍ରଗତି ଉତ୍କଳ ସଂଘ ସଂପର୍କରେ ବେଶିକଥା ଜାଣିବାର ସୁଯୋଗ ମିଳିଥିଲା । ଉଦ୍ୟୋକ୍ତାମାନେ ନିଷ୍ଠା ଓ ପରିଶ୍ରମ ଦ୍ୱାରା ସହରବେଳାରେ ଓଡ଼ିଆ ସଂସ୍କୃତି, ସାହିତ୍ୟ ଓ ଜାତୀୟତାର ବିକାଶ ପାଇଁ ଉଲ୍ଲେଖନୀୟ କାର୍ଯ୍ୟ କରୁଛନ୍ତି । ମୁଁ ପ୍ରଗତି ଉତ୍କଳ ସଂଘର ବିକାଶ ଓ ଅଭିବୃଦ୍ଧି କାମନା କରୁଅଛି ।

ଶ୍ରୀ ଅରବିନ୍ଦ ବେହେରା
୧-୨-୮୪

ପ୍ରଗତି ଉତ୍କଳ ସଂଘ ପରିସରକୁ ଆସିବାର ସୌଭାଗ୍ୟ ଜୁଟିଲା, ପଣ୍ଡିତ ନୀଳକଣ୍ଠ ଜୟନ୍ତୀ ପାଳନ ଅବସରରେ । ପରିସର ଭିତରେ ଆୟୋଜନ ଓ ବ୍ୟବସ୍ଥା ଦେଖି ଅତ୍ୟନ୍ତ ଖୁସି ହେଲି । ଏଥିରେ ସଭ୍ୟମାନଙ୍କର ସୌହାର୍ଦ୍ଦ୍ୟ ମତେ ଅଭିଭୂତ କଲା । ସଭାଟି ଖୁବ ଶୃଙ୍ଖଳିତ ଓ ଚିତ୍ତାକର୍ଷକ ହେଲା । ସବୁଠାରୁ ଆନନ୍ଦର କଥା ହେଲା, ପଣ୍ଡିତ ନୀଳକଣ୍ଠଙ୍କ ସ୍ମୃତି ରକ୍ଷାରେ ସେମାନଙ୍କ ପ୍ରତିଶ୍ରୁତି ଯେ ପଣ୍ଡିତ ନୀଳକଣ୍ଠ ସ୍ମୃତି

ସମିତ ଉଦ୍ଦେଶ୍ୟରେ ଏକ ହଜାର ଟଙ୍କା ଗୋଟିଏ ଏଣ୍ଡାଓମେଣ୍ଟ ପାଇଁ ଦାନ କଲେ, ପ୍ରଗତି ଉତ୍କଳ ସଂଘ ଆଉ ଏକ ହଜାର ଟଙ୍କା ଯୋଗ କରି ଟ. ୨୦୦୦-୦୦ (ଦୁଇ ହଜାର ଟଙ୍କାର) ଗୋଟିଏ ସ୍ଥାୟୀ ପାଣ୍ଠି ସୃଷ୍ଟି କରିବ। ସଂଘର ସର୍ବାଙ୍ଗୀଣ ଉନ୍ନତି କାମନା କରୁଛି।

ଇଂଜିନିୟର ମଧୁସୂଦନ ଦାଶ
୭-୮-୮୪

ଆପଣମାନେ ମୋତେ ସମ୍ମାନିତ କଲେ ଓ ଏବଂ ମୋର ଯେପରି ଯତ୍ନ ନେଲେ ସେଥିପାଇଁ ମୁଁ ଆପଣମାନଙ୍କୁ କୃତଜ୍ଞତା ଜ୍ଞାପନ କରୁଛି। ସୁଦୂର ସହରକେଲାରେ ରହି ଆପଣ ଉତ୍କଳୀୟ କଳା ଓ ସଂସ୍କୃତିର ସମ୍ମାନ ବଜାୟ ରଖିଛନ୍ତି ଓ ତାହାର ଅଭିବୃଦ୍ଧି ପାଇଁ ମଧ୍ୟ ଚେଷ୍ଟା କରିଛନ୍ତି, ତାହା ବାସ୍ତବିକ ପ୍ରଶଂସନୀୟ। ସଂଘର ପାଠାଗାରରେ ବହୁ ମୂଲ୍ୟମାନ ଓ ଅପ୍ରାପ୍ୟ ଗ୍ରନ୍ଥ ସଂଗ୍ରହ କରିଛନ୍ତି, ତାହା ଦେଖି ମୁଁ ଖୁସି ହେଲି। ବିଭିନ୍ନ ପ୍ରକାର କ୍ରୀଡ଼ା ପ୍ରତିଯୋଗିତାର ମଧ୍ୟ ଆୟୋଜନ କରି ଆସୁଛନ୍ତି। ବହୁ ଉତ୍ସାହୀ ଯୁବକ ଆପଣଙ୍କ ସଂଗଠନରେ କାର୍ଯ୍ୟ କରୁଛନ୍ତି। ସେହି ସମସ୍ତ ବନ୍ଧୁମାନେ ନିଃସ୍ୱାର୍ଥପର ଭାବେ ମିଳିମିଶି ସଂଘର ଉନ୍ନତି ପାଇଁ କାର୍ଯ୍ୟ ଅବ୍ୟାହତ ରଖିବେ ବୋଲି ମୋର ଶ୍ରଦ୍ଧା ଓ ବିଶ୍ୱାସ। ଆପଣଙ୍କ ସାଧୁ ଉଦ୍ୟମକୁ ପୁନଶ୍ଚ ଅଭିନନ୍ଦନ ଜଣାଇ ରହିଲି।

ବାବୁଲାଲ ଦୋଶୀ
୩-୪-୮୫

ପ୍ରଗତି ଶବ୍ଦକୁ ଯଥାର୍ଥ ବହନ କରି ଏ ଅନୁଷ୍ଠାନ ସାର୍ଥକ। ଏହାର ଭବିଷ୍ୟତ କଳ୍ପିତ ଭାବେ ସୁମହାନ।

ଧୀରେନ୍ଦ୍ର ନାଥ ଶତପଥୀ
୭-୮-୮୪

ଐତିହ୍ୟ ଓ ପ୍ରାତିସ୍ୱିକତା, ସଙ୍ଗଠନ ଓ ନିଷ୍ଠା, ଆନୁଗତ୍ୟ ଓ ନିଃସ୍ୱାର୍ଥପରତା ଯେ କୌଣସି ସଙ୍ଗଠନକୁ କ୍ଷୁଦ୍ର ବୀଜରୁ ଏକ ବିପୁଳ ବନସ୍ପତିରେ ପରିଣତ କରିଦେଇପାରେ। ପ୍ରତ୍ୟେକ ମୁହୂର୍ତ୍ତର କାର୍ଯ୍ୟ ଓ କାରଣ ମଧ୍ୟରେ ସଙ୍ଗତି ରହିଲେ ତାହା ହିନେ ମହା-

କାଳର ଇତିହାସରେ ପରିଣତ ହୋଇଯାଏ । ମୋର ବିଶ୍ୱାସ 'ପ୍ରଗତି ଉତ୍କଳ ସଂଘ' ସେହିପରି ନିଷ୍ଠାସହ ବିଶ୍ୱସ୍ତତା ରକ୍ଷାକରି ଆସିଛି ଓ ଆଜି ଏକ ଶକ୍ତିଶାଳୀ ସମ୍ଭାବନାରେ ପରିଣତ ହୋଇଛି । ସଂସ୍କୃତିର ସୁରକ୍ଷା ଓ ସଂବୃଦ୍ଧି ପାଇଁ ଯେଉଁମାନେ କାମ କରନ୍ତି ମୋ ଆଖିରେ ସେମାନେ ଖୁବ୍ ମହାନ—'ପ୍ରଗତି ଉତ୍କଳ ସଂଘ' ଆଜି ତାରୁଣ୍ୟ ଉଜ୍ଜ୍ୱଳ ଏକ ଜାଗ୍ରତ ପରମ୍ପରରେ ପରିଣତ ହେବାକୁ ଯାଉଛି । ମୋର ଅଜସ୍ର ବ୍ୟକ୍ତିଗତ ସାଧୁବାଦ ଏହାର ସଦସ୍ୟ ଓ କର୍ମୀମାନଙ୍କୁ ।

ପ୍ରଫେସର ନିତ୍ୟାନନ୍ଦ ତ୍ରିପାଠୀ
୯-୪-୮୫

ଶିଳ୍ପ ନଗରୀ ରାଉରକେଲାର, ସାଂସ୍କୃତିକ ପ୍ରାଣକେନ୍ଦ୍ର :'ପ୍ରଗତି ଉତ୍କଳ ସଂଘ': ଏପରି ଜୀବନ୍ତ ଅନୁଷ୍ଠାନ ତା ମୋ ଧାରଣାର ବାହାରେ ଥିଲା । ଯୌଥ ଉଦ୍ୟମରେ ସ୍ଥାପିତ ଓ ପରିଚାଳିତ ଅଧିକାଂଶ ସାଂସ୍କୃତିକ ଅନୁଷ୍ଠାନ ଅନ୍ତତଃ ଓଡ଼ିଶାରେ, ବର୍ଷର ଅଧିକାଂଶ ସମୟ ଅର୍ଦ୍ଧମୃତ ବା ସୁପ୍ତ ଥାଆନ୍ତି. ବର୍ଷରେ ଥରେ ବାର୍ଷିକ ଉତ୍ସବ ପାଳନ ବେଳେ ସେମାନଙ୍କ ନିଦ୍ରାଭଙ୍ଗେ, ସେମାନେ ଜାଗ୍ରତ ହୁଅନ୍ତି । କିନ୍ତୁ ପ୍ରଗତି ଉତ୍କଳସଂଘ ଏକ ବ୍ୟତିକ୍ରମ । ଶିଳ୍ପ ନଗରୀରେ ଏପରି ଜୀବନ୍ତ ଅନୁଷ୍ଠାନର ପରିଚୟ ପାଇ ଆଜି ମୋ ମନରେ ଯେଉଁ ଭାବାବେଗ ଜାତ ହେଉଛି ତାହା ଠିକ୍ ମୁଁ ପ୍ରକାଶ କରି-ପାରୁ ନାହିଁ । ଆମେ ସଂସ୍କୃତି ଚର୍ଚ୍ଚାକୁ ଜୀବିକା କରିଛୁ, କିନ୍ତୁ ତା ଆପଣମାନଙ୍କର ଜୀବନ । ପ୍ରଗତି ଉତ୍କଳ ସଂଘର ପ୍ରଗତି କାମନା କରୁଛି, କାମନା କରୁଛି ମଧ୍ୟ ଓଡ଼ିଶାରେ ଆହୁରି ଏପରି ଅନୁଷ୍ଠାନ ସୃଷ୍ଟି ହେଉ ।

ପ୍ରଫେସର ଗଗନେନ୍ଦ୍ରନାଥ ଦାଶ
୧୩-୧୦-୮୫

ଏଥି ପୂର୍ବରୁ ଶିଳ୍ପନଗରୀ ରାଉରକେଲା କେବେ ଦେଖି ନଥିଲି, ଅକସ୍ମାତ ଏକ ଭ୍ରାମ୍ୟମାଣ ନାଟ୍ୟସଂସ୍ଥା ସହିତ ରାଉରକେଲା ଆସି ଅନେକ କିଛି ଦେଖିଲି, ଦେଖିବା ମଧ୍ୟରେ ମୋର ସାର୍ଥକ ଦର୍ଶନ ହେଲା 'ପ୍ରଗତି ଉତ୍କଳ ସଂଘ' ଇସ୍ପାତ ମହାନଗରୀ ନିଷ୍ପ୍ରାଣ ନିର୍ମମତା ମଧ୍ୟରେ ଏହା ଏକ ପ୍ରାଣ କେନ୍ଦ୍ର, ନବଦିଗନ୍ତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହାର ଇତିବୃତ୍ତି ଶୁଣିଲି । ଟାଟା ନଗରରୁ ପଳାଇ ଆସି ଶିଶୁ

ପ୍ରଗତି ଉତ୍କଳ ସଂଘ ଆଜି ଯୌବନରେ ପହଞ୍ଚି ପାରିଛି । ଏହାର ଦୀର୍ଘାୟୁ କାମନା କରୁଛି ।

ନାଟ୍ୟକାର ଉମାକାନ୍ତ ବେହେରା
୧୮-୧୦-୮୫

ଏହି ମହାନ୍ ଅନୁଷ୍ଠାନଟି ଇସ୍ପାତ ପରି ଟାଣ ଏବଂ ଏହି ଇସ୍ପାତ ନଗରୀ ରାଉର-କେଲାରେ ଓଡ଼ିଶାର ସାହିତ୍ୟ ସଂସ୍କୃତି ଓ କଳାକୁ ଇସ୍ପାତ ପରି ଟାଣରେ ରଖିବାରେ ନିଶ୍ଚିତ ଭାବରେ ସମର୍ଥ ହେବ । ସୃଷ୍ଟିଆଡ଼୍ ମାଡି ଆସୁଥିବା ଘୋର ଅନ୍ଧକାରକୁ ଦୂରରେ ଅଟକାଇ ରଖିବା ପାଇଁ ଏ । ଏକ ଉଜ୍ଜ୍ୱଳ ଦହୁଡ଼ ପରି କାଳ କାଳକୁ କାର୍ଯ୍ୟ କରୁଥିବା ଏହାର ଇସ୍ପାତ ମୂର୍ତ୍ତି ପାଖରେ ସବୁ ଅନ୍ତର୍ଘାତୀ କାର୍ଯ୍ୟ ଓ ଶିଥିମନାଇ ବୃତ୍ତି ନିଶ୍ଚିହ୍ନ ହୋଇଯିବ । ମୋର ଜୀବନ କାଳ ଭିତରେ ଏହାର ପୂର୍ଣ୍ଣ ଅଭିବୃଦ୍ଧି ଦେଖି ମୁଁ ଶାନ୍ତିରେ ଆଖି ବୁଜିବା କାମନା କରୁଛି ।

ସତ୍ରୁସନନ୍ଦ
୨୯-୧-୮୬

ପ୍ରଗତି ଉତ୍କଳ ସଂଘର ପୁସ୍ତକାଳୟ ପରିଦର୍ଶନ କରି ଅତ୍ୟନ୍ତ ପ୍ରୀତ ହେଉଛି । ଏଭଳି ବାଧ୍ୟବଦ୍ଧ ପୁସ୍ତକାଳୟ ଓଡ଼ିଶାରେ ଅନ୍ୟତ୍ର ଅଛି କି ନାହିଁ ସନ୍ଦେହ । ମୁଁ ଏହାର ପୁନଃ ପୁନଃ ପ୍ରଗତି କାମନା କରୁଛି ।

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର
୧-୪-୮୬

ପ୍ରଗତି ଉତ୍କଳ ସଂଘ, ରାଉରକେଲା ପକ୍ଷରୁ ଯେଉଁ ପୁସ୍ତକାଳୟରେ ନବୀନ ଓ ପ୍ରାଚୀନ ପୁସ୍ତକ ଗୁଡ଼ିକ ସଂଗ୍ରହ କରାଯାଇଅଛି ଓ ସେଥିରେ ଏକ ବିସ୍ତାରିତ ସୂଚୀପତ୍ର ସ୍ୱତନ୍ତ୍ରଭାବେ ଛପାଯାଇଛି, ତାହା ଦେଖି ମୋର ମନେ ହେଉଛି ଯେ ଓଡ଼ିଶାର ଅନ୍ୟାନ୍ୟ ପୁସ୍ତକାଗାରରେ ଏ ରୀତିରେ ପୁସ୍ତକ ଗୁଡ଼ିକର ତାଲିକା ରହିବା ଆବଶ୍ୟକ ।

ସତ୍ୟନାରାୟଣ ରାଜଗୁରୁ
୧-୪-୮୬

ଶିଳ୍ପ ନଗରୀ ରାଉରକେଲାରେ ଓଡ଼ିଆ ଭାଷା ଓ ସଂସ୍କୃତିର ସୁରକ୍ଷା ଦିଗରେ ପ୍ରଗତି ଉତ୍କଳ ସଂଘର ଉଦ୍ୟମ ଅତ୍ୟନ୍ତ ପ୍ରଶଂସନୀୟ । ଏହି ପାଠାଗାରଟିର ସମୃଦ୍ଧି ଓ ପରିଚାଳନା ମୋତେ ବିସ୍ମିତ କରିଛି । ପୁଣି ଏହା ଯେ ସଭ୍ୟମାନଙ୍କର ଅକୁଣ୍ଠିତ ଶ୍ରମ ଦାନରେ ପରିଚାଳିତ ହେଉଛି, ଏହା ଆହୁରି ଏକ ବିସ୍ମୟ । ମୁଁ ଏ ପାଠାଗାରର ଦ୍ରୁତ ଅଗ୍ରଗତି କାମନା କରୁଛି । ପାଠାଗାରର ଲେଖକ - ଭିତ୍ତିକ ଗ୍ରନ୍ଥସୂଚୀଟି ଶୀଘ୍ର ପ୍ରକାଶିତ ହେବା ଉଚିତ ବୋଲି ମନେ କରୁଛି ।

ଡକ୍ଟର ନୀଳାଦ୍ରି ଭୂଷଣ ହରିଚନ୍ଦନ
୧-୪-୮୬

ପ୍ରଗତି ଉତ୍କଳ ସଂଘ ରାଉରକେଲା, ଓଡ଼ିଶାର ଏକ ସାଂସ୍କୃତିକ ଅନୁଷ୍ଠାନ । ଏହା ଏକ ସୀମିତ ଅଞ୍ଚଳର ନୁହେଁ, ସମଗ୍ର ଓଡ଼ିଶାର ଏହା ମିଳନବେଦୀ । ଏହି ପୁଣ୍ୟ ଅନୁଷ୍ଠାନ ଆଜି ସନ୍ଧ୍ୟାରେ ଦେଖିବାର ସୁଯୋଗ ଲାଭ କରି ମୁଁ ବିଶେଷ ଆନନ୍ଦିତ । ସନ ୧୯୫୮ ମସିହାରୁ ଏହି ଅନୁଷ୍ଠାନ ନିରବଚ୍ଛିନ୍ନ ଭାବରେ କାର୍ଯ୍ୟକରି ଆସୁଅଛି । ଏହି ଅନୁଷ୍ଠାନର ପାଠାଗାରରେ ପ୍ରାୟ ପନ୍ଦର ହଜାରରୁ ଊର୍ଦ୍ଧ୍ୱ ବହି ଥିବା ଦେଖିଲି । ବହୁ ଦୁଷ୍ପ୍ରାପ୍ୟ ପୁସ୍ତକ ଏଠାରେ ରହିଅଛି । ଏତଦ୍‌ବ୍ୟତୀତ ବିଭିନ୍ନ ମୂଲ୍ୟବାନ ପତ୍ର-ପତ୍ରିକା ସଂରକ୍ଷିତ ହୋଇଅଛି । ଏହା ଯେ ଏକ ଗବେଷଣା କେନ୍ଦ୍ର ରେ ପରିଣତ ହୋଇଅଛି, ଏଥିରେ ସନ୍ଦେହ ନାହିଁ । ଉକ୍ତ ଅନୁଷ୍ଠାନ ଯେପରି ପ୍ରତିବର୍ଷ ସ୍ମରଣିକା ବାହାର କରୁଅଛି ତାହା ଏକାନ୍ତ ସ୍ୱାଗତଯୋଗ୍ୟ । କୁଳବୃଦ୍ଧ ମଧୁସୂଦନଙ୍କ କଲିକତା ଓ ବିହାର ବିଧାନ ସଭାରେ ପ୍ରଦତ୍ତ ଅଭିଭାଷଣ ଗୁଡ଼ିକୁ ସଂଗ୍ରହ କରି ଏହି ଅନୁଷ୍ଠାନ ଯେଉଁ ମୂଲ୍ୟବାନ୍ ପୁସ୍ତକ ପ୍ରକାଶ କରିଛି ତାହା ବାସ୍ତବିକ ପ୍ରଶଂସନୀୟ ।

ଡକ୍ଟର ବୈଷ୍ଣବ ଚରଣ ସାମଲ
୧୭-୧୨-୮୬

ସାମାନ୍ୟ ମାଟିରୁ ସୁନ୍ଦର ମୂର୍ତ୍ତି ଗଢାହୁଏ । ଏଇଆ ଏଇଠି ଦେଖିଲି । ଏହାର ମୂଳଦୁଆ ଦେଖିବାର ସୁଯୋଗ ମିଳିଲା । ବିଶ୍ୱାସ କରିପାରିଲି ନାହିଁ, ବେଶିତ ଏତେ ବଡ଼ ପୁସ୍ତକାଳୟ ରୂପ ଦେଖି । ଯେଉଁମାନେ ଏହାକୁ ରୂପ ଦେବାର କାର୍ଯ୍ୟ କଲେ ଧନ୍ୟ ସେମାନଙ୍କୁ । ଭବିଷ୍ୟତରେ ଏହା ଏକ ବିରାଟ କଳ୍ପଦ୍ରୁମ ହେବ, ହେଉ, ଅନେକ ଏହାର ଛାୟା ପାଇବେ, ଫଳ ପାଇବେ, ଯାହା ଯାହାର ମନ ସେ ପାଇବ, ଏହାର

କଲେବର ବୃଦ୍ଧି ହେଉ, ଗୁଣ ବର୍ଦ୍ଧନ ହେଉ, ଏଇ ମୋର ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।

ଦୁର୍ଗା ପ୍ରସାଦ ପଟ୍ଟନାୟକ
୭-୧୦-୮୭

'ପ୍ରଗତି ଉତ୍କଳ ସଂଘ'ର ସମୃଦ୍ଧ ଲାଇବ୍ରେରୀ ଆଜି ଦେଖି ଅତ୍ୟନ୍ତ ଆନନ୍ଦିତ ହେଲି । ଏଠାରେ ବିଭିନ୍ନ ପ୍ରକାର ଓଡ଼ିଆ ଓ ଇଂରାଜୀ ଗ୍ରନ୍ଥର ସମାବେଶ ସଂଘର ସଭ୍ୟ ସଭ୍ୟାଙ୍କ ପକ୍ଷରେ ଉପାଦେୟ ଏବଂ ସେମାନଙ୍କ ଉନ୍ନତ ରୁଚିର ପରିଚାୟକ । ସଂଘ କେତେକ ପ୍ରକାଶନ ମଧ୍ୟ କରିଛି, ଯାହା ଆମମାନଙ୍କ କାର୍ଯ୍ୟରେ ଲାଗିବ । 'ପ୍ରଗତି ଉତ୍କଳ ସଂଘ'ର ବିଭିନ୍ନ କାର୍ଯ୍ୟକ୍ରମ ଗାନ୍ଧିରକେଲା ଭଳି ଏକ ଆନ୍ତର୍ଜାତିକ ସହରରେ ବିଶେଷ ପ୍ରଶଂସନୀୟ । ଏ ଅନୁଷ୍ଠାନର ଉତ୍ତରୋତ୍ତର ଉନ୍ନତି କାମନା କରୁଛି ।

ଡକ୍ଟର କୃଷ୍ଣଚରଣ ବେହେରା
୧୩-୩-୮୮

'ପ୍ରଗତି ଉତ୍କଳ ସଂଘ'ର ପାଠାଗାର ମତେ ମୁଗ୍ଧ କରିଛି । ବ୍ୟକ୍ତି ଚେଷ୍ଟାରେ ଏପରି ପାଠାଗାର ଗଢ଼ିବା ପ୍ରକୃତରେ ଆନନ୍ଦର କଥା । ଏହା ବହୁ ବ୍ୟକ୍ତିଙ୍କର କାର୍ଯ୍ୟରେ ଲାଗିବ । ଏ ପାଠାଗାର ଚିରଂଜୀବୀ ହେଉ ।

ଡକ୍ଟର ଲାବଣ୍ୟ ନାୟକ
୧୩-୩-୮୮



# ପ୍ରଗତି ଉତ୍କଳ ସଂଘ ଗଠନର ପୃଷ୍ଠଭୂମି

**ଡକ୍ଟର ଶ୍ରୀଚରଣ ମହାନ୍ତି**

ଐକାନ୍ତିକ ନିଷ୍ଠା ଓ ସମ୍ମିଳିତ ଚେଷ୍ଟା ହିଁ ଅନୁଷ୍ଠାନକୁ କିପରି ଆଗେଇ ନେଇପାରେ, 'ପ୍ରଗତି ଉତ୍କଳ ସଂଘ' ତା'ର ନମୁନା ।

ଓଡ଼ିଶା ଭୂଇଁରେ ଗଢ଼ିଉଠିଥିବା 'କାଳମାଟି'ର ଲୁହା ଇସ୍ପାତ କାରଖାନା ଆଜି ରାଜନୈତିକ ଓଡ଼ିଶାରୁ ବିଚ୍ଛିନ୍ନ । ସମସାମୟିକ ଓଡ଼ିଶାର ନେତୃବୃନ୍ଦଙ୍କର ଅପାରଗତା ବା ସର୍ବଭାରତୀୟ ସ୍ତରରେ ନେତାମାନଙ୍କର ଚକ୍ରାନ୍ତରୁ, ଖଣିଜ ସମ୍ପଦ ପରିପୂର୍ଣ୍ଣ, ଶିଳ୍ପ ସମୃଦ୍ଧ କାଳମାଟି ଆଜି ଓଡ଼ିଶା ଭୂଇଁରୁ ଅଲଗା । ସ୍ୱାଧୀନ ଭାରତର ତଥାକଥିତ ଉଦାରବାଦୀ ନେତା ଆଜି ପ୍ରବାସୀ ଓଡ଼ିଆ ଭାଇ ଭଉଣୀଙ୍କ ମୁହଁରୁ ଭାଷା ଛଡ଼ାଇ ନେଇ ବିଶ୍ୱ-ଗ୍ରାସୀ ହିନ୍ଦି ଭାଷା ଜବରଦସ୍ତ ଲଦି ଦେବାରେ ବ୍ୟସ୍ତ । ଆଜି ବି ଓଡ଼ିଆ ଭାଇ ନିଜର ଆପତ୍ତି ଅଭିଯୋଗ ଶୁଣାଇବାକୁ ଯାଇ ସ୍ଥାନୀୟ ପ୍ରଶାସକଙ୍କଠାରୁ ସଉତୁଣୀ ପୁଅ ପରି ବ୍ୟବହାର ପାଏ । ସରକାରୀ ସ୍କୁଲର ଓଡ଼ିଆ ଶିକ୍ଷକ ଦରମା ନପାଇ ହଟହଟା ହୋଇ ଚାକିରି ଛାଡ଼େ । ଓଡ଼ିଆ ପଢ଼ୁଆ ସ୍କୁଲପିଲା ଓଡ଼ିଆ ଭାଷାର ବହି ନପାଇ ହୁଏତ ପାଠ ଛାଡ଼େ ନହେଲେ ଅକଳରେ ପଡ଼ି ହିନ୍ଦି ଭାଷା ପଢ଼େ ।

ପରାଧୀନ ଭାରତ ବର୍ଷରେ ଆସାମର ଚା ବଗିଚା ହେଉ, କଲିକତାର ଚଟକଲ ଅଥବା କାଳମାଟିର ଲୁହା କାରଖାନାରେ ହେଉ ଅଭାବଗ୍ରସ୍ତ ଶ୍ରମିକ ଓଡ଼ିଆ ଥିଲା ବିଦେଶୀ, ପରଦେଶୀ । ଭାରତ ସ୍ୱାଧୀନତା ଲାଭ କଲାପରେ କାଳମାଟିର ଓଡ଼ିଆ ଶ୍ରମିକର ଭାଗ୍ୟ ବଦଳିଲା ନାହିଁ, ବରଂ ନିଜ ରାଜ୍ୟ ମାଟିକୁ ତାଠାରୁ ନେଇ ଆଉ ଗୋଟିଏ ରାଜ୍ୟ ସହିତ ଯୋଡ଼ି ଦିଆଗଲା । ଯେଉଁ ରାଜ୍ୟର ଭାଷା, ସାଂସ୍କୃତିକ ପରମ୍ପରା ଅଥବା ଭୌଗୋଳିକ ଅବସ୍ଥିତିର ସୁଷମ ସମ୍ପର୍କ ନାହିଁ, ରାଜନୈତିକ ସ୍ୱାର୍ଥ ହାସଲ ପାଇଁ ସେହିପରି ଏକ ରାଜ୍ୟ ସହିତ ଓଡ଼ିଆମାନଙ୍କର ଭାଗ୍ୟ ଯୋଡ଼ିଦିଆଗଲା । ଓଡ଼ିଆ ପୁଅ ନିଜ ଭିଟାମାଟିରେ ପରଦେଶୀ ପାଲଟିଗଲା । ଶାସନ କ୍ଷେତ୍ରରେ ନିଜ ବନ୍ଧୁ-ବାନ୍ଧବ ପ୍ରିୟାପ୍ରୀତିଠାରୁ ଦୂରେଇ ଗଲା ।

ସେଦିନର କାଳମାଟି ଶିଳ୍ପପତି ଜାମ୍‌ସେଦ୍‌ଜୀ ଟାଟାଙ୍କ ନାମ ଅନୁସାରେ ଏବେ ଜାମ୍‌ସେଦପୁର ବା ଟାଟା ନଗର ହୋଇଛି । ସହରଟି ଗୋଟିଏ ସର୍ବଭାରତୀୟ ସହର

ହୋଇ ପାରିଛି । ମାତ୍ର ଆଖ ପାଖର ଗାଁ ଅଞ୍ଚଳ ଆହୁରି ସେପରି ସଂସ୍କାରସ୍ପର୍ଶ ସ୍ତରକୁ ଆସି ପାରିନ, ସେ ଅଞ୍ଚଳ ଯେଉଁ ଓଡ଼ିଆ ଅଞ୍ଚଳକୁ ସେଇ ଓଡ଼ିଆ ଅଞ୍ଚଳ ।

ସ୍ୱାଧୀନ ଭାରତର ଶିଳ୍ପ ମନ୍ଦିର ରାଉରକେଲା ଇସ୍ପାତ କାରଖାନା ସ୍ଥାପନ କରା-ଯିବା ସମୟରେ ଦଳେ ଶିକ୍ଷାନବିଶ ତାଲିମ ପାଇଁ ଜାପାନ ଯାଇଥିଲେ । ସେଠାରୁ ତାଲିମ୍ ପାଇ ରାଉରକେଲା ଇସ୍ପାତ କାରଖାନାରେ କାମ କରିବା ସେମାନଙ୍କର ଲକ୍ଷ୍ୟ ଥିଲା । ସେମାନଙ୍କ ମଧ୍ୟରୁ ଦଳେ ଓଡ଼ିଆ ଯୁବକ ସୁନ୍ଦର ନଗର ଟ୍ରେନିଙ୍ଗ୍ ହଷ୍ଟେଲରେ ରହି କେବଳ ତାଲିମ୍ ନେଲେ ନାହିଁ ବରଂ ସେ ଅଞ୍ଚଳର ଅବସ୍ଥା ଦେଖି, ଓଡ଼ିଆ ଭାଇ ଭଉଣୀଙ୍କର ଅବସ୍ଥା ଦେଖି, ଉତ୍କଳ ଜନନୀର ଖଣ୍ଡିତ ରୂପ ଲଣ୍ଠିତ ମସ୍ତକ ଦେଖି ପାରିଲେ ।

ଯୁବକ ମନରେ ଉତ୍କଳ ଜନନୀର ଯେଉଁ କରୁଣ ସ୍ୱର ବାଜିଥିଲା, ସେଇଥିରୁ ଜନ୍ମ ନେଲା 'ପ୍ରଗତି ଉତ୍କଳ ସଂଘ' । ସେମାନଙ୍କର ଆଶାଥିଲା, ସେଠୁବନ୍ଧ ପ୍ରତିଷ୍ଠାରେ ଗୁଣ୍ଡୁଚିମୂଷାର ଭୂମିକା ପରି, ଉତ୍କଳ ଜନନୀର ସେବା ପାଇଁ, ସେମାନେ ଯତକିଞ୍ଚିତ୍ ହେଉପଛେ ସେବା କରିଚାଲିବେ । ସେଦିନର ଯୁବବନ୍ଧୁମାନେ (ଅନନ୍ତ ସେମାନଙ୍କର ନାମ ପ୍ରଦାନ କରାଯାଇଛି) ମିଳିତ ଭାବରେ ଯେଉଁ ମହତ ସ୍ୱପ୍ନ ଦେଖିଥିଲେ ତାହା ଆଜି ସାକାର ହୋଇ ପାରିଛି । ତିନୋଟି ଦଶକରୁ ଅଧିକ ସମୟ ଅତିବାହିତ ହୋଇଥିଲେ ମଧ୍ୟ ବହୁ ନୂତନ ସଭ୍ୟସଭ୍ୟାଙ୍କ ସହିତ ପୁରାତନ ସଭ୍ୟମାନେ କାର୍ଯ୍ୟକ୍ଷମ ଅଛନ୍ତି, ତାହାହିଁ ଗୌରବର କଥା । ସେଦିନ ସେମାନେ ଯେଉଁ ଆଦର୍ଶ ନେଇ କାମ ଆରମ୍ଭ କରିଥିଲେ, ଆଜି ବି ସେଇ ଆଦର୍ଶକୁ ରକ୍ଷା କରିଚାଲିଛନ୍ତି । ଯେଉଁଟିଣ ବାକ୍ସଟିରେ ସେଦିନର ପାଠାଗାରଟି ଜନ୍ମଲାଭ କରିଥିଲା, ଆଜିବି ସେ ବାକ୍ସ ଅଭୁଲା ସ୍ମୃତି ଭାବରେ ସାଇତା ହୋଇ ରଖାଯାଇଛି । ଖାଲି ସେତିକି ନୁହେଁ, ସେ ବର୍ଷର ଶେଷ ଭାଗରେ (୧୯୫୯) ସଭାପତି ଆସନ ମଣ୍ଡନ କରିଥିବା ଶ୍ରୀଯୁକ୍ତ ନରେଶ ଚନ୍ଦ୍ର ନାୟକ ଆଜି ମଧ୍ୟ କର୍ମବ୍ୟସ୍ତ ଜୀବନ ମଧ୍ୟରୁ ସମୟ ବାହାରି କରି ବିଭିନ୍ନ କାର୍ଯ୍ୟରେ ପରାମର୍ଶ ଦେଇଯାଉଛନ୍ତି ।

ଭାରତର ସ୍ୱାଧୀନତା ଦିବସରେ ଏହାର ପ୍ରତିଷ୍ଠା ଓ ପ୍ରତିବର୍ଷ ଏହି ପବିତ୍ର ଦିନରେ ତାର ବାର୍ଷିକ ଉତ୍ସବ ଓ ସାଧାରଣ ନିର୍ବାଚନ ଅନୁଷ୍ଠିତ ହୋଇ ନୂତନ ସଭ୍ୟମାନଙ୍କୁ ଦାୟିତ୍ୱ ହସ୍ତାନ୍ତର କରାଯାଏ । ତା ୪.୧୧-୧୯୫୯ରିଖର ଏକ ସାଧାରଣ ଅଧିବେଶନରେ ଏହାର ସମ୍ବିଧାନ ଗୃହୀତ ହୋଇଥିଲା । ପ୍ରାଥମିକ ଅବସ୍ଥାରେ ଏହାର ସୀମିତ ସମ୍ବଳ ମଧ୍ୟରୁ ବି ୧୯୫୯ ମସିହାର ବନ୍ୟାବିଦ୍ଧ‌ୁର୍ଗତମାନଙ୍କୁ ସାହାଯ୍ୟ ପଠାଇବାର ବ୍ୟବସ୍ଥା କରାଯାଇଥିଲା । ପୂର୍ଣ୍ଣାଙ୍ଗ ଉତ୍କଳ ଗଠନ ତଥା ବିଚ୍ଛିନ୍ନାଞ୍ଚଳର

ଏକତ୍ରୀକରଣ ବଗରେ କର୍ମୀମାନଙ୍କର ଅବ୍ୟାହତ ରହିଥିଲା । ତା ୭-୮-୭୦ଶରଣରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀକୁ ପ୍ରଗତି ଉତ୍କଳ ସଂଘର ପାଞ୍ଚଜଣ ସଭ୍ୟ ଶ୍ରୀଯୁକ୍ତ ବରୁପାକ୍ଷ ପାଢ଼ୀଙ୍କ ନେତୃତ୍ୱରେ ଯାଇ ଆଲୋଚନାରେ ଭାଗ ନେଇଥିଲେ ।

ରାଉରକେଲାର ଅତି ଶାବକର ଦୁଃସଙ୍କଟା ମଧ୍ୟରେ 'ପ୍ରଗତି ଉତ୍କଳ ସଂଘ'ର ସାଂସ୍କୃତିକ କାର୍ଯ୍ୟକ୍ରମ କର୍ମକଣ୍ଟାଳପୂର୍ଣ୍ଣ ଜୀବନରେ ଆଣିଦେଇଥିଲା ମାଧୁର୍ଯ୍ୟ । ତା ୩୦-୧୨-୫୯ରେ ନାଟକ "ସ୍ୱାମୀ-ସ୍ତ୍ରୀ", ୧୯୬୪ ମସିହା ଜାନୁୟାରୀ ୧୧ ଓ ୧୨ ତାରଖରେ ନାଟକ "ଅଗ୍ନିଶିଖାର ସ୍ୱର୍ଗ", ୧୯୬୫ ମସିହାର ମାର୍ଚ୍ଚ ୨୦ ଓ ୨୧ ତାରଖରେ "ଅଶାନ୍ତ ଛାଇ" ନାଟକର ଅଭିନୟକୁ ଏବେ ମଧ୍ୟ ପୁରୁଣା ଲୋକମାନେ ମନେ ପକାନ୍ତି ।

କାଳର ମାନଦଣ୍ଡରେ ତେରଣ ବର୍ଷ ସମୟ କିଛି ନ ହେଲେ ମଧ୍ୟ ବ୍ୟକ୍ତି ଜୀବନରେ ଏହି ସମୟର ଯଥେଷ୍ଟ ମହତ୍ତ୍ୱ ରହିଛି । ନିରବଧି କାଳ ଆଗେଇ ଚାଲିଛି । ସୁବିଧା ଦେଖି ସେ ତାର ପାଦଚିହ୍ନ ରଖିଯାଉଛି । ଏହି ସମୟ ମଧ୍ୟରେ ଅନୁଷ୍ଠିତ କାର୍ଯ୍ୟାବଳୀ କାଳର ପଦଚିହ୍ନ ମାତ୍ର ।

ଦିନ ଗଡ଼ି ଚାଲିଲା । ସୁଦୂର ନଗର ଟ୍ରେନିଙ୍ଗ୍ ହଷ୍ଟେଲରେ ରହି ଜାମସେଦପୁର ଇସ୍ପାତ କାରଖାନାରେ ତାଲିମ ନେଉଥିବା ଶିକ୍ଷାର୍ଥୀମାନେ ରାଉରକେଲା ଫେରିଆସି ଏଠାର ଇସ୍ପାତ କାରଖାନାରେ ଯୋଗଦେଲେ । ମାତ୍ର ଜାଲିମାଟିର ସ୍ମୃତି ଏଠାକୁ ଆସିଲାପରେ ମନରୁ ପୋଛିଦେଲେ ନାହିଁ । ଯେଉଁ ପରିବେଶ ଓ ପରସ୍ପର ଓ ପରିସ୍ଥିତି ସେମାନଙ୍କୁ ସେଠାରେ 'ପ୍ରଗତି ଉତ୍କଳ ସଂଘ' ଗଢ଼ିବା ପାଇଁ ପ୍ରେରଣା ଯୋଗାଇଥିଲା, ସେମାନେ ରାଉରକେଲା ଆସି ଦେଖିଲେ ଏଠାରେ ବି ତା'ଠାରୁ କରୁଣ ଅବସ୍ଥା । ତତ୍‌କାଳୀନ ରାଉରକେଲା ଓଡ଼ିଶାର ରାଜନୈତିକ ମାନଚିତ୍ରରେ ଅବସ୍ଥାପିତ ହୋଇ-ଥିଲେ ମଧ୍ୟ ସାମାଜିକ ଜୀବନ ଓ ଓଡ଼ିଆର ନିଜସ୍ୱ ସ୍ଥିତିଠାରୁ ଏହା ଅନେକ ଦୂରରେ, କାହିଁ କେତେ ଦୂରରେ । ପ୍ରକୃତିର ସବୁଜ ଓ ରଙ୍ଗିଲା ପଣତ କାନରେ ଢ଼ାଙ୍କି ହୋଇଥିବା ଧଉଳି ରାଉରକେଲାରେ ଓଡ଼ିଆ ଅପାଙ୍କ୍ତେୟ । ଓଡ଼ିଆ ଭାଷା ସ୍ୱପ୍ନ । ଓଡ଼ିଆର ସ୍ଥିତି ଦୟନୀୟ । ଜାଲିମାଟିରେ ଅଙ୍କୁରିଥିବା ଗଛଟି ଏଠାରେ ଉପଯୁକ୍ତ ଜଳବାୟୁ ଉତ୍ତାପ ପାଇ ମୁଣ୍ଡ ଟେକିଲା, ଉପରକୁ, ଆହୁରି ଉପରକୁ । ମାତ୍ର ପରିସ୍ଥିତିର ପଥରଗୁଡ଼ରେ ତାହା ବେଳେ ବେଳେ ଛନ୍ନଛଡ଼ା ହୋଇଯାଏ । ମାତ୍ର ସେଇଠି ସିଏ ବନ୍ଦ ନହୋଇ ପୁଣି ଚାଲେ, ଆଗେଇ ଚାଲେ, ଆଗକୁ, ଆହୁରି ଆଗକୁ, ଦେଖେ ବାଟ ଯେ ଅନେକ ବାକି ..... ... ।

ସେ ଦିନର ରାଉରକେଲାରେ ଓଡ଼ିଆ ଭାଷା, ଓଡ଼ିଆ ସଂସ୍କୃତି ତଥା ଓଡ଼ିଆମାନଙ୍କର ସ୍ଥିତି ବିଷୟରେ ଆଜି କଳ୍ପନା କରିହେବ ନାହିଁ । ସେତେବେଳେ ସାଂସ୍କୃତିକ କାର୍ଯ୍ୟକ୍ରମରେ ଓଡ଼ିଆରେ ଗୀତଟିଏ ବୋଲିଲେ ସେ ସମୟର କେତେକ ପଦସ୍ଥ ଓଡ଼ିଆ ଅଫିସରଙ୍କୁ ବାଧୁଥିଲା । ଭଦ୍ର ସମାଜରେ କଥାବାର୍ତ୍ତା ହିନ୍ଦିରେ ନ ହେଲେ ବଙ୍ଗଳାରେ । ବଙ୍ଗଳାର ଗୀତ ଆଉ ବଙ୍ଗଳା ତଥା ହିନ୍ଦିରେ ଭାଷଣ । ଏବେ ବି ତିନି ଦଶକ ପରେ ମଧ୍ୟ ଓଡ଼ିଆ ଲୋକେ ଏଠାରେ ଅଧିକାଂଶ ସମୟରେ ହିନ୍ଦିରେ କଥାବାର୍ତ୍ତା ହୁଅନ୍ତି । ହାଟ ବଜାରରେ, କଳ କାରଖାନାରେ ଘରେ ବାହାରେ ନିଜ୍'ଜ ଭାବରେ ପ୍ରମାଦପୂର୍ଣ୍ଣ ହିନ୍ଦି ଭାଷା କହିବାରେ କେତେକ ଓଡ଼ିଆ ଖୁବ୍ ଧୂରନ୍ଧର । ମାତ୍ର ସେ ଦିନର ଅବସ୍ଥା ଭିନ୍ନ । ଦୁର୍ବଳମନା ଓଡ଼ିଆ ସାହସ କରି ପଦେ ଓଡ଼ିଆ କଥା କହିବାକୁ ବା ପଦେ ଓଡ଼ିଆ ଗୀତ ବୋଲିବାକୁ ଭରସା କରୁ ନଥାଏ । ଏଭଳି ପରିବେଶରେ 'ପ୍ରଗତି ଉତ୍କଳ ସଂଘ' ସମେତ କେତେକ ଓଡ଼ିଆ ଅନୁଷ୍ଠାନ ସାଂସ୍କୃତିକ କାର୍ଯ୍ୟକ୍ରମ ମାଧ୍ୟମରେ ସେ ଭାବକୁ ଦୂର କରିବାକୁ ଚେଷ୍ଟା କରୁଥାନ୍ତି ।

ସେ ସମୟର ରାଉରକେଲାରେ ଓଡ଼ିଆମାନଙ୍କ ସାମାଜିକ ଜୀବନ ଓ ସାଂସ୍କୃତିକ ଜୀବନ କିପରି ଥିଲା, ତାହା 'ପ୍ରଗତି ଉତ୍କଳ ସଂଘ'ର ନବମ ବାର୍ଷିକ ବିବରଣୀରେ ଲିପିବଦ୍ଧ ହୋଇଛି । ସେ ସମୟର ସମ୍ପାଦକ ଶ୍ରୀ ହରିହର ମହାପାତ୍ର ତାଙ୍କର ବାର୍ଷିକ ବିବରଣୀରେ ଲେଖିଛନ୍ତି—"ବିଗତ ଦଶ ବର୍ଷରେ ଏହି ପୁଣ୍ୟପୀଠରେ ଯେଉଁ ମହାନ୍ ଶିଳ୍ପ ବିପ୍ଳବ ସଙ୍ଗଠିତ ହୋଇଛି, ତାହାର ପ୍ରଭାବ ଓଡ଼ିଶାର ଜାତୀୟ ଜୀବନରେ ସୁଦୂରପ୍ରସାରୀ । ସର୍ବଭାରତୀୟ ସଂସ୍କୃତିର ମିଳନପୀଠ, ଆମର ପ୍ରିୟ ଏହି ଶିଳ୍ପ-ନଗରୀରେ ଓଡ଼ିଆ ସଂସ୍କୃତି ପ୍ରତି ଯେଉଁ ଆହ୍ୱାନ ଆସିଛି, ଆମକୁ ତାର ଉତ୍ତର ଦେବାକୁ ହେବ । ନିଜର ସଭ୍ୟତା ଓ ସଂସ୍କୃତିକୁ ପ୍ରଗତି ପଥରେ କିପରି ଆଗେଇ ନେବାକୁ ହେବ, ଅନ୍ୟ ସମସ୍ତଙ୍କ ସମକକ୍ଷ କରିବାକୁ ହେବ ସେହି ଆତ୍ମ ଚେତନା ଆଜି ଆମର ମନ ପ୍ରାଣରେ ଭରିଯାଇଛି । ବନ୍ଧୁଗଣ ଏଥର ସଦୁପଯୋଗରେ ମୁହୂର୍ତ୍ତ ଆସିଛି ଏବଂ ଏଥର ମୁକାବିଲା କରିବାକୁ ହେବ ।" ୧୫-୮-୧୯୬୭ର ରିପୋର୍ଟ ।

ସନ ୧୯୬ ମସିହା ବେଳକୁ ରାଉରକେଲାରେ ଓଡ଼ିଆମାନଙ୍କ ସ୍ଥିତିରେ କେତେକ ପରିବର୍ତ୍ତନ ହୋଇଛି । ପ୍ରଗତି ଉତ୍କଳ ସଂଘ ପ୍ରତିଷ୍ଠାର ଦଶବର୍ଷ ପରେ ଏକ ଭିନ୍ନ ମୋଡ଼ ନେଇଛି । ଏଥର ଅବସ୍ଥା ଓ ସଙ୍ଗଠନ ବେଶ୍ ସ୍ୱଚ୍ଛଳ ଢଙ୍ଗରେ ଗତି କରିଛି । ସେ ସମୟର କର୍ମକର୍ତ୍ତାମାନେ ରାଉରକେଲାରେ ଏକ ବଡ଼ ଧରଣର ସମାବେଶ କରିବା ପାଇଁ ସ୍ଥିର କଲେ । ସେମାନଙ୍କ ସମ୍ମୁଖରେ ପ୍ରତିଭାତ ହେଲେ ଉତ୍କଳ ଗୌରବ ମଧୁସୂଦନ ଦାସ । ମଧୁବାବୁଙ୍କ ଲକ୍ଷ୍ୟ ଓ ଆଦର୍ଶ ସହିତ ଅନୁଷ୍ଠାନର

କର୍ମୀମାନଙ୍କର ଆଦର୍ଶର ମେଳ ଖାପ ଖାଇବାରୁ ସେମାନେ ଦେଶପ୍ରାଣ ମଧୁସୂଦନଙ୍କ ଜନ୍ମ ଦିନକୁ ପାଳନ କରିବାକୁ ସ୍ଥିର କଲେ । ନୂତନ ଓଡ଼ିଶାର ପ୍ରାଣ ପ୍ରତିଷ୍ଠାଙ୍କ ଜନ୍ମଦିନ ଓ ନବ ଉତ୍କଳର ଜନ୍ମଦିନ ଗୋଟିଏ ମାସରେ ପଡ଼ୁଥିବାରୁ ଅପ୍ରେଲ ପହିଲାରେ ଉତ୍କଳ ଦିବସ ଓ ମଧୁସୂଦନ ଜୟନ୍ତୀ ପାଳନ ନିମନ୍ତେ କାର୍ଯ୍ୟକ୍ରମ ସ୍ଥିର ହୋଇ ମହାସମାରୋହରେ ଉତ୍ସବ ସମ୍ପନ୍ନ ହେଲା । ଏ ଉତ୍ସବ ପାଳନ ଅନ୍ତରାଳରେ ଦେଖା-ଦେଇଥିବା ନାନା ଘଟଣାକୁ ପରବର୍ତ୍ତୀ ତିନୋଟି ସ୍ୱତନ୍ତ୍ର ପ୍ରବନ୍ଧରେ ଆଲୋଚନା କରାଯାଉଅଛି ।

ମଧୁସୂଦନଙ୍କ ଦୃଷ୍ଟିରେ ଉତ୍କଳୀୟର ସଂଜ୍ଞାକୁ ସଭ୍ୟମାନେ ମନପ୍ରାଣ ଦେଇ ଗ୍ରହଣ କରିନେଇଛନ୍ତି । ଓଡ଼ିଶାର ପରିସରରେ ରହି ଯେଉଁ ବ୍ୟକ୍ତି ଓଡ଼ିଆ ଭାଷା, ଓଡ଼ିଶାର ମାଟି ଓ ଓଡ଼ିଆ ସଂସ୍କୃତିକୁ ଆଦର କରିପାରିଲା, ସେ ଯେଉଁ ଜାତି, ଯେଉଁ ଭାଷା ବା ଯେଉଁ ଧର୍ମର ହେଉ ସେହି ହିଁ ଉତ୍କଳୀୟ । ଏହି ମହାନ୍ ଆଦର୍ଶରେ ବିଶ୍ୱାସ କରି ପ୍ରଗତି ଉତ୍କଳ ସଂଘରେ କେବଳ ଓଡ଼ିଶାର ନୁହେଁ ଓଡ଼ିଶା ବାହାରର ଅନେକ ସଭ୍ୟ ଏହାକୁ ସହଯୋଗ କରନ୍ତି । ପ୍ରଗତି ଉତ୍କଳ ସଂଘର ସଭ୍ୟମାନେ ଏହି ଉଦାର ଧାରାରେ ବିଶ୍ୱାସ କରନ୍ତି ।

ସରକାରୀ ଉଦ୍ୟମରେ 'ଉତ୍କଳ ଦିବସ' ପାଳନର ଅବ୍ୟବହିତ ପୂର୍ବରୁ ପ୍ରଗତି ଉତ୍କଳ ସଂଘ' ଯେଉଁ ଗୌରବର ସହିତ ଏହି ଦିବସକୁ ପାଳନ କରି ଆସିଛି ତାହା ବାସ୍ତବିକ ପ୍ରଶଂସନୀୟ । ୧୯୬୮ ମସିହାରୁ ଅନୁଷ୍ଠାନର କର୍ମପରିସର ବ୍ୟାପକ ହୋଇଛି । ସେତେବେଳକୁ ପ୍ରଗତି ଉତ୍କଳ ସଂଘ କେବଳ ଗୋଟିଏ ଲାଇବ୍ରେରୀ ହୋଇ ରହିନ ବରଂ ଏହା ରାଉରକେଲାର ଏକ ସାଂସ୍କୃତିକ ପ୍ରାଣକେନ୍ଦ୍ର ଭାବରେ ଦଣ୍ଡାୟମାନ ହୋଇଛି । ସେ ବର୍ଷର ସାଧାରଣ ସମ୍ପାଦକ ଶ୍ରୀ ରାଧାନାଥ ରାଉତଙ୍କ ବାର୍ଷିକ ବିବରଣୀରୁ ଜଣାଯାଏ ଯେ 'ପ୍ରଗତି ଉତ୍କଳ ସଂଘ' ବିବିଧ କର୍ମରେ ନେତୃତ୍ୱ ନେଇଛି । ପାଠାଗାରର ସଭ୍ୟ ସଂଖ୍ୟା ଓ ପୁସ୍ତକ ସଂଖ୍ୟା ବଢିଯାଇ ଦଶ ହଜାର ପୁସ୍ତକ ବର୍ଷ ମଧ୍ୟରେ ଆଦାନ ପ୍ରଦାନ ହୋଇଛି । ସର୍ବ ସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ପଠନାଗାରକୁ ପ୍ରାୟ ତିରିଶ ଖଣ୍ଡ ପତ୍ରିକା ନିୟମିତ ଆସୁଥିଲା । ସେ ସମୟର ବର୍ଷର ବିଭିନ୍ନ ସମୟରେ ଶିଳ୍ପୀ ସମ୍ବର୍ଦ୍ଧନା, ଛାତ୍ରଛାତ୍ରୀମାନଙ୍କୁ ସାହାଯ୍ୟ, ସାହିତ୍ୟଚକ୍ର ସମେତ ନାନା ସାଂସ୍କୃତିକ କାର୍ଯ୍ୟକ୍ରମ ସମାହିତ ହେଉଥିଲା । ସେ ସମୟରେ ପ୍ରଗତି ଉତ୍କଳ ସଂଘ ତରଫରୁ ରାଉରକେଲାରେ ପ୍ରତିଷ୍ଠିତ ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନର ଏକ ସମନ୍ୱୟ ସମିତି ଗଠନ କରାଯାଇ ସମସ୍ତଙ୍କ ଭିତରେ ସଦ୍‌ଭାବ ଓ ମିଳିତ କାର୍ଯ୍ୟକ୍ରମ ପ୍ରସ୍ତୁତି ନିମନ୍ତେ ବିଧିବଦ୍ଧ ଉଦ୍ୟମ ହେବାର ଦେଖାଯାଏ ।

ଅନୁଷ୍ଠାନ ଆରମ୍ଭରୁ ସଭ୍ୟମାନଙ୍କର ସଭ୍ୟଶୁଳ୍କ ତଥା ଅନ୍ୟମାନଙ୍କର ଦାନ ଦ୍ୱାରା ଅନୁଷ୍ଠାନ ଚଳାଇବାକୁ ସଭ୍ୟମାନେ ଯଥେଷ୍ଟ ମନେ ନକରି ଆଉ ଏକ ଭିନ୍ନପନ୍ଥା ବାଛି ନେଇଥିଲେ । ଜନସାଧାରଣଙ୍କ ଉତ୍ସବ ଅନୁଷ୍ଠାନରେ ଆବଶ୍ୟକ କ୍ଷେତ୍ରରେ ସରଞ୍ଜାମ, ପାଲ, ଦରି, ଡେକୋରେସନ୍ ଓ ମାଇକ୍ ଇତ୍ୟାଦିକୁ ଭଡ଼ା ସୂତ୍ରରେ ଯୋଗାଇ ଦେଇ ସେଥିରୁ ଲବ୍ଧ ଅର୍ଥକୁ ସଂଘର ଉନ୍ନତିରେ ବିନିଯୋଗ କରିବାକୁ ସ୍ଥିର କରାଯାଇଥିଲା । ସଭ୍ୟମାନଙ୍କର ସ୍ୱେଚ୍ଛାକୃତ ସେବାଦ୍ୱାରା ଏହି ଆତ୍ମ ପନ୍ଥାଟି ବାହାରିଥିଲା । ଦୀର୍ଘ ଦିନ ପରେ ଆଜି ବି ତାହା ଅବ୍ୟାହତ ରହିଛି । ଅନୁଷ୍ଠାନର ବିବିଧ ଖର୍ଚ୍ଚ ଓ ଉନ୍ନତି ପାଇଁ ଏ ପ୍ରକାର ସ୍ୱାବଲମ୍ବନ ଧାରଣ ଆଜି ସଂସ୍ଥାଟିକୁ ଏକ ସମ୍ମାନ ଜନକ ଆସନ ପ୍ରଦାନ କରିଛି ।

ମନେ ପଡ଼ୁଛି, ଉତ୍କଳର କଳା, ସଂସ୍କୃତିର ପ୍ରସାରରେ ନିମନ୍ତେ ଯେଉଁ ବର୍ଷ କଳାବିକାଶ କେନ୍ଦ୍ରର ପ୍ରତିଷ୍ଠାତା ସ୍ୱର୍ଗତ ବାବୁଲାଲ ଦୋଶୀଙ୍କୁ ପ୍ରଗତି ଉତ୍କଳ ସଂଘ ତରଫରୁ, ସମ୍ବର୍ଦ୍ଧନା ଦିଆଗଲା, ସେଦିନ ସଂଘ ପରିଦର୍ଶନରେ ଆସି, ବାବୁଲାଲ ଦୋଶୀ ଅନୁଷ୍ଠାନର ଏ ପ୍ରକାର ଅର୍ଥାଗମର ଉଦ୍ୟମ ଦେଖି ଯେଉଁ ସ୍ୱତଃସ୍ଫୂର୍ତ୍ତ ପ୍ରକାଶ କରିଥିଲେ ତାହା ଏକ ସମସ୍ୱରେ ଆନନ୍ଦ ଓ ବିସ୍ମୟ ଜାଗ୍ରତ କରେ ।

ପ୍ରଗତି ଉତ୍କଳ ସଂଘ ଆଜି ପ୍ରଗତି ପଥରେ ଅଗ୍ରଗାମୀ । ନାନାବିଧ ତଥ୍ୟ ସଂଗ୍ରହ ଓ ନାନାବିଧ ପୁସ୍ତକର ସମାବେଶରେ ପାଠାଗାର ଆଜି ସମୃଦ୍ଧ । ବିଭିନ୍ନ ସମୟରେ ନାନା ଦୁଃସାହସିକ ପଦକ୍ଷେପ ସ୍ୱରୂପ ଅନୁଷ୍ଠାନ ବିଭିନ୍ନ କାର୍ଯ୍ୟ କରି ଆସିଛି । ରାଉରକେଲା ରେଲ ଷ୍ଟେସନଠାରୁ ସହର ମଧ୍ୟକୁ ପ୍ରବେଶ ପଥରେ ଉତ୍କଳ ଗୌରବ ମଧୁସୂଦନଙ୍କର ପୂର୍ଣ୍ଣାବୟବ ବ୍ରୋଞ୍ଜ ମୂର୍ତ୍ତି ସ୍ଥାପନ, ମଧୁବାବୁଙ୍କର ଇଂରାଜୀ ବକ୍ତୃତାବଳୀର ସଙ୍କଳନ ପ୍ରକାଶ, ପ୍ରତିବର୍ଷ ମଧୁସୂଦନଙ୍କ ସମ୍ପର୍କରେ ଗବେଷଣା ମୂଳକ ପ୍ରବନ୍ଧ ପ୍ରକାଶ, ମଧୁବାବୁଙ୍କ ନାମରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୃତିଛାତ୍ରଙ୍କୁ ସ୍ୱର୍ଣ୍ଣ ପଦକ ପ୍ରଦାନର ବ୍ୟବସ୍ଥା, ଇତ୍ୟାଦି ଏହି ଅନୁଷ୍ଠାନର କାର୍ଯ୍ୟାବଳୀର ନମୁନା ।

ପ୍ରଗତି ଉତ୍କଳ ସଂଘର ପୁରୁଖା ସଭ୍ୟମାନଙ୍କର ଅନୁଭୂତି ଓ କାର୍ଯ୍ୟାବଳୀ ସମ୍ପର୍କୀୟ ବିଭିନ୍ନ ଆଲୋଚନା ପରବର୍ତ୍ତୀ ପର୍ଯ୍ୟାୟରେ ସ୍ୱତନ୍ତ୍ର ପ୍ରବନ୍ଧ ମାଧ୍ୟମରେ ଉପସ୍ଥାପନ କରାଯାଉଅଛି । ଯେଉଁମାନେ ଏ ଅନୁଷ୍ଠାନ ପ୍ରତିଷ୍ଠା କରିଥିଲେ, ସେମାନେ ସମସ୍ତେ ଆଜି ଜୀବନର ଅପରାହ୍ଣରେ ଅବତୀର୍ଣ୍ଣ । କର୍ମଜୀବନର ବ୍ୟସ୍ତତା ଓ ପାରିବାରିକ ଜୀବନର ଜଞ୍ଜାଳ ମଧ୍ୟରେ ବୁଢ଼ାରହି ବି ସେମାନେ ଅନୁଷ୍ଠାନ ପ୍ରତି ନିଜର କର୍ତ୍ତବ୍ୟକୁ ହେଳା କରୁ ନାହାନ୍ତି । ଜାଗ୍ରତ ଜୀବନରେ ଉଦ୍‌ବୁଦ୍ଧ ନିଷ୍ଠାପର କର୍ମୀମାନଙ୍କର

ସ୍ୱପ୍ନର ଅନୁଷ୍ଠାନ ଆଜି ପୂର୍ଣ୍ଣାଙ୍ଗ ହୋଇ ପାରିଛି, ଅନୁଷ୍ଠାନ ଆଜି ନୂତନ କର୍ମୀମାନଙ୍କୁ ସ୍ୱାଗତ କରୁଛି ।

ପ୍ରଗତି ଉତ୍କଳ ସଂଘର ଇତିହାସ ସହିତ ଶିଳ୍ପନଗରୀ ରାଉରକେଲାର ବିଗତ ତିନି ଦଶକର ସାଂସ୍କୃତିକ ଇତିହାସ । ସେହିପରି ସାଂସ୍କୃତିକ ଜୀବନର ନାନା ଘଟଣାବଳୀକୁ ଉପସ୍ଥାପନ କରିବାର ପ୍ରୟାସ ଏହି ସଙ୍କଳନରେ କରିବାକୁ ଚେଷ୍ଟା କରାଯାଇଛି । ଏହା ସଙ୍ଗେ ସଙ୍ଗେ ସେ ସମୟର କେତେକ ପ୍ରମୁଖ ଅନୁଷ୍ଠାନର ସୂଚନା ମଧ୍ୟ ସ୍ୱତନ୍ତ୍ର ପ୍ରବନ୍ଧ ରୂପରେ ପ୍ରକାଶ ପାଇଁ ଚେଷ୍ଟା କରାଯାଇଛି । ରାଉରକେଲାର ସାଂସ୍କୃତିକ ଇତିହାସର ଏହା ଏକ ପଦକ୍ଷେପ ମାତ୍ର । ଭବିଷ୍ୟତରେ ସଙ୍କଳନ ପାଇଁ ଏହା କେତେକ ତଥ୍ୟ ଯୋଗାଇ ଦେବା ଉଦ୍ଦେଶ୍ୟରେ ପରିଶିଷ୍ଟରେ ବହୁ ତଥ୍ୟକୁ ସଂକ୍ଷିପ୍ତ ରୂପରେ ଉପସ୍ଥାପନ କରାଯାଇଛି । ପ୍ରଗତି ଉତ୍କଳ ସଂଘ ସଂକୀର୍ଣ୍ଣ ଆଞ୍ଚଳିକତା, ପ୍ରାଦେଶିକତା, ଧର୍ମ ଓ ଭାଷା ଭେଦର ଊର୍ଦ୍ଧ୍ୱରେ ରହି ସମସ୍ତଙ୍କୁ ଆହ୍ୱାନ କରୁଛି, ମିଳିତ ଭାବରେ ସାଂସ୍କୃତିକ ଜୀବନ ଅତିବାହିତ କରିବା ପାଇଁ । ଏବେ ତା'ର ନାନା କାର୍ଯ୍ୟାବଳୀରେ ସେ ଭାବକୁ ପ୍ରଦର୍ଶନ କରାଯାଇଛି । ମଧୁବାବୁଙ୍କର ସେତେବେଳର ଉକ୍ତିକୁ ଆଜି ବୃହତ୍ତର ଅର୍ଥରେ ଗ୍ରହଣ କରି ପ୍ରଗତି ଉତ୍କଳ ସଂଘ ଆହ୍ୱାନ କରୁଛି —

ଜାତି ପ୍ରେମ ବହ୍ନି ପ୍ରଜ୍ୱଳିତ କର ସ୍ୱାର୍ଥକୁ ଦିଅ ଆହୁତି,
ସ୍ୱାର୍ଥ ମେଧ ଯଜ୍ଞେ ଗୃହ ଆସିବ ଜାତି ଗୃହକୁ ମିଳାଇ ଗୃହ ।



# ସେଦିନର ସ୍ମୃତି : କାଲିମାଟିର ଅନୁଭୂତି

ବିରୂପାକ୍ଷ ପାଢ଼ୀ

ସମସ୍ତ ଗଡ଼ିଗଲେ କିନ୍ତୁ ମଣିଷର ମନ ମଧ୍ୟରେ ମଧୁର ସ୍ମୃତି ଟିକକ ବସାବାନ୍ଧି ରହିଯାଏ । ସେହି ସ୍ମୃତି ପୁଣି ବେଳେ ବେଳେ ହୃଦୟରେ ସ୍ପନ୍ଦନ ଆଣେ । ପ୍ରାୟ ତେତିଶ ବର୍ଷ ତଳର ସେହିଭଳି ଏକ ଘଟଣା ମୋ ଜୀବନର ଏକ ଅଭୁଲା ଅମ୍ଳାନ ସ୍ମୃତି । ତାହା ହେଉଛି ଓଡ଼ିଶା ବାହାରେ ଥିବା ଖାଣ୍ଟି ଓଡ଼ିଆ ମାଟିରେ ଓଡ଼ିଆ ଭାଷା ଓ ସଂସ୍କୃତିର ପ୍ରଚାର ତଥା ପ୍ରସାର ଏବଂ ଶ୍ରୀବୃଦ୍ଧି ଘଟାଇବା ଉଦ୍ଦେଶ୍ୟରେ "ପ୍ରଗତି ଉତ୍କଳ ସଂଘ, ରାଉରକେଲା"ର ଆବିର୍ଭାବ ।

୧୯୫୫ ମସିହା ସେପ୍ଟେମ୍ବର ମାସ ୧୭ ତାରିଖ ଦିନ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଶହେ ଜଣ ଯୁବକ ଟାଟା (କାଲିମାଟି) ରେଳ ଷ୍ଟେସନଠାରୁ ପ୍ରାୟ ଛଅ କିଲୋମିଟର ଦୂରରେ ଥିବା ସୁନ୍ଦର ନଗରର ଏକ ବୃହତ ଦ୍ୱିତଳ ପ୍ରାସାଦରେ ଏକତ୍ରିତ ହେଲେ । ଏମାନଙ୍କୁ ନୂତନ ଭାବେ ସ୍ଥାପିତ ରାଉରକେଲା ଇସ୍ପାତ କାରଖାନା କର୍ତ୍ତୃପକ୍ଷ ପଠାଇଥିଲେ ଶିକ୍ଷାନବୀଶ ଭାବେ ଟାଟା ଲୌହ ଓ ଇସ୍ପାତ କାରଖାନାରେ ବୈଷୟିକ ତାଲିମ୍ ନେବାକୁ । ମନରେ ଉଚ୍ଚଆଶା, ଆକାଂକ୍ଷା ନେଇ ଉତ୍କଣ୍ଠାର ସହ ୧୯-୯-୫୫ଠାରୁ ଆରମ୍ଭ କଲେ ନିଜର ଶିକ୍ଷା ନବୀଶ ଜୀବନ ଦୀର୍ଘ ତିନି ବର୍ଷ ପାଇଁ । ତାପରେ ଆରମ୍ଭ ହେବ ବାଧ୍ୟବାଧକ ଓ ଧାରାବାହିକ ଶ୍ରମିକ ଜୀବନ ରାଉରକେଲା ଇସ୍ପାତ କାରଖାନାରେ କେଜାଣି କେତେ ଦିନ ପର୍ଯ୍ୟନ୍ତ ।

ଏହି ଶହେ ଜଣଙ୍କ ମଧ୍ୟରୁ ମୁଁ ନିଜେ ଥିଲି ଜଣେ । ତାଲିମ୍ ପ୍ରାପ୍ତି ସାଙ୍ଗକୁ ଅନ୍ୟ କେତେକ ଘଟଣା ଆମ୍ଭମାନଙ୍କ ମନରେ ଗଭୀର ଭାବେ ରେଖାଙ୍କିତ ହୋଇ ରହିଛି । ତନ୍ମଧ୍ୟରୁ ତତ୍କାଳୀନ ରାଜ୍ୟ ପୁନର୍ଗଠନ ସମିତି (State Reorganisation Committee) ଦ୍ୱାରା ସର୍ବଜନ ବିଦିତ ଖାଣ୍ଟି ଓଡ଼ିଆ ଅଞ୍ଚଳ ସରେଇକଳା, ଖରସୁଆଁ ତଥା ସିଂହଭୂମିକୁ ବିହାର ରାଜ୍ୟରେ ସାମିଲକରି ରଖିବା ଘଟଣାଟି ସର୍ବପ୍ରଧାନ । ଏ ଘଟଣା ଓଡ଼ିଶାର ଜନସାଧାରଣଙ୍କ ମନରେ ଯେତେ ଆଘାତ ଦେଇଥିଲା ତା ଅପେକ୍ଷା ବହୁ ଅଧିକ ପରିମାଣରେ ଆମ୍ଭମାନଙ୍କ ମନରେ ଆଘାତ ପହଞ୍ଚାଇଥିଲା । ସେତେବେଳକୁ ଆମ୍ଭେମାନେ ଜାମସେଦପୁରର ଆଖପାଖ ଅଞ୍ଚଳ, ଘାଟଶୀଳା,

ମୋଷାବଣି, ଗୁଣ୍ଡିବସା, ଚନ୍ଦ୍ରଧରପୁର ଇତ୍ୟାଦି ସ୍ଥାନକୁ ଯିବା ଆସିବା କରି ଉପଲବ୍ଧି କରି ପାରିଲୁଣି ଯେ ଏସବୁ ଅଞ୍ଚଳର ଭାଷା, ସଂସ୍କୃତି ତଥା ସାମାଜିକ ଜୀବନ ବିହାରର ଅନ୍ୟାନ୍ୟ ଅଞ୍ଚଳର ଭାଷା, ସଂସ୍କୃତି ଓ ସାମାଜିକ ଜୀବନ ସହିତ ଆଦୌ ସାମଞ୍ଜସ୍ୟ ନାହିଁ । ଭୌଗୋଳିକ ଅବସ୍ଥିତି ମଧ୍ୟ ସମ୍ପୂର୍ଣ୍ଣ ଭାବରେ ଭିନ୍ନ । ମୁଷ୍ଟିମେୟ କେତେ ଜଣ କୁଚକ୍ରୀ କେବଳ ନିଜ ନିଜର ରାଜନୈତିକ ଉଦ୍ଦେଶ୍ୟ ସାଧନ ନିମନ୍ତେ ଷଡଯନ୍ତ୍ର କରି ଏହା କରାଇଥିଲେ ।

ଉକ୍ତ ଘଟଣା ପରେ ଆମ୍ଭମାନଙ୍କ ଯୁବପ୍ରାଣରେ କ୍ରୋଧଭାବ ଜାଗ୍ରତ ହେଲା । ସମୟକ୍ରମେ ଏହି କ୍ରୋଧ ବିଦ୍ରୋହ ରୂପନେଲା ଏବଂ ଧୀରେ ଧୀରେ ଏହି ବିଦ୍ରୋହଭାବ ଓଡ଼ିଆ ଭାଷା ଓ ସଂସ୍କୃତିର ସୁରକ୍ଷା ନିମନ୍ତେ ଆଗ୍ରହୀ ହେବାକୁ ଲାଗିଲା । ଏ ମଧ୍ୟରେ ଆମ୍ଭମାନଙ୍କ ଭିତରୁ କେତେ ଜଣ ସହରର କେତେକ ଉତ୍ସାହୀ ଓଡ଼ିଆ ସାଂସ୍କୃତିକ ଓ ସାମାଜିକ କର୍ମୀଙ୍କ ସଂସ୍ପର୍ଶରେ ଆସି ଉତ୍କଳ ଏସୋସିଏସନ୍, ଗେଲମୁରି ଓଡ଼ିଆ ସଙ୍ଗୀତ ସମାଜ ପ୍ରଭୃତି ସାଂସ୍କୃତିକ ଅନୁଷ୍ଠାନକୁ ନିୟମିତ ରୂପେ ଯାତାୟାତ ଆରମ୍ଭ କରି ଦେଲୁ । ଅନୁଷ୍ଠାନର କର୍ମକର୍ତ୍ତା ଓ ବରିଷ୍ଠ ସଭ୍ୟମାନଙ୍କ ସୁଶୃଙ୍ଖଳିତ କାର୍ଯ୍ୟଧାରା, ଜାତିପ୍ରେମ, ଭାଷା ଓ ସଂସ୍କୃତିର ସୁରକ୍ଷାରେ ସେମାନଙ୍କ ନିଷ୍ଠା ତ୍ୟାଗ ମନୋବୃତ୍ତି ଆମ୍ଭମାନଙ୍କ ଆନ୍ଦୋଳିତ ମନକୁ ଶାନ୍ତ ଓ ଶୃଙ୍ଖଳିତ କରିବାରେ ଲାଗିଲା ସେମାନଙ୍କଠାରୁ ପ୍ରେରଣା ପାଇ ଆମ୍ଭେମାନେ ସାମାଜିକ ଓ ସାଂସ୍କୃତିକ ଭାବ ଧାରାରେ ଅନୁପ୍ରାଣିତ ହେଲୁ । ପୁଣି ତାଙ୍କର ସହାୟତାରେ ପ୍ରଥମେ ଗୋପବନ୍ଧୁ ଜୟନ୍ତୀ ଉପଲକ୍ଷେ ରେଲୱାଇ ପ୍ରେକ୍ଷାଳୟରେ "ଅଭିଯାନ" ନାଟକ ଉପସ୍ଥାପନ କଲୁ ୧୯୫୭ ମସିହା ସେପ୍ଟେମ୍ବର ମାସ ୯ ତାରିଖରେ । ତାହା ଦର୍ଶକମାନଙ୍କ ଦ୍ୱାରା ଆଦୃତ ହୋଇ-ଥିଲା । ହଷ୍ଟେଲ ପରିସରରେ ସଙ୍ଗୀତ ଆସରମାନ ଆୟୋଜନ କରି ଜାମସେଦପୁର ଓ ଆଖପାଖ ଗ୍ରାମର ଜନସାଧାରଣଙ୍କୁ ନିମନ୍ତ୍ରଣ କରିବାରେ ଲାଗିଲୁ । ଫୁଟ୍ବଲ ଟିମ୍ ଗଠନ କରି ସହରର ଟୁର୍ଣ୍ଣାମେଣ୍ଟ ଏପରିକି ରାଇରଙ୍ଗପୁର, ଗୁଣ୍ଡିବସା ଇତ୍ୟାଦି ସ୍ଥାନକୁ ଖେଳିବାକୁ ଯାଇ ବିଜୟୀ ହୋଇ ଆସିଲୁ । ଏ ଦିଗରେ ଉକ୍ତ ସାମାଜିକ କର୍ମୀ ଓ କେତେକ କ୍ରୀଡ଼ାପ୍ରେମୀମାନଙ୍କର ସାହାଯ୍ୟ ସହାନୁଭୂତି ଭୁଲି ହେବ ନାହିଁ ।

ଏହିପରି ଭାବରେ ଆମ୍ଭମାନଙ୍କ ମଧ୍ୟରୁ ଯେଉଁ କେତେ ଜଣ ସାଂସ୍କୃତିକ, କ୍ରୀଡ଼ା ଏବଂ ସାମାଜିକ କାର୍ଯ୍ୟରେ ମନୋନିବେଶ କଲୁ ସେମାନେ ନିଜ ନିଜ ଭିତରେ ଆଲୋଚନା କରି ମନସ୍ଥ କଲୁ ଯେ ଆମ୍ଭେମାନେ ରାଉରକେଲାରେ ପହଞ୍ଚିବା ପରେ ସେଠାରେ ଥିବା କୌଣସି ଏକ ଅନୁଷ୍ଠାନରେ ସଂଶ୍ଳିଷ୍ଟ ରହି ଓଡ଼ିଆ ଭାଷା ଏବଂ ସଂସ୍କୃତିର ପ୍ରଚୁର ତଥା ପ୍ରସାର ପାଇଁ କାର୍ଯ୍ୟ କରିବା । ଏହି ଆଲୋଚନା ପରେ ପରେ ଦିନେ ହଠାତ୍ ପ୍ରଧାନ ମନ୍ତ୍ରୀଙ୍କ ରାଉରକେଲା ପରିଦର୍ଶନ ଉପଲକ୍ଷେ ମୋତେ ଶିକ୍ଷା

କମ୍ପାଣଙ୍କର ପ୍ରତିନିଧିତ୍ୱ କରିବାକୁ ରାଉରକେଲା ଆସିବାକୁ କର୍ତ୍ତୃପକ୍ଷଙ୍କଠାରୁ ଆଦେଶ ମିଳିଲା । ଏହି ସୁଯୋଗରେ ଏଠାକୁ ଆସି ମୋର କେତେକ ବାଲ୍ୟବନ୍ଧୁ ସାଙ୍ଗରେ ଏଠାକାର ତତ୍କାଳୀନ ସାଂସ୍କୃତିକ ତଥା ସାମାଜିକ ଗତିବିଧି ସମ୍ପର୍କରେ ଆଲୋଚନା କରି ଅତ୍ୟନ୍ତ ନିରାଶ ହେଲି । ସାଧାରଣତଃ ଓଡ଼ିଆମାନଙ୍କୁ ନିଜର ନ୍ୟାଯ୍ୟ ସ୍ୱାର୍ଥ ହାସଲ କରିବାକୁ ଆପ୍ରାଣ ସଂଘର୍ଷ କରିବାକୁ ପଡ଼ୁଥାଏ । ତାହା ସାଙ୍ଗକୁ ହିନ୍ଦି ଓ ବଙ୍ଗଳା ଭାଷାର ବହୁଳ ପ୍ରଚଳନ ମୋ ମନକୁ ଦାରୁଣ ଆଘାତ ଦେଲା । ଅନୁସନ୍ଧାନ କରି ବୁଝିଲି ଯେ ସାଂସ୍କୃତିକ ଚେତନା ସମ୍ପନ୍ନ ବ୍ୟକ୍ତିଙ୍କ ଅଭାବ ନଥିଲେ ମଧ୍ୟ ଉପଯୁକ୍ତ ସମନ୍ୱୟ ଅଭାବରୁ ସର୍ବସମ୍ମତ ସାଂସ୍କୃତିକ ଅନୁଷ୍ଠାନଟିଏ ସ୍ଥାପିତ ହୋଇ ପାରିନାହିଁ । ଭଗ୍ନକାନ୍ତ ହୃଦୟରେ (ଟାଟା) କାଲିମାଟିକୁ ଫେରି ପ୍ରିୟବନ୍ଧୁ ବର୍ଗଙ୍କୁ ସକଳ ବିଷୟ ଜଣାଇଲି । ପୂର୍ବ ନିର୍ଦ୍ଧାରିତ କର୍ମସୂଚୀର ପରିସମାପ୍ତି ଘଟିଲା । ପୁଣି ଥରେ ମନସ୍ଥ କଲି, ରାଉରକେଲାକୁ ଯିବା ପରେ ଆମ୍ଭେମାନେ ନିଜେ ଏକ ସୁସଙ୍ଗଠିତ ସାଂସ୍କୃତିକ ଅନୁଷ୍ଠାନ ସ୍ଥାପନ କରି ନିଜକୁ ସାମାଜିକ କାର୍ଯ୍ୟରେ ନିୟୋଜିତ କରିବା ।

କିଛି ଦିନ ପରଠାରୁ ଆମ୍ଭମାନଙ୍କୁ ଟାଟା ଇସ୍ପାତ କାରଖାନାର କୋଡ଼ିଏ ଲକ୍ଷଟନ୍ ପରିଯୋଜନା (Twenty Million Tons Project)ରେ ଜର୍ମାନ୍ କାରିଗରଙ୍କୁ ଯନ୍ତ୍ର ସଂସ୍ଥାପନ କାର୍ଯ୍ୟରେ ସାହାଯ୍ୟ କରିବାକୁ ଆଦେଶ ମିଳିଲା । ପ୍ରକାଶଥାଉକି ଏହି କାର୍ଯ୍ୟ ନିମନ୍ତେ ଟାଟା କମ୍ପାନୀ କର୍ତ୍ତୃପକ୍ଷ ନିଜର କେତେ ଜଣ ବିଶ୍ୱସ୍ତ କର୍ମଚାରୀଙ୍କ ସାଙ୍ଗରେ କେବଳ ଆମ୍ଭମାନଙ୍କୁ (ଶହେ ଜଣ) ସ୍ୱତନ୍ତ୍ର ଭାବେ ମନୋନୀତ କରିଥିଲେ । ସେତେବେଳେ ରୋଲିଂ ମିଲସ୍‌ର ଯନ୍ତ୍ର ସଂସ୍ଥାପନ କାର୍ଯ୍ୟ ପୂର୍ଣ୍ଣ ଗତିରେ ଚାଲିଥାଏ । ଜର୍ମାନମାନଙ୍କ ସାଙ୍ଗରେ ରହି ଆମ୍ଭମାନଙ୍କୁ କଠିନ ପରିଶ୍ରମ କରିବାକୁ ପଡ଼ୁଥାଏ । ପରିଶ୍ରାନ୍ତ ଅବସ୍ଥାରେ ମଧ୍ୟ ମୋ ମନରେ ସେହି ଗୋଟିଏ ପ୍ରଶ୍ନ ବେଳେ ବେଳେ ଦେଖାଦିଏ । ଆମେତ ରାଉରକେଲାରେ ବିଭିନ୍ନ ସ୍ଥାନରେ ରହିବୁ, ବିଭିନ୍ନ ବିଭାଗରେ କାମ କରିବୁ, ପୁଣି ନିଜ ନିଜର ସମସ୍ୟା ରହିବ ତେବେ ସାଂସ୍କୃତିକ ଅନୁଷ୍ଠାନ ସ୍ଥାପିତ ହେବ କିପରି ?

୧୯୫୮ ମସିହାର ଜୁନ ମାସ ଶେଷ ବେଳକୁ ଦିନେ କାର୍ଯ୍ୟରତ ଥିବାବେଳେ ଉକ୍ତ ପ୍ରଶ୍ନର ଏକ ସମାଧାନ ମୋର ମନ ଭିତରେ ହଠାତ୍ ଆସି ଜୁଟିଲା । ସୁନ୍ଦରନଗର ହଷ୍ଟେଲରେ ଥାଇଁ ଥାଇଁ ଏକ ସାଂସ୍କୃତିକ ଅନୁଷ୍ଠାନ ସ୍ଥାପନ କରି ବର୍ତ୍ତମାନ ହେଉଥିବା ବିଭିନ୍ନ କାର୍ଯ୍ୟକ୍ରମ ସେଇ ଅନୁଷ୍ଠାନ ନାଁରେ କରିପାରିଲେ କ୍ଷତି କ'ଣ ? କ୍ଷଣେମାତ୍ର ସମୟ ନଷ୍ଟ ନକରି ଜର୍ମାନ କାରିଗରଙ୍କଠାରୁ ପନ୍ଦର ମିନିଟର ଅବସର ନେଇ ଅଳ୍ପ ଦୂରରେ କାମ କରୁଥିବା ବନ୍ଧୁ ସର୍ବଶ୍ରୀ ଶମ୍ଭୁଧର ମହାନ୍ତି, ବିଜୟ କୃଷ୍ଣ ମହାପାତ୍ର ଏବଂ

ଶ୍ୟାମଳେନ୍ଦୁ ଦାଶଙ୍କୁ କହିଲି । ଏକ କ୍ଷୁଦ୍ର ଆଲୋଚନା ପରେ ଏ ବିଷୟରେ ଅନ୍ୟ ବନ୍ଧୁମାନଙ୍କ ସାଙ୍ଗରେ ଆଲୋଚନା କରିବା ପାଇଁ ସ୍ଥିର କଲୁ । ଅନ୍ୟମାନଙ୍କ ମତାମତ ନେଇ ହଷ୍ଟେଲରେ ରବିବାର ଦିନ ଏକ ସଭା ଡ଼କାଗଲା । ସର୍ବସମ୍ମତିକ୍ରମେ ଏକ ଅନୁଷ୍ଠାନ ସ୍ଥାପନ କରିବାକୁ ପ୍ରସ୍ତାବ ଗୃହୀତ ହେଲା । ପରେ ଅନ୍ୟ ଏକ ସଭାରେ ଏ ଅନୁଷ୍ଠାନର ନାମ "ପ୍ରଗତି ଉତ୍କଳ ସଂଘ" ରୂପରେ ରଖା ଯିବାକୁ ବନ୍ଧୁ ଶ୍ରୀ ଆର୍ତ୍ତତ୍ରାଣ ମହାନ୍ତିଙ୍କ ପ୍ରସ୍ତାବ ଗୃହୀତ ହେଲା । ଆସନ୍ତା ସ୍ୱାଧୀନତା ଦିବସ ଅଗଷ୍ଟ ୧୫ ତାରିଖରେ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିବାକୁ ସ୍ଥିର କରାଗଲା ।

ପ୍ରଥମ ପଦକ୍ଷେପ ସ୍ୱରୂପ ଏକ ପାଠାଗାର (Library) ଆରମ୍ଭ କରି ଉତ୍ସାହୀ ବନ୍ଧୁମାନଙ୍କ ଦାନରେ ଏହାର କଳେବର ବୃଦ୍ଧି କରାଗଲା । ବହୁ ବନ୍ଧୁ ନୂତନ ପୁସ୍ତକ କିଣି ଦାନ କରିଥିଲେ । ବନ୍ଧୁ ଶ୍ରୀ ଅନ୍ନଦା ଶଙ୍କର ଦାସ ଏ ଦିଗରେ ଅଗ୍ରଣୀ ଥିବାର ମୋର ଠିକ୍ ମନେଅଛି । କଟକର ପୁସ୍ତକ ପ୍ରକାଶନ ସଂସ୍ଥା ପ୍ରଗତି ସାହିତ୍ୟ ମନ୍ଦିର ସତର ଖଣ୍ଡ ପୁସ୍ତକ ଅର୍ଦ୍ଧେକ ମୂଲ୍ୟରେ ସଂଘକୁ ଦେଇଥିଲେ ମୁଁ ମୋର ପିତା ଶ୍ରୀ ବାମଦେବ ପାଢ଼ୀଙ୍କୁ ପତ୍ରଦ୍ୱାରା ଅନୁରୋଧ କରିବାରୁ ସେ ସମ୍ବଲପୁରରୁ ୧୨୦୦ ରସିଦ ଓ ୫୦୦ ସଭ୍ୟଫର୍ମ ଛପାଇ ଅନ୍ୟ କେତେକ ଅଫିସ ସାମଗ୍ରୀ ପଠାଇଲେ । ଟାଟା କାରଖାନାରେ କାମ କରୁଥିବା ବାଗଲପୁର ନିବାସୀ ଶ୍ରୀ ନନ୍ଦକିଶୋର ମହାନ୍ତି ସଂଘର ନାମାଙ୍କିତ ଚିଠି କାଗଜ (Writing Pad) ୫୦୦ ଖଣ୍ଡ ଦାନକରି ଆମ୍ଭମାନଙ୍କୁ ଉତ୍ସାହିତ କରିଥିଲେ । ବିଷ୍ଟୁପୁର ମାର୍କେଟର 'ଉତ୍କଳ ବାଣୀ ଭଣ୍ଡାର'ରୁ ରବର ଷ୍ଟାମ୍ପମାନ ତିଆରି ହୋଇ ଆସିଲା । ପୁସ୍ତକ ଏବଂ ଅନ୍ୟାନ୍ୟ ସାମଗ୍ରୀ ରଖିବା ପାଇଁ ଏକ ବଡ଼ କଳା ଲୁହା ବାକ୍ସ କିଣା ହୋଇ ଆସିଲା ।

ଅଗଷ୍ଟ ୧୨ ତାରିଖ ସଭାରେ ୩୭ ଜଣ ବନ୍ଧୁ ସଭ୍ୟ ଶ୍ରେଣୀଭୁକ୍ତ ହେଲେ । ସୁନ୍ଦର ନଗର ହଷ୍ଟେଲ ସାମନାରେ ଜାତୀୟ ପତାକା ଉତ୍ତୋଳନ ପରେ ସଂଘର ସାଧାରଣ ସଭାରେ ନିମ୍ନଭାବେ ପ୍ରଥମ ପରିଚାଳନା ସମିତିର ସଭ୍ୟମାନେ ନିର୍ବାଚିତ ହେଲେ—
ସମ୍ପାଦକ - ଶ୍ରୀ ରାଘବ ଚରଣ ମହାନ୍ତି, କୋଷାଧ୍ୟକ୍ଷ - ଶ୍ରୀ ଯଶୋଦା ନନ୍ଦନ ସିଂହ, ଲାଇବ୍ରେରିଆନ୍ - ଶ୍ରୀ ବିରୂପାକ୍ଷ ପାଢ଼ୀ, ଆସିଷ୍ଟାଣ୍ଟ ଲାଇବ୍ରେରିଆନ୍ - ଶ୍ରୀ କାହ୍ନୁ ଚରଣ ପଟ୍ଟନାୟକ ।

ପାଠାଗାରର ପୁସ୍ତକ ଗୁଡ଼ିକ ନଷ୍ଟ ହେଉଥିବାର ଲକ୍ଷ୍ୟ କରି ଶ୍ରୀ ବୃନ୍ଦାବନ ନାୟକଙ୍କ ତତ୍ତ୍ୱାବଧାନରେ ସର୍ବଶ୍ରୀ ଜଗନ୍ନାଥ ମିଶ୍ର, ବିଶ୍ୱନାଥ ଗିରିବଡ଼ୁ, ତରଣୀସେନ ସାହୁ, ବିଦ୍ୟାଧର ଜେନା ଓ କାହ୍ନୁଚରଣ ପଟ୍ଟନାୟକ ଅନେକ ଗୁଡ଼ିଏ ପୁସ୍ତକ ବନ୍ଧେଇ କରିଥିଲେ । ସଭ୍ୟମାନଙ୍କ ଦ୍ୱାରା "ଚକ୍ରୀ" ନାଟକ ଅଭିନୀତ ହୋଇ ଦର୍ଶକଙ୍କ ଦ୍ୱାରା ଆଦୃତ ହୋଇଥିଲା ।

୧୯୫୯ ମାର୍ଚ୍ଚ ୧୯ ତାରିଖରେ ଆମ୍ଭମାନଙ୍କ ସାଙ୍ଗରେ "ପ୍ରଗତି ଉତ୍କଳ ସଂଘ" କଲା ଲୁହା ବାକ୍ସରେ ପଶି ରେଲ ଗାଡ଼ିରେ ଚଢ଼ି ରାଉରକେଲାରେ ପହଞ୍ଚିଲା କିନ୍ତୁ ଜୁନମାସ ଶେଷଭାଗ ପର୍ଯ୍ୟନ୍ତ ସଂଘ ଲୁହା ବାକ୍ସରେ ବନ୍ଦ ହୋଇ ରହିଲା । ଏହାପରେ ବାକ୍ସରୁ ବାହାରି ତାହାର କଳେବର ବୃଦ୍ଧି କରିବାରେ ଲାଗିଛି ଆଜି ପର୍ଯ୍ୟନ୍ତ । ଜୁଲାଇ ମାସରେ ଏକ ଜରୁରୀ ସାଧାରଣ ସଭା ଡ଼କାଯାଇ ସଂଘର ଭବିଷ୍ୟତ କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରାଗଲା । ସଭାପତି, ଉପସଭାପତିଙ୍କୁ ନେଇ ଏକ ପୂର୍ଣ୍ଣାଙ୍ଗ ପରିଚାଳନା ସମିତି ଗଠନ କରି ସଂଘକୁ ଆଗେଇ ନେବାକୁ ସ୍ଥିର କରାଗଲା । ଶ୍ରୀ ଯଶୋଦାନନ୍ଦନ ସିଂହଙ୍କ ପୂର୍ବ ପରିଚିତ ସାଂସ୍କୃତିକ ଚେତନଶୀଳ ଜର୍ମାନୀ ଫେରନ୍ତା ଇଞ୍ଜିନିୟର ଶ୍ରୀ ନରେଶ ଚନ୍ଦ୍ର ନାୟକଙ୍କୁ ତାଙ୍କର ବାସଭବନରେ ସଂଘର ଏକ ପ୍ରତିନିଧି ଦଳ ଶ୍ରୀ ସିଂହଙ୍କ ଅଧିନାୟକତ୍ୱରେ ଯାଇ ସାକ୍ଷାତ କରି ସବୁ ବିଷୟ ଆଲୋଚନା କଲେ । ସେ ମହାଶୟ ସଭାପତି ହେବାକୁ ସମ୍ମତ ହୋଇ ସଭ୍ୟ ହେଲେ । ତାଙ୍କର କଥା ଅନୁସାରେ ଅନ୍ୟଜଣେ ଜର୍ମାନୀ ଫେରନ୍ତା ଇଞ୍ଜିନିୟର ବିଶିଷ୍ଟ କଳାପ୍ରେମୀ ଶ୍ରୀ ପ୍ରଶାନ୍ତ କୁମାର ରଥଙ୍କୁ ସାକ୍ଷାତ କରିବାରୁ ସେ ମହାଶୟ ମଧ୍ୟ ଉପସଭାପତି ହେବାକୁ ସମ୍ମତ ହେଲେ ।

ସଂଘର ପ୍ରଥମ ବାର୍ଷିକ ସାଧାରଣ ବୈଠକରେ ନୂତନ ପୂର୍ଣ୍ଣାବୟବ ପରିଚାଳନା ସମିତିକୁ ନିମ୍ନ ସଭ୍ୟମାନଙ୍କୁ ନିର୍ବାଚିତ କରାଗଲା—ପ୍ରସ୍ତାବକ୍ରମେ ଶ୍ରୀ ପ୍ରଶାନ୍ତ କୁମାର ରଥ ଉପସଭାପତିଙ୍କ ଅଧ୍ୟକ୍ଷତାରେ ସମ୍ବିଧାନ ପ୍ରଣୟନ ଓ ନାଟକ ମଞ୍ଚସ୍ଥ କରିବାକୁ ଦୁଇଟି ଉପସମିତି ଗଠନ କରାଯାଇଥିଲା । ସମ୍ବିଧାନ ପ୍ରଣୟନ ଉପସମିତି ଦ୍ୱାରା ପ୍ରଣୀତ ଏକ ସର୍ବାଙ୍ଗ ସୁନ୍ଦର ସମ୍ବିଧାନ ଏକ ଜରୁରୀ ସାଧାରଣ ବୈଠକରେ ୪।୧୧।୫୯ ଦିନ ସନ୍ଧ୍ୟାରେ ସର୍ବସମ୍ମତିକ୍ରମେ ଗୃହୀତ ହୋଇ ସେହି ଦିନଠାରୁ ବଳବତ୍ତର ହେଲା । ସଭ୍ୟମାନଙ୍କ ସକ୍ରିୟ ସହଯୋଗରେ ନୃତ୍ୟାଚାର୍ଯ୍ୟ ଶ୍ରୀ ବିରଞ୍ଚି ନାରାୟଣ ରାଉତରାୟଙ୍କ ନିର୍ଦ୍ଦେଶନା ଓ ଶ୍ରୀ ଦୁର୍ଗା ପ୍ରସାଦ ଦାସଙ୍କ ପରିଚାଳନାରେ ୧୮ ନମ୍ବରସ୍ଥିତ ଇସ୍ପାତ ବିଦ୍ୟାଳୟର ନବନିର୍ମିତ ପ୍ରେକ୍ଷାଳୟରେ ସର୍ବ ପ୍ରଥମେ "ସ୍ୱାମୀ ସ୍ତ୍ରୀ" ନାଟକ ଗଭୀର ଆଗ୍ରହ ଓ ଉଦ୍ଦୀପନାର ସହ 'ସଂଘ' ଦ୍ୱାରା ମଞ୍ଚସ୍ଥ କରାଗଲା । ଏଥିପାଇଁ ପୃଷ୍ଠପୋଷକତା କରି ଇସ୍ପାତ କାରଖାନାର ତତ୍କାଳୀନ ଡ଼େପୁଟି ଜେନେରାଲ ମେନେଜର ଶ୍ରୀ ଅମର ସିଂହ ଓ ମୁଖ୍ୟ ସ୍ୱାସ୍ଥ୍ୟ ଅଧିକାରୀ ଡ଼କ୍ଟର ସୁକୁମାର ଦାସ ମଝିରେ ମଝିରେ ସଭାପତି ଓ

ଉପସଭାପତିଙ୍କ ସଙ୍ଗେ ପୁର୍ବାଭିନୟ ସ୍ଥଳକୁ ଆସି ସଭ୍ୟମାନଙ୍କୁ ଅତ୍ୟନ୍ତ ଉତ୍ସାହିତ କରିଥିଲେ । ଖୁବ୍ ସଫଳତାର ସହ ତା ୩୦-୧୨-୫୯ ଦିନ ସନ୍ଧ୍ୟାରେ ନାଟକ ମଞ୍ଚସ୍ଥ ହେବା ପରେ ଅନେକ ଅନୁଷ୍ଠାନ ତଥା ବ୍ୟକ୍ତି ବିଶେଷଙ୍କ ପାଖରୁ ପ୍ରଶଂସାପତ୍ରମାନ ଆସି ପହଞ୍ଚି ସଭ୍ୟମାନଙ୍କୁ ଅଭିଭୂତ କରି ପକାଇଥିଲା । ଏ ନାଟକରେ ଖର୍ଚ୍ଚ ହୋଇଥିଲା ୫୮୩୬-୯୧ ନୂଆ ପଇସା । କ୍ୟାରମ, ଟେବୋଲ୍‌ଟେନିସ, ବ୍ୟାଡ଼ମିଣ୍ଟନ ଓ ଭଲିବଲ୍ ଇତ୍ୟାଦି କିଣାଯାଇ ସଭ୍ୟମାନଙ୍କୁ ଖେଳ କସରତ୍ ପାଇ ଉତ୍ସାହିତ କରିଯାଇଥିଲା । ସମ୍ବିଧାନ ଅନୁସାରେ ଶ୍ରୀ ଲଲି ବିହାରୀ ହୋତାଙ୍କୁ (ଅଣ-ସଭ୍ୟ) ସଂଘର ପ୍ରଥମ ହିସାବ ସମୀକ୍ଷକ ଭାବେ ଗ୍ରହଣ କରିଯାଇଥିଲା । ଅନବରତ ଚେଷ୍ଟାରେ ୧୯୬୪ ମସିହା ଜାନୁୟାରୀ ମାସରେ ଆଇନ ଅନୁଯାୟୀ ରେଜିଷ୍ଟ୍ରିଭୁକ୍ତ ହେଲା ।

ସଂଘ ଗୃହରକେଲା ଆସିବା ପରେ ନିମ୍ନଲିଖିତ ଘରମାନଙ୍କରେ ରହି ନିଜର କାର୍ଯ୍ୟ ସମ୍ପାଦନ କରିଅଛି ।

୧) ୧୯୫୯ ଜୁନମାସରୁ ୧୯୬୦ ଡ଼ିସେମ୍ବର ପର୍ଯ୍ୟନ୍ତ ଶ୍ରୀ ରାଘବ ଚରଣ ମହାନ୍ତି ଶ୍ରୀ ଯଶୋଦା ନନ୍ଦନ ସିଂହଙ୍କ ଘର ନଂ ସି/୭୯, ସେକ୍ଟର-୧୭ ।

୨) ୧୯୬୦ ଡ଼ିସେମ୍ବରଠାରୁ ୧୯୬୩ ଜୁନ ମାସ ପର୍ଯ୍ୟନ୍ତ ଶ୍ରୀ ବିଦ୍ୟାଧର ଜେନାଙ୍କର ସି/୧୦୨, ସେକ୍ଟର-୭, ଘରେ

୩) ୧୯୬୩ ଜୁନ୍ ମାସରୁ ଘର ନଂ ସି/୯୦, ସେକ୍ଟର ୭ଠାରେ ଭଡ଼ାରେ ୧୯୬୭ ଏପ୍ରିଲ ମାସ ପର୍ଯ୍ୟନ୍ତ ।

୪) ୧୯୬୭ ଏପ୍ରିଲରୁ ୧୯୬୮ ଫେବୃୟାରୀ ପର୍ଯ୍ୟନ୍ତ ଘର ନଂ ଏ/୧୧, ସେକ୍ଟର-୧୭ ଠାରେ ଇସ୍ପାତ କାରଖାନା କର୍ତ୍ତୃପକ୍ଷଙ୍କ ପ୍ରଦତ୍ତ ଘରେ ।

୫) ୧୯୬୮ ଫେବୃୟାରୀଠାରୁ ଆଜି ପର୍ଯ୍ୟନ୍ତ ଇସ୍ପାତ କାରଖାନା କର୍ତ୍ତୃପକ୍ଷଙ୍କ ପ୍ରଦତ୍ତ ଘର ନଂ ବି/୯, ସେକ୍ଟର-୭ଠାରେ ରହିଅଛି ।

କାଳକ୍ରମେ ସଂଘର ଜନପ୍ରିୟ କାର୍ଯ୍ୟକ୍ରମ ଗୁଡ଼ିକ ରାଉରକେଲାର ସଂସ୍କୃତି ପ୍ରେମୀ ଉତ୍ସାହୀ କୁଶଳୀ ସଙ୍ଗଠକମାନଙ୍କୁ ବିଶେଷଭାବେ ଆକୃଷ୍ଟ କଲା । ସଂଘର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସାଧନ ନିମନ୍ତେ ନିଜ ନିଜର ସ୍ୱାର୍ଥ ତ୍ୟାଗ ପୂର୍ବକ ସଭାପତି ଶ୍ରୀ ନରେଶ

ଚନ୍ଦ୍ର ନାୟକଙ୍କ ନିର୍ବିବାଦ ବ୍ୟକ୍ତିତ୍ୱ, ବଳିଷ୍ଠ ନେତୃତ୍ୱ, ମହତ ଉପଦେଶ ତଥା ସୁଦକ୍ଷ ପରିଚାଳନାରେ ସୁଶୃଙ୍ଖଳିତଭାବେ ସଭ୍ୟବୃନ୍ଦ ଅଦମ୍ୟ ଉତ୍ସାହରେ ଲାଗିପଡ଼ିଲେ । ସଂଘର ପରିସର ରାଉରକେଲାରୁ ବୃଦ୍ଧି ପାଇ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳକୁ ପରିବ୍ୟାପ୍ତ ହେଲା । ବର୍ତ୍ତମାନ "ପ୍ରଗତି ଉତ୍କଳ ସଂଘ" ଓଡ଼ିଶାର ବୁଦ୍ଧିଜୀବୀଙ୍କ ନିକଟରେ ତଥା ସାଂସ୍କୃତିକ କ୍ଷେତ୍ରରେ ନିଜକୁ ଏକ ଅଗ୍ରଗଣ୍ୟ ଅନୁଷ୍ଠାନ ରୂପେ ପ୍ରତିଷ୍ଠିତ କରି ପାରିଛି ।

କାଳିମାଟିରେ, ସୁନ୍ଦର ନଗରର ଶିକ୍ଷାନବୀଶ ଛାତ୍ରାବାସରେ ସେଦିନର ତରୁଣ ହୃଦୟରେ ଜଳି ଉଠିଥିବା ସେହି ଜାତୀୟତାର ଅଗ୍ନିସ୍ଫୁଲିଙ୍ଗ ନିସ୍ୱାର୍ଥ ଆତ୍ମତ୍ୟାଗ, ଅଫୁରନ୍ତ କର୍ମପ୍ରବଣତା, ଅଦମ୍ୟ ଉତ୍ସାହ, ନିରବଚ୍ଛିନ୍ନ ପ୍ରଚେଷ୍ଟା ତଥା ମହନଶୀଳତାର ଘୃତାହୁତିରେ ଆଜି ପ୍ରଜ୍ଜ୍ୱଳିତ ବହ୍ନିଶିଖାରେ ପରିଣତ ହୋଇ ସର୍ବଭାରତୀୟ ସଂସ୍କୃତିର ମିଳନପୀଠ ଶିଳ୍ପ ନଗରୀ ରାଉରକେଲାର ନାଗରିକମାନଙ୍କ ମଧ୍ୟରେ ସାଂସ୍କୃତିକ ଆଦାନ ପ୍ରଦାନ ତଥା ଭାତୃଭାବର ଅଭିବୃଦ୍ଧି ସାଧନ ତଥା ଓଡ଼ିଶାର ସାହିତ୍ୟ, ସଂସ୍କୃତି ଓ କଳାର ପରିପ୍ରସାର କରିବା ଦିଗରେ ଯାହା କିଛି ପଥପ୍ରଦର୍ଶନ କରିପାରିଛି ତାହାହିଁ ସେମାନଙ୍କ ସ୍ୱପ୍ନର ସାର୍ଥକତା । କାଳିମାଟିର ସେହି ଅନୁଭୂତି ଆଜି ମଧ୍ୟ ସେମାନଙ୍କ ହୃଦୟରେ ଅମ୍ଳାନ ମଧୁର ସ୍ମୃତିରୂପେ ତାଙ୍କର ଶାନ୍ତ ହୃଦୟରେ ସ୍ପନ୍ଦନ ଆଣେ ।

ଆହା, କି ମଧୁର ସ୍ମୃତି ସତେ !



# --ଆମର ଉତ୍କଳ ଦିବସ--

**ସତ୍ୟନାରାୟଣ ମହାନ୍ତି**

୧୯୪୮ ମସିହା ଏପ୍ରିଲ ପହିଲା । ମୁଁ ସେତେବେଳେ କଟକର ପ୍ୟାରୀମୋହନ ଏକାଡେମୀରେ ପଢୁଥାଏ । ମୋର ବୟସ ୯ ବର୍ଷ ଚାଲୁଥାଏ । ମୋର ସେଦିନର ଅନୁଭୂତି ବର୍ଣ୍ଣନା କରୁଛି । ଆମ ବିଦ୍ୟାଳୟର ପ୍ରତିଷ୍ଠାତା ସ୍ୱର୍ଗତ ପ୍ୟାରୀମୋହନ ଆଚାର୍ଯ୍ୟ ଜଣେ ଜାତୀୟତାବାଦୀ ନେତା ଥିଲେ । ତା'ର ପ୍ରଭାବ ବୋଧହୁଏ ବିଦ୍ୟାଳୟ ଉପରେ ପଡ଼ିଥିଲା । ରାୟବାହାଦୁର ଭିକାରୀ ଚରଣ ପଟ୍ଟନାୟକଙ୍କ ଅଭଙ୍ଗା କଣ୍ଢେଇ କାରଖାନାରେ ତିଆରି ଉତ୍କଳ ମାତାର ଗୋଟେ ଅଭଙ୍ଗା ମାଷ୍ଟର ମାନଚନ୍ଦ୍ର ପ୍ରଧାନ ଶିକ୍ଷକଙ୍କ କାର୍ଯ୍ୟାଳୟରୁ ବିଦ୍ୟାଳୟ ପ୍ରାଙ୍ଗଣକୁ ଅଣାଗଲା । ଆମେ ସବୁ ଛାତ୍ରଛାତ୍ରୀ ଧାଡ଼ିବାନ୍ଧି ବାହାରକୁ ଆସିଲୁ । ଶିକ୍ଷକମାନେ ମଧ୍ୟ ଉପସ୍ଥିତ ହେଲେ । ପ୍ରଧାନ ଶିକ୍ଷକ ସ୍ୱତନ୍ତ୍ର ଉତ୍କଳ ଦିବସର ତାତ୍ପର୍ଯ୍ୟ ବିଷୟରେ ବୁଝାଇଥିଲେ । ଏଥିପାଇଁ ଉତ୍କଳ ଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ, କର୍ମବୀର ଗୌରୀଶଙ୍କର, ବ୍ୟାସକବି ଫକୀରମୋହନ ଓ କବିବର ରାଧାନାଥ ରାୟ ପ୍ରଭୃତି ଯୁଗଜନ୍ମା ପୁରୁଷମାନଙ୍କ ଅବଦାନ ବିଷୟରେ ଦୁଇପଦ କହିଥିଲେ । ତାପରେ ଉତ୍କଳ ମାତାର ବନ୍ଦନା ପରେ ବିଦ୍ୟାଳୟ ଛୁଟି ହୋଇ ଯାଇଥିଲା । ସେତେବେଳେ ଅନ୍ତତଃ ପ୍ରତିବର୍ଷ ଆମ ବିଦ୍ୟାଳୟରେ ଉତ୍କଳ ଦିବସ ପାଳିତ ହେଉଥିବାର ମୁଁ ଆଠ ବର୍ଷକାଳ ଦେଖିଥିଲି । ମୋ ମନରେ ପ୍ରଶ୍ନ ଉଠିଥିଲା ଏହା ବଡ଼ ଆକାରରେ ସାରା ଓଡ଼ିଶାରେ ପାଳନ କରାଯାଉ ନାହିଁ କାହିଁକି ? ପ୍ରଶ୍ନବାଚୀ ପରି ବହୁଦିନ ମନ ଭିତରେ ଗୁଞ୍ଜରି ପୁଣି ମିଳାଇ ଯାଇଛି ।

ପୁଣି ଏହା ମନକୁ ଆସେ ୧୯୬୮ ମସିହା ପ୍ରାରମ୍ଭରେ । ଜାନୁୟାରୀ ୧୧ ତାରିଖ "ପ୍ରଗତି ଉତ୍କଳ ସଂଘ"ର କାର୍ଯ୍ୟକାରୀ ସମିତି ବୈଠକ ବସିଥାଏ । ଶ୍ରୀଯୁକ୍ତ କରଣ ଚନ୍ଦ୍ର ଦାସଙ୍କ ସଭାପତିତ୍ୱରେ । ମୁଁ ଉତ୍କଳ ଦିବସ ଓ ମଧୁସୂଦନ ଜୟନ୍ତୀ ପାଳନ ପାଇଁ ପ୍ରସ୍ତାବ ଦେଇଥିଲି । ଏହା ଉପରେ ବିସ୍ତୃତ ଆଲୋଚନା ପରେ ସାଧାରଣସଭା ଡାକି ଶୀଘ୍ର ନିଷ୍ପତ୍ତି ନେବାପାଇଁ ସ୍ଥିର କରାଗଲା । ସେତେବେଳେ ସଭାପତି ଶ୍ରୀଯୁକ୍ତ ନରେଶ ଚନ୍ଦ୍ର ନାୟକ ଅନୁପସ୍ଥିତ ଥିଲେ । ତେଣୁ ଉପସଭାପତି ଶ୍ରୀଯୁକ୍ତ ପ୍ରଶାନ୍ତ କୁମାର ରଥଙ୍କ ଅଧ୍ୟକ୍ଷତାରେ ୨୭-୧-୬୮ରେ ସାଧାରଣସଭା ବସେ । ଉତ୍କଳ ଦିବସ ପାଳନ ଉପରେ ମୋର ମତାମତ ଆଲୋଚନା ହୁଏ । ମଧୁବାବୁଙ୍କୁ ବାଦଦେଇ

ଉତ୍କଳ ଦିବସ ପାଳନର କିଛି ମାନେ ହୁଏନା । ତେଣୁ ସେଥିପାଇଁ ଏପ୍ରିଲ ପହିଲା ଦିନ "ଉତ୍କଳ ଦିବସ ଓ ମଧୁସୂଦନ ଜୟନ୍ତୀ" ନାମରେ ପାଳନ କରିବା ପାଇଁ ବହୁ ସଭ୍ୟ ମତଦେଲେ । ତେଣୁ ଏହି ଉତ୍ସବ ପାଳନ କରିବାକୁ ସେଦିନ ୧୭ ନମ୍ବର ସେକ୍ଟରସ୍ଥିତ ଏ/୧୧ ନମ୍ବର କ୍ୱାଟରରେ ଏହି ମୂଲ୍ୟବାନ ପ୍ରସ୍ତାବ ସର୍ବସମ୍ମତ ନିଷ୍ପତ୍ତି ନିଆଗଲା ।

ପ୍ରଥମ ବର୍ଷ ଉତ୍ସବ ୭ ନମ୍ବର ସେକ୍ଟର କମ୍ୟୁନିଟି ସେଣ୍ଟରରେ ପାଳନ କରିବା ପାଇଁ ସ୍ଥିର କରାଯାଇଥିଲା । ଏଥର ଏକ ଦ୍ୱିଭାଷୀ (ଓଡ଼ିଆ ଓ ଇଂରାଜୀ ଭାଷାରେ) ସ୍ମରଣିକା ପ୍ରକାଶ କରିବାକୁ ସ୍ଥିର କରାଗଲା । ଏହା ଉତ୍କଳ ଗୌରବ ମଧୁସୂଦନଙ୍କର ଜୀବନ ସମ୍ବନ୍ଧୀୟ ତଥ୍ୟ ତଥା ଓଡ଼ିଶାର ସାମାଜିକ, ଅର୍ଥନୈତିକ, ଐତିହାସିକ, ନୃତ୍ୟ, ଚିତ୍ରକଳା ଓ ସଂସ୍କୃତିକୁ ଭିତ୍ତିକରି ପ୍ରକାଶିତ ହେବ । ଏହାର ସମ୍ପାଦନା ଭାର ନେଇଥିଲେ ସୁନାମଧନ୍ୟ ଐତିହାସିକ ଡଃ ନବୀନ କୁମାର ସାହୁ । ତାଙ୍କୁ ସହଯୋଗ କରୁଥିଲେ ଅଧ୍ୟାପକ ପୂର୍ଣ୍ଣଚନ୍ଦ୍ର ମହାପାତ୍ର ।

ଜାନୁୟାରୀ ଶେଷ ସପ୍ତାହରୁ ଆମର ଅଭିଯାନ ଆରମ୍ଭ ହୁଏ । ଶ୍ରୀ ବିରୂପାକ୍ଷ ପାଢ଼ୀ, ଶ୍ରୀ ଶରତ ଚନ୍ଦ୍ର ମିଶ୍ର, ଶ୍ରୀ ରାଧାନାଥ ରାଉତ ଓ ମୁଁ ପ୍ରଥମ ପର୍ଯ୍ୟାୟରେ ରାଉରକେଲାର ସମସ୍ତ ଓଡ଼ିଆ ଅଫିସରମାନଙ୍କ ଘରକୁ ଘର ବୁଲି ୫ ଟଙ୍କା ବା ଉର୍ଦ୍ଧ୍ୱ କରି ଆଦାୟ କଲୁ । ଆମକୁ ଅନ୍ୟ ଯେଉଁମାନେ ଏ କାମରେ ସାହାଯ୍ୟ କରୁଥିଲେ ସବୁତ ମନେ ନାହିଁ । ତେବେ ସେମାନଙ୍କ ମଧ୍ୟରେ ସେ ବର୍ଷର ସାଧାରଣ ସମ୍ପାଦକ ଶ୍ରୀ ରାମଚନ୍ଦ୍ର ପ୍ରଧାନ, ଶ୍ରୀ ହରିହର ମହାପାତ୍ର, ଶ୍ରୀ ବୃନ୍ଦାବନ ନାୟକ, ଶ୍ରୀ ରାଘବ ଚରଣ ମହାନ୍ତି, ଶ୍ରୀ ତାରିଣୀସେନ ସାହୁ, ଶ୍ରୀ କାହ୍ନୁ ଚରଣ ପଟ୍ଟନାୟକ, ଶ୍ରୀ ଗଜେନ୍ଦ୍ର ପ୍ରସାଦ ତ୍ରିପାଠୀ, ଶ୍ରୀ ବିଦ୍ୟାଧର ଜେନା, ଶ୍ରୀ ଶଚୀନ୍ଦ୍ର ନାଥ ପଣ୍ଡ, ଶ୍ରୀ ସତ୍ୟନାରାୟଣ ମହାନ୍ତି (ଗାନ୍ଧିବାବୁ), ଶ୍ରୀ କିରଣ ଚନ୍ଦ୍ର ଦାସ, ଶ୍ରୀ ବାମନ ଚରଣ ତ୍ରିପାଠୀ, ଶ୍ରୀ ବିଶ୍ୱନାଥ ଶତପଥୀ, ଶ୍ରୀ ଆର୍ତ୍ତତ୍ରାଣ ମହାନ୍ତି, ଶ୍ରୀ ବିଭୂତି ଭୂଷଣ ରାୟ, ଶ୍ରୀ ଦିବାକର ମହାନ୍ତି, ଶ୍ରୀ କ୍ଷେତ୍ରବାସୀ ଜେନା, ଶ୍ରୀ ଭବାନୀ ଶଙ୍କର ମିଶ୍ର, ଶ୍ରୀ ନାରାୟଣ ପାଣିଗ୍ରାହୀ, ଶ୍ରୀ ବିଶ୍ୱନାଥ ଗରାବଡ଼୍, ଶ୍ରୀ ମହେଶ୍ୱର ପଣ୍ଡା, ଶ୍ରୀ ଶରତ ଚନ୍ଦ୍ର ମହାନ୍ତି, ଶ୍ରୀ ଦଣ୍ଡପାଣି ଚଉଧୁରୀ ଏବଂ ଅନ୍ୟାନ୍ୟ ଅନେକ ସଭ୍ୟ । ଏହି ଘର ଘର ବୁଲିବାର ଦୁଇଟି ମୁଖ୍ୟ ଉଦ୍ଦେଶ୍ୟ ଥିଲା । ପ୍ରଥମତଃ ପୁଞ୍ଜି ସଂଗ୍ରହ ଦ୍ୱିତୀୟରେ ଉତ୍ସବ ପାଳନର ବହୁଳ ପ୍ରଚାର ଏବଂ ସମସ୍ତଙ୍କର ସଦିଚ୍ଛା । ଏହା ବ୍ୟତୀତ ଆମେ ସେକ୍ଟରର ବିଭିନ୍ନ ବଜାର ଓ କାରଖାନାର ବିଭିନ୍ନ ବିଭାଗରୁ ଏବଂ ବିଜ୍ଞାପନ ଦାତା ମାନଙ୍କଠାରୁ ମଧ୍ୟ ଚାନ୍ଦା ସଂଗ୍ରହ କରିଥିଲୁ । ବିଜ୍ଞାପନ ସଂଗ୍ରହ ପାଇଁ ଆମକୁ ପ୍ରଥମ କରି ଶ୍ରୀଯୁକ୍ତ ଦେବେନ୍ଦ୍ର କୁମାର ସାବତ ବହୁ ସାହାଯ୍ୟ କରିଥିଲେ ।

ଆମର ପ୍ରଥମ ସ୍ମାରକୀ ମୁଦ୍ରଣରେ କଲିକତା କଳିଙ୍ଗ ମୁଦ୍ରଣାର କର୍ତ୍ତୃପକ୍ଷ ଆମକୁ ବହୁ ଭାବରେ ସାହାଯ୍ୟ କରିଥିଲେ । ଏଥିପାଇଁ ଆମକୁ ଆମର ବହୁ ପୁରୁଣା ସଭ୍ୟ ଶ୍ରୀ ଅଚ୍ୟୁତାନନ୍ଦ ବାରିକ, ଶ୍ରୀ ରମେଶ ଚନ୍ଦ୍ର ମହାନ୍ତି ଏବଂ ଖଡ଼ଗପୁରର ବହୁ-ଜନପ୍ରିୟ କବି ଶ୍ରୀ ମହେଶ୍ୱର ପଣ୍ଡା ମଧ୍ୟ ଆମକୁ ବହୁ ଭାବରେ ସାହାଯ୍ୟ କରିଥିଲେ ।

୧୯୬୮ ମସିହା ଏପ୍ରିଲ ପହିଲା ଦିନ ଏହି ଉତ୍ସବ ମହାସମାରୋହରେ ପାଳିତ ହୋଇଥିଲା । ଆଜି ପର୍ଯ୍ୟନ୍ତ ଏହି ଉତ୍ସବ ନିରବଚ୍ଛିନ୍ନ ଭାବରେ ପାଳିତ ହୋଇ ଆସୁଛି । ୧୯୭୦ ମସିହାଠାରୁ ଏହା ଭଞ୍ଜଭବନଠାରେ ପାଳିତ ହୋଇ ଆସୁଛି । ଏଥିପାଇଁ ଆମେ ଆଦର୍ଶ ପାଠାଗାର ତଥା ଭଞ୍ଜ ସାଂସ୍କୃତିକ ଟ୍ରଷ୍ଟଠାରେ ଋଣୀ ।

ଏହି ଉତ୍ସବ ନିରବଚ୍ଛିନ୍ନ ଭାବରେ ୨୨ ବର୍ଷ ପାଳିତ ହୋଇସାରିଛି ଓ ସ୍ମାରକୀ ମଧ୍ୟ ପ୍ରକାଶିତ ହୋଇଆସୁଛି । ସାଧାରଣ ଖର୍ଚ୍ଚ ବ୍ୟତୀତ ପ୍ରତିବର୍ଷ ଗରିବ ମେଧାବୀ ଆଦିବାସୀ ଛାତ୍ର ଛାତ୍ରୀଙ୍କୁ ୧୯୭୦ ମସିହାରୁ ମଧୁସୂଦନ ସ୍ମୃତି ପୁରସ୍କାର ଦିଆଯାଉଛି । ୧୯୭୨ ମସିହାରୁ ଖଡ଼ଗପୁରର ଜଣେ ବିଶିଷ୍ଟ ସମାଜସେବୀ ଶ୍ରୀଯୁକ୍ତ ରବିନାରାୟଣ ମହାପାତ୍ରଙ୍କ ଦାନରେ ଆମ ସଂଘ ତରଫରୁ ଗୋଟିଏ ଗୋପବନ୍ଧୁ ସ୍ମୃତି ପାଣ୍ଠି କରାଯାଇଛି ଓ ସେହିଦିନଠାରୁ ପ୍ରତିବର୍ଷ ଗରିବ ଆଦିବାସୀ ମେଧାବୀ ଛାତ୍ର-ଛାତ୍ରୀଙ୍କୁ ଗୋପବନ୍ଧୁ ସ୍ମୃତି ପୁରସ୍କାର ଦିଆଯାଇ ଆସୁଛି ।

ଆହୁରି ମଧ୍ୟ ସଂଘ ତରଫରୁ ପ୍ରତିବର୍ଷ ମଧୁସୂଦନଙ୍କ ଉପରେ ପ୍ରବନ୍ଧ ଓ ବକ୍ତୃତା ପ୍ରତିଯୋଗିତା କରାଯାଇ କୃତକାର୍ଯ୍ୟ ଲାଭ କରିଥିବା ପ୍ରତିଯୋଗୀମାନଙ୍କୁ ସଭା ମଣ୍ଡପରେ ପୁରସ୍କାର ପ୍ରଦାନ କରାଯାଏ ।

ପଣ୍ଡିତ ନୀଳକଣ୍ଠ ସ୍ମୃତି ସମିତିର ଆର୍ଥିକ ସହାୟତା ଓ ସଂଘ ତରଫରୁ ସମପରିମାଣ ଅର୍ଥ ବିନିଯୋଗ କରି ଗୋଟିଏ ନୀଳକଣ୍ଠ ସ୍ମୃତି ପାଣ୍ଠି କରାଯାଇଛି । ସେଥିରେ ପ୍ରତିବର୍ଷ ପ୍ରବନ୍ଧ ଓ ବକ୍ତୃତା ପ୍ରତିଯୋଗିତା କରାଯାଇ କୃତୀଛାତ୍ର ଛାତ୍ରୀମାନଙ୍କୁ ସଭା ମଣ୍ଡପରେ ପୁରସ୍କାର ବିତରଣ କରାଯାଏ ।

ଏତଦବ୍ୟତୀତ ଉତ୍ସବ ମଣ୍ଡପରେ ବିଭିନ୍ନ ଦିଗ ଯଥା ସାହିତ୍ୟ, ନୃତ୍ୟ, କଳା, କ୍ରୀଡ଼ା ଓ ସମାଜସେବା ପ୍ରଭୃତିରେ ଜୀବନ ବିତାଇଥିବା ସମ୍ମାନନୀୟ ଉତ୍କଳ ସନ୍ତାନ-ମାନଙ୍କୁ ୧୯୭୨ ମସିହାଠାରୁ ପ୍ରତିବର୍ଷ ସମ୍ବର୍ଦ୍ଧନା ଦିଆଯାଇ ଆସୁଛି ।

ସାଂସ୍କୃତିକ କାର୍ଯ୍ୟକ୍ରମ ମାଧ୍ୟମରେ ସ୍ମୃତିପୂଜା ସଙ୍ଗେ ସଙ୍ଗେ ଓଡ଼ିଶା ତଥା ବିଚ୍ଛିନ୍ନାଞ୍ଚଳର ଲୋକଗୀତ, ଲୋକନୃତ୍ୟ, ଓଡ଼ିଆ ସଂସ୍କୃତି ଓ କଳା ପ୍ରଦର୍ଶନ ମଧ୍ୟ ଆମ ଉତ୍ସବ ପାଳନର ଏକ ଲକ୍ଷ୍ୟ ।

ଯେଉଁ ବ୍ୟକ୍ତିବିଶେଷ ତଥା ଅନୁଷ୍ଠାନ ଆମର ଉତ୍ସବକୁ ବହୁ ଭାବରେ ସଫଳ କାମ କରିଛନ୍ତି । ତା'ର ବିଶେଷ ବିବରଣୀ ପରିଶିଷ୍ଟରେ ଦିଆଗଲା ।

ଏହା ଅତ୍ୟନ୍ତ ଗର୍ବ ଓ ଗୌରବର ବିଷୟ ଯେ ଆମ ଅନୁଷ୍ଠାନ ପ୍ରଥମ କରି ଏତେ ବଡ଼ ଆକାରରେ ଓଡ଼ିଶାରେ ପାଳନ କରି ଆସୁଛି । ଆମ ଦେଖାଦେଖି ଅନ୍ୟମାନେ ପାଳନ କଲେଣି । ବର୍ତ୍ତମାନ ଏହା ମଧ୍ୟ ସରକାରୀ ସ୍ତରରେ ସବୁଆଡ଼େ ପାଳିତ ହେଉଛି । ମୋର ପିଲାବେଳର ସେ ଭାବନା କେତେକାଂଶରେ ସତ ହୋଇଛି ।

ଆମର ଉପଦେଷ୍ଟା ଶ୍ରୀଯୁକ୍ତ ନରେଶ ଚନ୍ଦ୍ର ନାୟକଙ୍କର ପ୍ରେରଣା, ଶୃଙ୍ଖଳା ବୋଧ ତଥା ସମୟାନୁବର୍ତ୍ତିତା ଆମକୁ ଏତେ ଦୂର ଆଗେଇ ଆଣି ପାରିଛି । ଗତ ୨୨ ବର୍ଷ ଧରି ଆମ ଉତ୍ସବ ସନ୍ଧ୍ୟା ୭ଟାରେ ଆରମ୍ଭ ହେବାର ଥିଲେ ୭ଟା ୧ ମିନିଟ ହୁଏନା । ଏହାଛଡ଼ା ଆମର ଅନ୍ୟତମ ଉପଦେଷ୍ଟା ଶ୍ରୀଯୁକ୍ତ ନାରାୟଣ ଆଚାର୍ଯ୍ୟ ଏବଂ ଭୂତପୂର୍ବ ଓ ବର୍ତ୍ତମାନର ସଭାପତି ଓ ଉପସଭାପତିଗଣ ଶ୍ରୀ ପ୍ରଶାନ୍ତ କୁମାର ରଥ, ଶ୍ରୀ ଯୁଗଳ କିଶୋର ପଣ୍ଡା, ଶ୍ରୀ ଗୌର ଚନ୍ଦ୍ର ମିଶ୍ର, କୁମାରୀ ନିରୁପମା ପଟ୍ଟନାୟକ, ଶ୍ରୀ ଶ୍ରୀ ଗଦାଧର ଉପାଧ୍ୟାୟ, ଶ୍ରୀ ଉମେଶ ଚନ୍ଦ୍ର ପାତ୍ର, ଶ୍ରୀ ଶଙ୍କର ପୁରୋହିତ, ଶ୍ରୀ ଯୋଗେନ୍ଦ୍ର କୁମାର ମିଶ୍ର, ଶ୍ରୀ ବିଶ୍ୱନାଥ ମହାନ୍ତି, ଶ୍ରୀ ବିବେକାନନ୍ଦ ମହାନ୍ତି, ଶ୍ରୀ ରମାକାନ୍ତ ଗୋଛାୟତ, ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର, ଶ୍ରୀ ଜନାର୍ଦ୍ଦନ ତ୍ରିପାଠୀ ଓ ଡଃ ଶ୍ରୀଚରଣ ମହାନ୍ତି ପ୍ରଭୃତିଙ୍କର ଅବଦାନ ଭୁଲି ହୁଏନା । ଶ୍ରୀଯୁକ୍ତ ଜଗନ୍ନାଥ ମହାପାତ୍ର ଓ ଶ୍ରୀଯୁକ୍ତ ଅଲେଖ ଚନ୍ଦ୍ର ମହାନ୍ତିଙ୍କର ବହୁମୂଲ୍ୟ ଉପଦେଶ ମଧ୍ୟ ଆମକୁ ବହୁ ସାହାଯ୍ୟ କରିଛି ।

ଆହୁରି ମଧ୍ୟ ବହୁ ପୁରୁଣା ଓ ନୂଆ କର୍ମକର୍ତ୍ତା ତଥା ସଭ୍ୟମାନଙ୍କ କଥା ମନକୁ ଆସେ ସେମାନଙ୍କ ମଧ୍ୟରେ ଶ୍ରୀ ବୃନ୍ଦାବନ ନାୟକଙ୍କ କଥା ସ୍ୱତନ୍ତ୍ର । ବହୁ ସମୟରେ ଅନେକ ପାରିବାରିକ ଜଞ୍ଜାଳ ସତ୍ତ୍ୱେ ସେ ଅନୁଷ୍ଠାନର କାର୍ଯ୍ୟକୁ ଅଗ୍ରାଧିକାର ଦେଇଛନ୍ତି ।

ଏହାଛଡ଼ା ଶ୍ରୀ ରାଧାନାଥ ରାଉତ, ଶ୍ରୀ ରମେଶ ଚନ୍ଦ୍ର ମହାନ୍ତି, ଶ୍ରୀ ତରୁଣୀସେନ ସାହୁ, ଶ୍ରୀ ଅଖିଳ କୁମାର ସାମଲ, ଶ୍ରୀ ଭବାନୀଶଙ୍କର ମିଶ୍ର, ଶ୍ରୀ କିଶୋରୀ ମୋହନ କର ଶ୍ରୀ ରାଧାମୋହନ ନାୟକ, ଶ୍ରୀ ଗଜେନ୍ଦ୍ର ପ୍ରସାଦ ତ୍ରିପାଠୀ, ଶ୍ରୀ ପରମେଶ୍ୱର ମହାରଣା, ଶ୍ରୀ ନାରାୟଣ ପ୍ରସାଦ ମହାନ୍ତି, ଶ୍ରୀ ଉମାକାନ୍ତ ରାଜ, ଶ୍ରୀ ଶତ୍ରୁଘ୍ନ ବେହେରା, ଶ୍ରୀ ଘନଶ୍ୟାମ ଧଳ, ଶ୍ରୀ ନାରାୟଣ ଚନ୍ଦ୍ର ମହନ୍ତ, ଶ୍ରୀ ପ୍ରଫୁଲ୍ଲ କୁମାର ସାମଲ, ଶ୍ରୀ ମୋହନ ଚରଣ ମଣ୍ଡଳ, ଶ୍ରୀ ବିଶ୍ୱନାଥ ଗଡ଼ବଡ଼ୁ, ଶ୍ରୀ ସତ୍ୟନାରାୟଣ ମହାନ୍ତି (ଗାନ୍ଧିବାବୁ), ଶ୍ରୀ ପ୍ରସନ୍ନ

କୁମାର ଦାସ, ଶ୍ରୀ କ୍ଷୀରୋଦ କୁମାର ସାହୁ, ଶ୍ରୀ କମଳ କୁମାର ଦାସ, ଶ୍ରୀ ନାରାୟଣ ଦାସ, ଶ୍ରୀ ଅବନୀ ଚରଣ ବରାଳ, ଶ୍ରୀ ପ୍ରତାପ ଚନ୍ଦ୍ର ମହାନ୍ତି ଓ ଅନ୍ୟାନ୍ୟ ବନ୍ଧୁ ସଭ୍ୟ ଦୀର୍ଘଦିନ ଧରି ୨୨ ବର୍ଷକାଳ ଏହି ଉତ୍ସବ ସବୁ ସଫଳ କାମ କରିବାରେ ସାହାଯ୍ୟ କରି ଆସିଛନ୍ତି ।

ସ୍ମାରକୀ ସମ୍ପାଦନା ପାଇଁ ଆମେ ସ୍ୱର୍ଗତଃ ଡଃ ନବୀନ କୁମାର ସାହୁ, ଅଧ୍ୟାପକ ପୂର୍ଣ୍ଣଚନ୍ଦ୍ର ମହାପାତ୍ର, ଡଃ ପ୍ରବୋଧ କୁମାର ମିଶ୍ର ଓ ଡଃ ଶ୍ରୀଚରଣ ମହାନ୍ତିଙ୍କ ନିକଟରେ ଚିରଋଣୀ ।

ସର୍ବୋପରି ଆମେ ରାଉରକେଲା ଇସ୍ପାତ କାରଖାନା କର୍ତ୍ତୃପକ୍ଷ, ଏଠାକାର ସାମ୍ବାଦିକମାନେ, ବିଭିନ୍ନ ଅନୁଷ୍ଠାନ ତଥା ବ୍ୟକ୍ତି ବିଶେଷ ମାନଙ୍କଠାରୁ ବହୁ ଭାବରେ ସାହାଯ୍ୟ ପାଇଥିବାରୁ ଏ ଉତ୍ସବ ସଫଳ ହୋଇ ପାରିଛି । ସେମାନଙ୍କଠାରେ ମଧ୍ୟ ଆମେ ଋଣୀ ।

ଆମେ ଗୁଣ୍ଡିଚ ମହୋତ୍ସବ ଆମର ଚେଷ୍ଟା ଚଳାଇଛୁ । ୧୯୬୮ ମସିହାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ଯେଉଁ ସ୍ମାରକୀ ଆମେ ପ୍ରକାଶ କରିଛୁ, ତାହା ଏକତ୍ର କଲାପରେ ତାହା ଏହି ଓଡ଼ିଶାର ବିଭୂତିମାନଙ୍କର ଜୀବନୀ ତଥା ରାଜନୈତିକ, ସାହିତ୍ୟିକ, କଳା ସଂସ୍କୃତିର ଏକ ବଡ଼ ଗ୍ରନ୍ଥ ହେବ । ଏହାର ମୂଲ୍ୟାୟନ ସମସ୍ତେ କରିବେ । ମୋର ସେ ବିଷୟରେ କିଛି କହିବାର ନାହିଁ ମାତ୍ର ଏତିକି କହି ରଖୁଛି, ବର୍ତ୍ତମାନ ସାଧାରଣ ଲୋକମାନଙ୍କର ସାମାଜିକ କର୍ତ୍ତବ୍ୟବୋଧ ଯେପରି ଲୋପ ପାଇବାକୁ ବସିଲାଣି ଆମେ ଭବିଷ୍ୟତରେ ଆମର ଏ ଅନୁଷ୍ଠାନର ଦୈନନ୍ଦିନ କାର୍ଯ୍ୟ କିପରି ଚଳାଇବୁ ତାହା ଚିନ୍ତାର ବିଷୟ । କେବଳ ଭଗବାନ ହିଁ ଜାଣନ୍ତି ଆଗକୁ ସ୍ୱତନ୍ତ୍ର ଉତ୍ସବ ପୂଜା ଆଦି ବହୁମୁଖୀ କାର୍ଯ୍ୟକ୍ରମ କିପରି ଚାଲିବ ।



# ପ୍ରଗତି ଉତ୍କଳ ସଂଘ ଓ ମଧୁସୂଦନଙ୍କ ସ୍ମୃତି

ଶ୍ରୀ ବୃନ୍ଦାବନ ନାୟକ
ସାଧାରଣ ସମ୍ପାଦକ

କାଲିଭଳି ସବୁକିଛି ଆଖି ଆଗରେ ନାଚି ଯାଉଛି । ମାତ୍ର ଏ ହେଉଛି ୧୯୫୮ ସାଲ, ଦୀର୍ଘ ୩୨ ବର୍ଷ ତଳର ଘଟଣା । ଆମ୍ଭେମାନେ ୧୦୬ ଜଣ ଓଡ଼ିଆ ପିଲା ହିସାବରେ ପ୍ରଥମ ଥର ପାଇଁ ୧୯୫୫ ସାଲରେ ହିନ୍ଦୁସ୍ଥାନ ଷ୍ଟିଲ ତରଫରୁ ଶିକ୍ଷାନୁ-ବିଶ ପାଇଁ ବଛାଯାଇ ଟାଟା ଇସ୍ପାତ କାରଖାନାରେ ଯୋଗଦାନ କରି ସୁନ୍ଦରନଗର ହଷ୍ଟେଲରେ ରହି ଶିକ୍ଷାନୁବିଶ ଜୀବନରେ ଶେଷ ବର୍ଷରେ ପଦାର୍ପଣ କରିଥାଉ ।

ଆମେ ସେପର୍ଯ୍ୟନ୍ତ ସହରଟିକୁ ଦେଖି ନଥାଉ । କେବଳ ପତ୍ର ପତ୍ରିକାରୁ ପଢ଼ି ବଣ ଜଙ୍ଗଲ ଓ ପାହାଡ ଘେରା ଜାଗା ବୋଲି ଶୁଣିଥାଉ । ସେ ସମୟରେ ଜଙ୍ଗଲ ସଫାକରି ରାସ୍ତାଘାଟ, ଘରଦ୍ୱାର ତିଆରି କାମ ଚାଲିଥାଏ । ସେ ସମୟରେ ଓଡ଼ିଆମାନଙ୍କର ଅସ୍ତିତ୍ୱ ନଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଆମାନଙ୍କ ଉପରେ ନାନା ପ୍ରକାର ଜୁଲମ ଚାଲିଥାଏ । ଅନେକ ଥର ଏଠାରେ ବିଭିନ୍ନ ଜାତିର ଲୋକମାନେ ଓଡ଼ିଆମାନଙ୍କ ଉପରେ ଅନେକ ପ୍ରକାରର ଜୁଲମ କରିଛନ୍ତି । ତାହା ଏଠାରେ ପ୍ରକାଶ କରୁ ନାହିଁ ।

ଉପରୋକ୍ତ ଘଟଣାକୁ ଆଖି ଆଗରେ ରଖି ଗୋଟିଏ ଅନୁଷ୍ଠାନ ଗଠନ କରିବା ପାଇଁ ଆମ୍ଭେମାନେ ଚିନ୍ତାକଲୁ ଓ ତାହାକୁ ସେହି ଇସ୍ପାତ ନଗରୀ ଜାମସେଦପୁରର ସୁନ୍ଦର ନଗର ଗ୍ରୁଜା ବାହାରେ ଗଠନ କରିବା ପାଇଁ ବୈଠକ ଡକାଗଲା । ମାତ୍ର ଦୁଃଖ ଓ ପରିତାପର ବିଷୟ ଯେ ଆମ୍ଭେମାନେ ଏକମତ ହୋଇ ଗୋଟିଏ ଅନୁଷ୍ଠାନ ଗଠନ କରି ପାରିଲୁ ନାହିଁ । ସେଠାରେ ଦୁଇଟି ଅନୁଷ୍ଠାନ ଗଠନ କରାଗଲା ।

ଏଠାରେ ନିଜର ଅଭିଜ୍ଞତାରୁ ଟିକିଏ ବର୍ଣ୍ଣନା କରିବାକୁ ବାଧ୍ୟ ହେଉଛି । ମୁଁ ରାଣୀହାଟ ହାଇସ୍କୁଲରେ ପଢ଼ିବା ସମୟରେ ସେଠାରେ "ଉଦୟ କ୍ଲବ" ଗଠନ କରି ଗୋଟିଏ "ଶାରଦା" ପତ୍ରିକା ପ୍ରକାଶ କରୁଥିଲୁ । ସେ ସମୟରେ ମୋର ସାଥୀ ଶ୍ରୀ ବିରୁପାକ୍ଷ ପାତ୍ରୀ ମୋର ଉପର ଶ୍ରେଣୀରେ ପଢୁଥାଆନ୍ତି । ସେ ମଧ୍ୟ ଏହି ଅନୁଷ୍ଠାନରେ ସଭ୍ୟ ହୋଇ କାର୍ଯ୍ୟ କରୁଥାଆନ୍ତି । ସେ ସମୟରେ ଯେଉଁ ଅଭିଜ୍ଞତା ଆମେ ଅର୍ଜନ କରିଥିଲୁ ତାହା ବହୁ ପରିମାଣରେ ଆମକୁ ସାହାଯ୍ୟ କରିଛି ।

ଆମ୍ଭେମାନେ ୧୯୫୮ ସାଲ ଅଗଷ୍ଟ ୧୫ ତାରଖରେ କେତେକ ସଭ୍ୟମାନଙ୍କୁ ନେଇ ଅନୁଷ୍ଠାନିକ ଭାବରେ ଏହି ଅନୁଷ୍ଠାନ ଗଠନ କଲୁ । ପରିଶିଷ୍ଟରେ ସଭ୍ୟ ତାଲିକା ସଂଯୁକ୍ତ ମାତ୍ର କିଛି ବନ୍ଧୁ ଏହାକୁ ଛାଡ଼ି ଅନ୍ୟ ଅନୁଷ୍ଠାନକୁ ଚାଲିଗଲେ ।

ବହୁ ଝଡ଼ଝଞ୍ଜା ମଧ୍ୟଦେଇ ଏହି ଅନୁଷ୍ଠାନଟି ଗତିକରି ଆସିଛି । ପ୍ରଥମ ଅବସ୍ଥାରେ ସେହି ସୁନ୍ଦର ନଗର ଗ୍ରାମବାସରେ ଥିବା ସମୟରେ ସାହାଯ୍ୟକାରୀ ହିସାବରେ ଶ୍ରୀଯୁକ୍ତ ବାମଦେବ ପାଢ଼ୀ, (ଶ୍ରୀ ବିରୂପାକ୍ଷ ପାଢ଼ୀଙ୍କ ପିତା) ଯେକି ଆମ୍ଭମାନଙ୍କୁ ସଭ୍ୟ ଗ୍ରହଣ କରିବା ଫର୍ମ ଓ ରସିଦ ବହି ଯୋଗାଇ ଦେଇଥିଲେ । ଦ୍ୱିତୀୟ ବ୍ୟକ୍ତି ହେଉଛନ୍ତି ଶ୍ରୀଯୁକ୍ତ ସୁନ୍ଦର ଦାସ ଯେଉଁ ବ୍ୟକ୍ତିଙ୍କ ଗୃହରେ ଆମ୍ଭେମାନେ ରହି ଶିକ୍ଷା ଗ୍ରହଣ କରୁଥିଲୁ ସେ ୫୫୦ଙ୍କା (ପଚାଶ ଟଙ୍କା) ଦାନକରି ଆମକୁ ଉତ୍ସାହିତ କରିଥିଲେ । ଏ ଦୁଇ ବ୍ୟକ୍ତିଙ୍କୁ ଅନୁଷ୍ଠାନ କେବେହେଲେ ଭୁଲି ପାରିବ ନାହିଁ ।

୧୯୫୯ ସାଲରେ ଆମ୍ଭେମାନେ ଜାମସେଦପୁର ଛାଡ଼ି ରାଉରକେଲା ଆସିଲୁ । ମାତ୍ର କେତିଟି ଦିନର ସେହି ଶିଶୁ ଅନୁଷ୍ଠାନଟିର ବହିପତ୍ର ଗୋଟିଏ ଟିଣ ବାକ୍ସରେ ପୁରାଇ ନୂତନ ଏହି ଶିଳ୍ପ ନଗରୀକୁ ସଙ୍ଗରେ ନେଇ ଆସିଲୁ । କିଛି ଦିନ ସେକ୍ଟର ୫ ହଷ୍ଟେଲରେ ରହିବା ପରେ ଆମ୍ଭମାନଙ୍କୁ ଗୃହ ଯୋଗାଇ ଦିଆଗଲା । ସେହି ଶିଶୁ ଅନୁଷ୍ଠାନଟି ସେହି ଟିଣ ବାକ୍ସରୁ ବାହାରକୁ ଆସି ଆଜି ବିରାଟ ଅନୁଷ୍ଠାନରେ ପରିଣତ ହୋଇଛି । ମାତ୍ର ସେହି ଟିଣ ବାକସଟି ଆମର ସ୍ମୃତି ହୋଇ ରହିଛି ।

ଅନୁଷ୍ଠାନର କାର୍ଯ୍ୟ ଆରମ୍ଭ କରାଗଲା, ଏ/୮, ସେକ୍ଟର-୧୭ । ଏହି ଗୃହଟି ଶ୍ରୀ ବୃନ୍ଦାବନ ନାୟକ ଓ ଶ୍ରୀ କାହ୍ନୁ ଚରଣ ପଟ୍ଟନାୟକଙ୍କୁ ଦିଆଯାଇଥିଲା ।

୧୯୬୦ ନଭେମ୍ବର ମାସରେ ଆମ୍ଭମାନଙ୍କୁ ଅଲଗା, ଅଲଗା ଭାବରେ ସେକ୍ଟର-୭ରେ ଗୃହ ଯୋଗାଇ ଦିଆଗଲା । ଅନୁଷ୍ଠାନର କାର୍ଯ୍ୟ ସି/୧୦୨ରେ ଶ୍ରୀଯୁକ୍ତ ବିଦ୍ୟାଧର ଜେନାଙ୍କ ଗୃହରେ ଆରମ୍ଭ କରାଗଲା ।

୧୯୬୪ ସାଲରେ ଶ୍ରୀ ବିରୂପାକ୍ଷ ପାଢ଼ୀ ତାଙ୍କ ବିଭାଗର ଜଣେ ଆଦିବାସୀ ବ୍ୟକ୍ତି ଶ୍ରୀ ନମ୍ଭନ ଓରାମଙ୍କଠାରୁ ତାଙ୍କ ନାମରେ ଗୋଟିଏ ଗୃହ ଆଲଟମେଣ୍ଟ କରାଇବା ପାଇଁ ଲେଖାଇ ଆଣିଲେ । ମୁଁ ବହୁ ଚେଷ୍ଟାକରି ସି/୯୦, ସେକ୍ଟର-୭ ଘରଟି ତାଙ୍କ ନାମରେ ତା ୨୨-୮-୧୯୬୪ରେ ଆମକୁ ମିଳିଲା । ଏହି ଘରେ ଅନୁଷ୍ଠାନର କାର୍ଯ୍ୟ ଚାଲିବାକୁ ଲାଗିଲା । ସେ ସମୟରେ ଶ୍ରୀ ଶ୍ରୀ ଗଣେଶ ପୂଜା ଓ ଶ୍ରୀ ଶ୍ରୀ ସରସ୍ୱତୀ ପୂଜା ବହୁ ଆଡ଼ମ୍ବର ସହକାରେ ତିନି ଦିନ ଧରି ଚାଲୁଥିଲା । କ୍ୟାରମ ପ୍ରତିଯୋଗିତା ମଧ୍ୟ ଖୁବ୍ ଭଲ ଭାବରେ ଆମ୍ଭେମାନେ କରି ରାଉରକେଲାରେ ଚହଳ ପକାଇ ଥିଲୁ । ସଂଘର ନାମ ଦିନକୁ ଦିନ ବଢ଼ିବାକୁ ଲାଗିଲା ।

ଷ୍ଟିଲ ପ୍ଲାଣ୍ଟ କର୍ତ୍ତୃପକ୍ଷ ଆମ ସଂଘକୁ ୪-୧-୧୯୬୭ରେ ଗୋଟିଏ Two BR ଘର A/11, ସେକ୍ଟର-୧୭ରେ ଯୋଗାଇ ଦେଲେ । ସେଠାରେ ଅନୁଷ୍ଠାନ କରୁ ଦିନ କାର୍ଯ୍ୟକଲ । ମାତ୍ର ତାହା ଆଶା ଜନକ ନ ହେବାରୁ ଆମେ କର୍ତ୍ତୃପକ୍ଷଙ୍କୁ ସେକ୍ଟର-୬ରେ ଗୋଟିଏ ଗୃହ ଦେବା ପାଇଁ ଆବେଦନ କଲୁ । ବର୍ତ୍ତମାନ ବି/୯ ଘରଟି ଆମକୁ ୧୫-୬-୬୮ରେ ଦିଆଗଲା । ଏହିଠାରେ ସଂଘର କାର୍ଯ୍ୟ ଦିନକୁ ଦିନ ବଢ଼ିବାକୁ ଲଗିଲା ।

ଅନୁଷ୍ଠାନର ପ୍ରଥମ ସଭାପତି ଭାବରେ ଶ୍ରୀଯୁକ୍ତ ନରେଶ ଚନ୍ଦ୍ର ନାୟକ ୧୯୫୯ରେ ଯୋଗଦେଇ ଲଗାତାର ୧୯୭୯ ସାଲ ପର୍ଯ୍ୟନ୍ତ ତଥା ଉପଦେଷ୍ଟା ଭାବରେ ଆଜି ପର୍ଯ୍ୟନ୍ତ ଅନୁଷ୍ଠାନରେ ରହି ତାଙ୍କର ବହୁ ମୂଲ୍ୟ ଉପଦେଶ ଦେଇ ଅନୁଷ୍ଠାନକୁ ଶୃଙ୍ଖଳିତ ଭାବରେ ଚଳାଇ ଆଣିଛନ୍ତି । ଏ ଅନୁଷ୍ଠାନ ପ୍ରତି ତାଙ୍କର ଗଭୀର ଆସ୍ଥା ଅଛି ।

ଶ୍ରୀଯୁକ୍ତ ନାରାୟଣ ଆଚାର୍ଯ୍ୟ ଏହି ଅନୁଷ୍ଠାନରେ ଉପ-ସଭାପତି ଭାବରେ ୧୯୮୩-୮୪ରୁ ୧୯୮୭-୮୮ ପର୍ଯ୍ୟନ୍ତ ରହି ଆସିଛନ୍ତି । ବର୍ତ୍ତମାନ ସଂଘ ତାଙ୍କୁ ଉପଦେଷ୍ଟା ଭାବରେ ପାଇଛି । ତାଙ୍କ ଯୋଗୁ ସଂଘର ଆର୍ଥିକ ଉନ୍ନତି ହୋଇପାରିଛି ।

୧୯୬୦ ସାଲରୁ ସଂଘ ତରଫରୁ ନାଟକ ପରିବେଷଣ କରାଯାଇ ଖୁବ୍ ନାମ କରିଛି । ଇସ୍ପାତ ନଗରୀ ରାଉରକେଲାରେ କଳାକାରମାନଙ୍କୁ ପ୍ରୋତ୍ସାହିତ କରି "ପ୍ରଗତି ଉତ୍କଳ ସଂଘ" ନାଟକ ପରିବେଷଣ କରିଥିଲା । ଶ୍ରୀ ଭବାନୀ ପଣ୍ଡା, ସ୍ଵ ବାରିଷ୍ଠ ରାଉତ, ଶ୍ରୀ ଦୁର୍ଗା ଦାସ, ଶ୍ରୀ କୁଳମଣି ମହାନ୍ତି, ଶ୍ରୀ ଜାନକୀ ଆଚାର୍ଯ୍ୟ ଓ ଶ୍ରୀ ଅମିୟ କୁମାର ପଟ୍ଟନାୟକ ପ୍ରମୁଖ ପ୍ରଗତି ଉତ୍କଳ ସଂଘର ଆଦି ପର୍ବରେ ମଞ୍ଚ କଳାରେ ଭାଗ ନେଇ ଅନୁଷ୍ଠାନକୁ ଗୌରବାନ୍ଵିତ କରିଥିଲେ ।

ଆମର ଅତି ପ୍ରିୟ ବନ୍ଧୁ ବିମଳ କୁମାର ଚୌଧୁରୀ (ଆଜି ଇହ ଜଗତରେ ନାହାନ୍ତି) ସେ ଟାଟା ନଗରରେ ଓଡ଼ିଶାର କଳା, ସଂସ୍କୃତିକୁ ବଞ୍ଚାଇ ରଖିବା ପାଇଁ ତାଙ୍କ ଜୀବନସାରା କାର୍ଯ୍ୟ କରିଛନ୍ତି । ତା ସହିତ ସେ ଏଠାକୁ ଆସି ଆମ ସଙ୍ଗରେ ମିଶି ଏଠାରେ ମଧ୍ୟ ନାଟକ ପରିବେଷଣ କରିଛନ୍ତି । ତା' ସଙ୍ଗେ ସଙ୍ଗେ ଉତ୍କଳ ଦିବସରେ ସେଠାରୁ ସାଂସ୍କୃତିକ ଦଳକୁ ଆଣି ଏଠାରେ ମଧ୍ୟ ନିଜର ଜାତି ଓ ଭାଷାର ଗୌରବ ବଢ଼ାଇଛନ୍ତି । ଏଠାର ଲୋକମାନଙ୍କର ଆଖି ଖୋଲି ଦେବା ସଙ୍ଗେ ସଙ୍ଗେ ସଂଘର ମାନସମ୍ମାନ ବଢ଼ାଇଛନ୍ତି ।

## ପାଠାଗାର -

ଏହି ସଂଘର ଗୋଟିଏ ଆକର୍ଷଣୀୟ ପାଠାଗାର ଅଛି । ଏହି ପାଠାଗାରରେ

ଓଡ଼ିଆ, ହିନ୍ଦି, ଇଂରାଜୀ ଓ ବଙ୍ଗଳା ଭାଷାର ପୁସ୍ତକ ମିଶି ପ୍ରାୟ ୬୦ଠର ହଜାର ଅଛି । ଏହି ପୁସ୍ତକ ଗୁଡ଼ିକ ରୁଚିଶୀଳ, ଉପାଦେୟ ଓ ମୂଲ୍ୟବାନ ପୁସ୍ତକ ଭାବରେ ଗଚ୍ଛିତ ଅଛି । ଏହା ସହିତ ଅନେକ ଦୁଷ୍ପ୍ରାପ୍ୟ ପୁସ୍ତକ, ମୂଲ୍ୟବାନ ଦଲିଲ ଯାହାକି ଅନ୍ୟ କୌଣସିଠାରେ ପାଇବା ସମ୍ଭବ ହୋଇ ନପାରେ ଓ ବିଭିନ୍ନ ବହୁ ଦରକାରୀ ପତ୍ର-ପତ୍ରିକା ଉତ୍ତମ ଭାବରେ ପୃଥକ କରି 'ରେଫରେନସ୍' ବିଭାଗରେ ରଖାଯାଇଛି । ଏହା ଦ୍ୱାରା ବହୁ ସାହିତ୍ୟିକ, ସାମ୍ବାଦିକ, ଗବେଷକ ଓ ଛାତ୍ର ଛାତ୍ରୀମାନେ ଉପକୃତ ହେଉଛନ୍ତି । ପ୍ରତି ସନ୍ଧ୍ୟାରେ ପାଠାଗାରର ପୁସ୍ତକ କାଉଣ୍ଟର ନିକଟରେ ଧାଡ଼ିବାନ୍ଧି ଛିଡ଼ା ହୋଇଥିବା ସାହିତ୍ୟ ପ୍ରେମୀ ବନ୍ଧୁମାନଙ୍କର ଗୁଞ୍ଜରଣ ଯେ କେହି ଆଗନ୍ତୁକ ଦେଖିଲେ ତାଙ୍କର ହୃଦୟ ବିମୋହିତ ହୋଇଯାଏ ।

## ସଂଘର ଆୟ ବ୍ୟବସ୍ଥା -

୧) ସଭ୍ୟମାନଙ୍କଠାରୁ ପ୍ରବେଶିକା ଓ ସଭ୍ୟଚାନ୍ଦା

୨) ବନ୍ଧୁମାନଙ୍କ ମଧ୍ୟରେ ଭାଗ୍ୟବାନ ଦାତା ପୁରସ୍କାର ଯୋଜନା (ବର୍ତ୍ତମାନ ଏହା ବନ୍ଦ ହୋଇଯାଇଛି) ।

୩) ସଂଘ ତରଫରୁ ଡେକୋରେଇ ସାମଗ୍ରୀ, ମାଇକ୍, ତାରପୋଲିନ, ଦରି ପ୍ରଭୃତି ଭଡାରେ ଦେଇ ସେଥିରେ ଯାହା ଆସେ ତାହା ଜାତୀୟ ସ୍ୱାର୍ଥରେ ଖର୍ଚ୍ଚ କରାଯାଏ ।

୪) ସରକାରୀ ଓ ବେସରକାରୀ ସାହାଯ୍ୟ ।

୫) ବ୍ୟକ୍ତି ବିଶେଷ ଓ ଶିଳ୍ପ ପ୍ରତିଷ୍ଠାନରୁ ଦାନ ।

୬) ବ୍ୟାଙ୍କର ସୁଧ ।

ଏହିପରି ଭାବରେ ଯାହାପାଉ ତାହା ଏହି ଅନୁଷ୍ଠାନରେ ଖର୍ଚ୍ଚ କରାଯାଏ । ପ୍ରତ୍ୟେକ ବର୍ଷ ଏହାର ଆୟବ୍ୟୟ ସମୀକ୍ଷା କରି ସଭ୍ୟମାନଙ୍କୁ ଜଣାଇ ଦିଆଯାଏ ।

ଅନୁଷ୍ଠାନର ସଭ୍ୟମାନେ ଅନୁଷ୍ଠାନରେ ରହି ରାଉରକେଲାରେ ଭାଷା, ସାହିତ୍ୟ, ସଂସ୍କୃତି ଓ କଳାର ବିକାଶ ପାଇଁ ବହୁ କାର୍ଯ୍ୟ କରିଛନ୍ତି । ସମସ୍ତ ବିଷୟ ଲେଖିବା ସମ୍ଭବ ନୁହେଁ ।

## ସ୍ମୃତି ପୂଜା -

କୁଳବୃଦ୍ଧ, ଜାତୀୟ ଗୌରବ, ଉତ୍କଳ ଗୌରବ ମଧୁସୂଦନ ଦାସ ହେଉଛନ୍ତି ଓଡ଼ିଆ ଜାତିର ଗର୍ବ ଓ ଗୌରବ । ତାଙ୍କୁ ଓଡ଼ିଆ ଜାତିର ପିତାମହ ଭୀଷ୍ମ କହିଲେ

ସତ୍ୟର ଅପଳାପ ହେବ ନାହିଁ । ସେ କି ଇଂରେଜ ସରକାରଙ୍କ ସହିତ ଲଢ଼ାଇକରି ଜାତୀୟ ବୀର ଠାକୁରଙ୍କୁ ରାଜାଙ୍କୁ ଦେଇ ପାରିଲେ । ନିଜର ଭାଷା ପାଇଁ, ନିଜର ଜାତି ପାଇଁ, ସ୍କୁଲ, କଲେଜ, କାରଖାନା, ତାରକସି କାମ, ଚମଡ଼ା ଶିଳ୍ପ ପ୍ରଭୃତି ବହୁ ଆଗରୁ ଯେତେବେଳେ କି ଆମେ ବିହାର ଓ ବେଙ୍ଗଲ ସହିତଥିଲୁ ସେ ସମୟରେ ସେ ଆରମ୍ଭ କରିଇଥିଲେ । ସେ ସରକାରଙ୍କ ସହିତ ଲଢ଼ାଇ କରି ଏହାକୁ ସ୍ୱତନ୍ତ୍ର କରାଇବା ପାଇଁ ସବୁକିଛି କରିଥିଲେ । ତାଙ୍କ ଯୋଗୁ ହିଁ ଉତ୍କଳ ବିହାର ବେଙ୍ଗଲରୁ ଅଲଗା ହୋଇ ନିଜର ସ୍ୱାତନ୍ତ୍ର୍ୟ ବଜାଏ ରଖିଛି । ନଚେତ ଓଡ଼ିଶାକୁ ଓ ଓଡ଼ିଆ ଜାତିକୁ କେହି ପଚାରୁ ନଥିଲେ । କିନ୍ତୁ ଏ ଜାତି କରିଛି କ'ଣ ? ନିଜର ପିତାକୁ ଭୁଲି ପାରିଛି । ସେ ନିଜର ସାରାଜୀବନ ନିଜକୁ ତିଳ ତିଳକରି ଜଳାଇ ଶେଷରେ ଫକୀର ହୋଇ ଫେବୃୟାରୀ ୪ ତାରିଖ ୧୯୩୪ ସାଲରେ କଟକଠାରେ ମହାନ ଆତ୍ମାର ଶେଷ ନିଶ୍ୱାସ ତ୍ୟାଗ କଲେ । ତାଙ୍କ ପରେ ୧୯୩୬ ଏପ୍ରିଲ ପହିଲରେ ଆମକୁ ଏପ୍ରିଲ ଫୁଲ (ବୋକା) ବନାଇ ଉତ୍କଳ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେଲା । ମାତ୍ର ଅନେକ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ବାହାର ରାଜ୍ୟରେ ଯଥା ବିହାର, ବେଙ୍ଗଲ, ଆନ୍ଧ୍ର ଓ ମଧ୍ୟପ୍ରଦେଶରେ ରହିଗଲା । ଓଡ଼ିଶା ଛିନ୍ନମସ୍ତା ହୋଇ ରହିଛି । ଓଡ଼ିଆ ପୁଅ ଆଜି ଆଖିରୁ ଲୁହ ଗଡ଼ାଉଛି । ତାକୁ ପଚାରୁଛି କିଏ ? ଆମେ ସ୍ୱାଧୀନ ଥାଇ ମଧ୍ୟ ପରାଧୀନ । ଦିଲ୍ଲୀ ଦରବାରରେ ଓଡ଼ିଆର ସ୍ଥାନ କାହିଁ ? ଆଜି ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କ ଯୋଗୁ ଓଡ଼ିଆ ଟିକିଏ ସମ୍ମାନ ପାଉଛି । ସମସ୍ତେ କ୍ଷମତା ପାଇଁ ଲାଗି ପଡ଼ିଛନ୍ତି । ନିଜେ କିପରି ବଡ଼ ହେବେ । ନିଜର ଧନ ସମ୍ପତ୍ତି, କୋଠାବାଡ଼ିରେ ଲାଗିଗଲେ । ମଧୁବାବୁଙ୍କୁ ପଚାରୁଛି କିଏ ?

ଏହି ସଂଘ ପ୍ରଥମେ "ଉତ୍କଳ ଦିବସ" ପାଳନ କରିବ ବୋଲି ସ୍ଥିର କରିଥିଲା । ଏଠାର ଅଣ ଓଡ଼ିଆମାନେ ସ୍ଥାନଚକ୍ରାନ୍ତ କରି ଏହାକୁ କରାଇ ନଦେବା ପାଇଁ ସରକାରଙ୍କୁ ଜଣାଇଲେ । ଏହାର ବିସ୍ତୃତ ବିବରଣୀ ସାଥୀ ଶ୍ରୀ ରାଧାନାଥ ରାଉତ "ସେଦିନର ସ୍ମୃତି......ଆଜିର କୀର୍ତ୍ତି ଉତ୍ସବର ଆଦି ପର୍ବ"ରେ ଉତ୍କଳ ଗୌରବ ବଂଶ ଅଧ୍ୟ ୧୯୮୭ରେ ଲେଖିଛନ୍ତି । ଏହା ପଢ଼ିଲେ ଭଲ ଭାବରେ ବୁଝି ପାରିବେ । ମୁଁ ସେସବୁ ଏଠାରେ ଆଉ ଲେଖିବା ଉଚିତ ମନେ କରୁନାହିଁ ।

ବହୁ ବାଧାବିଘ୍ନ ପରେ ୧୯୬୮ ମସିହା ଏପ୍ରିଲ ପହିଲାରେ "ଉତ୍କଳ ଦିବସ ଓ ମଧୁସୂଦନ ଜୟନ୍ତୀ" ପ୍ରଥମ କରି ପାଳନ କରାଗଲା । ସେଥିପାଇଁ ଦିନ ରାତି କାର୍ଯ୍ୟ ଚାଲିଥାଏ । କାହାରିକୁ ଟିକିଏ ହେଲେ ସମୟ ନଥାଏ । କର୍ମ କ୍ଷେତ୍ରରେ ୮ ଘଣ୍ଟା କାର୍ଯ୍ୟ କରି ଏଥିପାଇଁ ରାତି ୧୦/୧୧ ପର୍ଯ୍ୟନ୍ତ କାର୍ଯ୍ୟ କରିବାକୁ ପଡ଼ୁଛି । ତଥାପି ମଧ୍ୟ କାହାରି ମନରେ ବିରାମ ନଥିଲା ।

ଓଡ଼ିଶା ଓ ମଧୁବାବୁଙ୍କ ଉପରେ ପ୍ରଥମ କରି ଡଃ ନବୀନ କୁମାର ସାହୁଙ୍କ ସମ୍ପାଦନାରେ ଗୋଟିଏ ମୂଲ୍ୟବାନ "ସ୍ମାରକୀ" ପ୍ରକାଶ କରାଯାଇଛି । ସେହିଦିନଠାରୁ ଏହି ଉପାନ୍ତ ଅଞ୍ଚଳରେ ଆମ୍ଭେମାନେ "ଉତ୍କଳ ଦିବସ ଓ ମଧୁସୂଦନ ଜୟନ୍ତୀ" ପ୍ରତ୍ୟେକ ବର୍ଷ ପାଳନ କରି ଆସୁଅଛୁ । ଆଜି ସରକାରଙ୍କଠାରୁ ଆରମ୍ଭ କରି ଅନ୍ୟ ବହୁ ଅନୁଷ୍ଠାନ ଏହି ଦିବସକୁ ପାଳନ କରୁଛନ୍ତି । ଏଥିରୁ ଅନୁମାନ କରି ପାରୁଥିବେ ଯେ ଆମର ଆଶା କିପରି ସଫଳ ହୋଇ ପାରିଛି ।

ମଧୁବାବୁଙ୍କ ଉପରେ ସଂଘ ୭ ବର୍ଷ କାର୍ଯ୍ୟକରି ମଧ୍ୟ ତାଙ୍କର ବ୍ରୋଞ୍ଜ ପ୍ରତିମୂର୍ତ୍ତି ସ୍ଥାପନ କରିବା ପାଇଁ ବହୁ ବାଧାବିଘ୍ନ ସହିବାକୁ ପଡ଼ିଛି । ଅତେଓଡ଼ିଆମାନେ ଏଥିପାଇଁ ମଧ୍ୟ କମ ଚେଷ୍ଟା କରି ନାହାନ୍ତି । ଶ୍ରୀଯୁକ୍ତ ଶ୍ରୀନିବାସ ରଥ I.A.S. ଏଠାରେ ସେ ସମୟରେ ନଥିଲେ, ଏହା କରାଇବା ସମ୍ଭବ ହୋଇପାରି ଥାଆନ୍ତା କି ନା ସନ୍ଦେହ ଥିଲା । ସେ ମହାଶୟ ଆମ୍ଭମାନଙ୍କୁ ଉତ୍ସାହ ଦେବା ସଙ୍ଗେ ସଙ୍ଗେ ଆମକୁ ବହୁ ଭାବରେ ସାହାଯ୍ୟ କରିଛନ୍ତି । ତେଣୁ ତାଙ୍କୁ ଅନୁଷ୍ଠାନ କେବେହେଲେ ଭୁଲି ପାରିବ ନାହିଁ । ସେହି ରାସ୍ତାର ନାମ "ମଧୁସୂଦନ ମାର୍ଗ" ଓ ମାର୍କେଟର ନାମ "ମଧୁସୂଦନ ମାର୍କେଟ" ରଖାଯାଇଛି ।

ଆମରି ପ୍ରଚେଷ୍ଟାରେ ସ୍ମାରକୀ ଡାକ ଟିକଟର ପ୍ରଚଳନ ଓ ଏପ୍ରିଲ ଏକ ସରକାରୀ ଛୁଟି ଦିବସରୂପେ ଘୋଷିତ ହୋଇପାରିଛି ।

ଉତ୍କଳ ଗୌରବ ମଧୁସୂଦନ ଦାସଙ୍କର ସ୍ମୃତି ପୂଜା ପାଇଁ ଦାମୀ କାଗଜରେ ମଧୁବାବୁଙ୍କର "ପ୍ରତିକୃତି" ଛପାଇ ସର୍ବସାଧାରଣଙ୍କୁ ଓ ବହୁଳ ଅନୁଷ୍ଠାନକୁ ଯୋଗାଇ ଦିଆଯାଇଛି । ଉକ୍ତ ବରପୁତ୍ରଙ୍କ ସ୍ମୃତିକୁ ଉଦ୍‌ଜୀବିତ କରିବା ପାଇଁ ଏହା କରାଯାଇଛି ।

ମଧୁସୂଦନଙ୍କର ଦୁଇଟି ପୁସ୍ତକ ଇଂରାଜୀରେ ପ୍ରକାଶ କରିବାର ଚେଷ୍ଟାକରି ପ୍ରଥମ ଖଣ୍ଡକ ପ୍ରକାଶ କରାଯାଇଛି ୧୯୮୦ ସାଲରେ । ତା'ର ନାମ ଦିଆଯାଇଛି "ମଧୁସୂଦନ ଦାସ ଦ ଲେଜିସ୍‌ଲେଟର (Madhusudan Das the Legislator) । ଏହାକୁ ସମ୍ପାଦନା କରିଛନ୍ତି ৺ ଡଃ ନବୀନ କୁମାର ସାହୁ ଓ ଡଃ ପ୍ରବୋଧ କୁମାର ମିଶ୍ର । ଦ୍ୱିତୀୟ ଖଣ୍ଡଟି ପ୍ରକାଶ ଅପେକ୍ଷାରେ ଅଛି । ଏହାର ନାମ "ମଧୁସୂଦନ ଦାସ ଦ ଲିଡ଼ର" (Madhusudan Das the Leader) ।

ଏହିପରି ଭାବରେ "ପ୍ରଗତି ଉତ୍କଳ ସଂଘ" ମଧୁବାବୁଙ୍କ ସ୍ମୃତି ଉଦ୍ଦେଶ୍ୟରେ ନାନା ପ୍ରକାର କାର୍ଯ୍ୟ କରୁଛି । ୧୯୬୮ ମସିହାରୁ ପ୍ରତ୍ୟେକ ବର୍ଷ ରଚନା ଓ ବକ୍ତୃତା

ପ୍ରତିଯୋଗିତା କରି ହାଇସ୍କୁଲ ଛାତ୍ର ଛାତ୍ରୀଙ୍କୁ ପୁରସ୍କାର ପ୍ରଦାନ କରୁଅଛୁ । ଆଦିବାସୀ ଗ୍ରାମାଞ୍ଚଳରେ ସୁପରିଚିତ କରାଇବା ପାଇଁ ପ୍ରତ୍ୟେକ ବର୍ଷ ଆଦିବାସୀ ଛାତ୍ର-ଛାତ୍ରୀଙ୍କୁ "ମଧୁସୂଦନ ସ୍ମୃତି ପୁରସ୍କାର ଦିଆଯାଉଅଛି ।

ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ମଧୁବାବୁଙ୍କ ନାମରେ ସ୍ୱର୍ଣ୍ଣ ପଦକ (Gold Medal) ଦେବା ଦୀର୍ଘ ୧୨ ବର୍ଷ ହେଲା ଟଙ୍କା ଦିଆଯାଇଛି ଓ ବ୍ରହ୍ମପୁର ବିଶ୍ୱବିଦ୍ୟା-ଳୟକୁ ୫ ବର୍ଷ ହେଲା ଟଙ୍କା ଦିଆଯାଇଥିଲେ ମଧ୍ୟ ଏଥିପ୍ରତି କୌଣସି କାର୍ଯ୍ୟାନୁଷ୍ଠାନ କରାଯାଇ ନାହିଁ । ସେଥିପାଇଁ ଆମ୍ଭେମାନେ ବଡ଼ ଦୁଃଖିତ ।

୧୯୭୩ ମସିହାରୁ ସଂଘ ଖଣ୍ଡିଏ ଉପଯୁକ୍ତ ସ୍ଥାନ ପାଇବା ପାଇଁ ବହୁଚେଷ୍ଟା କରି ଆସୁଅଛୁ । ଯେଉଁଠାରେ କି ସଂଘ "ମଧୁ ମଣ୍ଡପ" କରିବା ପାଇଁ ସ୍ଥିର କରିଛୁ । ମାତ୍ର ଦୁଃଖର ବିଷୟ ସରକାର କିମ୍ବା ରାଉରକେଲା ଷ୍ଟିଲ କର୍ତ୍ତୃପକ୍ଷ କେହି ହେଲେ ଏଥିପାଇଁ ସାହାଯ୍ୟ କରିବା ପାଇଁ ଚେଷ୍ଟିତ ନୁହନ୍ତି । କାରଣ କର୍ତ୍ତୃପକ୍ଷ ଯେଉଁ ଗୃହ ଦେଇଛନ୍ତି ତାହା ପରିସର ଭିତରେ ସଂଘ ପକ୍ଷରେ ଆଉ ଅଧିକ କିଛି କାର୍ଯ୍ୟ ହାତକୁ ନେବା ସମ୍ଭବ ନୁହେଁ । ସଂଘର ପାଠାଗାର ଦିନକୁ ଦିନ ବଢ଼ି ବଢ଼ି ଚାଲିଛି । ଏଥିପାଇଁ ସଂଘକୁ ନିଜର ଗୃହ ତିଆରି କରିବା ପାଇଁ ଉପଯୁକ୍ତ ସ୍ଥାନ ଦେବା ନିହାତି ଦରକାର ।



# ପ୍ରତିମୂର୍ତ୍ତି : ମଧୁସ୍ମୃତି

**ରାଧାନାଥ ରଥ**

ପୂଜା ପୂଜା କାର୍ଯ୍ୟକ୍ରମ । 'ପ୍ରଗତି ଉତ୍କଳ ସଂଘ' ଆଗୁଆ ସବୁବେଳେ । ସବୁ ସ୍ଥାନରେ… ସବୁ କ୍ଷେତ୍ରରେ । କେଉଁ ମନୀଷୀଙ୍କର ଜୟନ୍ତୀ ପାଳିତ ହେବ, କାହା ନାମରେ ସ୍ମାରକୀ ଡ଼ାକ ଟିକଟ ବାହାରିବ । ରାସ୍ତା, ଛକର ନାମ କରଣ କରି କେଉଁ ଯୁଗ-ପୁରୁଷଙ୍କୁ ସ୍ମୃତି ଅର୍ଘ୍ୟ ଅର୍ପଣ କରାଯିବ, ସେ ଦିଗରେ 'ସଂଘ' ସବୁବେଳେ ସଚେତନ… .. ସବୁ କାର୍ଯ୍ୟରେ ଯତ୍ନବାନ ।

ଉତ୍କଳ ଗୌରବ ମଧୁସୂଦନ ଦାସ ଜଣେ ବ୍ୟକ୍ତି ନୁହଁନ୍ତି, ଏକ ଅନୁଷ୍ଠାନ । ସ୍ୱତନ୍ତ୍ର ଓଡ଼ିଶା ଓ ମଧୁବାବୁ ପରସ୍ପର ଅଙ୍ଗାଅଙ୍ଗୀ ଭାବେ ଜଡ଼ିତ । ସାମାଜିକ, ଅର୍ଥ ନୈତିକ ଓ ରାଜନୈତିକ ଚେତନା ଜାଗରଣ ପାଇଁ ମଧୁବାବୁ ନିଜକୁ ତିଳତିଳ କରି ଜଳାଞ୍ଜଳି ଦେଇଥିଲେ । ଶିଳ୍ପ ଜାଗରଣ ତୋଳିଥିଲେ । 'ପ୍ରଗତି ଉତ୍କଳ ସଂଘ' ଏହାର ମର୍ମ ହୃଦୟଙ୍ଗମ କରିଥିଲେ । ସର୍ବ ପ୍ରଥମେ ଆରମ୍ଭ କରିଥିଲା—"ଉତ୍କଳ ଦିବସ ଓ ମଧୁସୂଦନ ଜୟନ୍ତୀ" ଉତ୍ସବ । ରାଉରକେଲାରେ…. …୧୯୭୮ ମସିହା ଏପ୍ରିଲ ପହିଲାରେ ।

୧୯୭୪ ମସିହା ଉତ୍ସବ ମଣ୍ଡପରେ ଏକ ବଳିଷ୍ଠ ପ୍ରସ୍ତାବ । ମଧୁବାବୁଙ୍କର ସ୍ମୃତି ପୂଜା ପାଇଁ ରାଉରକେଲାରେ ତାଙ୍କର ଗୋଟିଏ ବ୍ରୋଞ୍ଜ ପ୍ରତିମୂର୍ତ୍ତି ସ୍ଥାପନ କରାଯାଉ । ଜନ ସମୁଦ୍ର ଭିତରେ ଅସରନ୍ତି କରତାଳି …. ଉଲ୍ଲାସ ଉନ୍ମାଦନା । ପ୍ରସ୍ତାବ ଗୃହୀତ ହେଲା । ଗୁରୁଦାୟିତ୍ୱ କନ୍ଧ ପଡ଼ିଲା 'ସଂଘ' ଉପରେ । ସାମାନ୍ୟ କାର୍ଯ୍ୟ ନୁହେଁ ।

ବହୁବାର ଆଲୋଚନା ପର୍ଯ୍ୟାଲୋଚନା ହେଲା 'ସଂଘ' ବୈଠକରେ । ବାମନ ହାତରେ ଚନ୍ଦ୍ରର ଆସ୍ଫାଳନ । 'ସଂଘ'ର ଆର୍ଥିକ ଦିଗ ସୀମିତ । ଏଥିପାଇଁ ଉପଯୁକ୍ତ ସ୍ଥାନ ଦରକାର । ମିଳିବା କଷ୍ଟକର । ସହରର ଅଧିକାଂଶ ଜାଗା ଇସ୍ପାତ କାରଖାନା ଅଧିକାରୀଙ୍କ ଅଧିକୃତ । ଓଡ଼ିଶା ସରକାର ଅସହାୟ ସେଠି । ଜନବହୁଳ ଅଞ୍ଚଳରେ ସେମିତି ସୁବିଧା ଜାଗା ନାହିଁ । କେଉଁଠି କଦବା ହାତେ ଭୂଖଣ୍ଡେ ଆଇପାରେ । ସେଥିପାଇଁ ହୃଦୟ ଦରକାର । କଲମ ମୁନର ତାକତ ଦରକାର ।

ଯେଉଁ ସମସ୍ତଙ୍କ ସହରଲରେ ଏ ଚିନ୍ତା ଜନ୍ମିଗଲା, ସେତେବେଳେ ସାରା ଓଡ଼ିଶାରେ ମଧୁବାବୁଙ୍କର ବ୍ରୋଞ୍ଜ ପ୍ରତିମୂର୍ତ୍ତି କେଉଁଠି ହେଲେ ନାହିଁ । କେବଳ ତାଙ୍କର କର୍ମସ୍ଥଳୀ ଏବର ଶୈଳବାଳା ମହିଳା କଲେଜ ପ୍ରାଙ୍ଗଣରେ ଗୋଟିଏ ମାର୍ବଲ୍ ପ୍ଲାଷ୍ଟ ଆବକ୍ଷ ପ୍ରତିମୂର୍ତ୍ତି ଥିଲା, କଟକରେ । ଓଡ଼ିଶାରେ ବ୍ରୋଞ୍ଜ ପ୍ରତିମୂର୍ତ୍ତି କହିଲେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କର ଥିଲା କଟକର ଗୋପବନ୍ଧୁ ପାର୍କରେ ଓ ଜାତୀୟ କଂଗ୍ରେସ ଅଧିବେଶନ ବସିଥିଲାବେଳେ ଅନ୍ୟଟି ସ୍ଥାପିତ ହୋଇଥିଲା ଭୁବନେଶ୍ୱରସ୍ଥ ଗୋପବନ୍ଧୁ ନଗରରେ । ବି.ଜେ.ବି କଲେଜ ପ୍ରାଙ୍ଗଣରେ ଥିଲା ଘୋଡ଼ା ଉପରେ ବକସି ଜଗବନ୍ଧୁଙ୍କର ଅନ୍ୟ ଏକ ବ୍ରୋଞ୍ଜ ପ୍ରତିମୂର୍ତ୍ତି । ବାକି କେଉଁଠି କେବେ ଯେଉଁ ମୂର୍ତ୍ତିମାନ ଥିଲା, ତାହା ମୁଗୁନି ବା ମାର୍ବଲ ପଥରରେ·····ପ୍ଲାଷ୍ଟ ଆକାରରେ ।

ଏ ମୂର୍ତ୍ତି କିନ୍ତୁ ପ୍ଲାଷ୍ଟ ହେବନି । ମଧୁବାବୁଙ୍କର ଲାଇଫ୍ ସାଇଜଠାରୁ ଯେପରି ବଡ଼ ହୁଏ । ଯାହା ହେବ ଦେଖାଯିବ । 'ସଂଘ'ରେ ସଦସ୍ୟମାନଙ୍କର ଭୀଷ୍ମ ପ୍ରତିଜ୍ଞା । ଆଗ କାର୍ଯ୍ୟ ଆରମ୍ଭ ହେଉ । ପଛଘୁଞ୍ଚା ବୀରର ଧର୍ମ ନୁହେଁ । ପାଣ୍ଠି ମାତ୍ର ପାଞ୍ଚ ହଜାର ହାତରେ । ଆଗ କାର୍ଯ୍ୟ ଆରମ୍ଭ ହେଉ । କାନ୍ଧରେ ପଡ଼ିଲେ ବଜାଇ ଶିଖନ୍ତି । ପ୍ରଥମେ ଡରିଗଲେ ଆଗେଇ ପାରିବା ନାହିଁ । ସାହସ ଦରକାର । ସଭ୍ୟମାନଙ୍କର ଆତ୍ମ ପ୍ରତ୍ୟୟ କ୍ରମଶଃ ଗଭୀରତର ହୁଏ ।

ତା ୨୬-୮-୧୯୭୪ ମସିହା ଏକ ସ୍ମରଣୀୟ ଦିବସ । ସନ୍ଧ୍ୟାରେ, 'ସଂଘ' ଗୃହରେ, କାର୍ଯ୍ୟକାରୀ ବୈଠକରେ ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ·····ଏକ ଐତିହାସିକ ସିଦ୍ଧାନ୍ତ । କାର୍ଯ୍ୟକ୍ରମକୁ ଏକ ନିର୍ଦ୍ଦିଷ୍ଟ ଓ ସୁନିୟନ୍ତ୍ରିତ ସ୍ତରରେ ଆଗେଇ ନେବାକୁ ସର୍ବ-ସମ୍ମତିକ୍ରମେ ଏକ ସବ୍-କମିଟି ଗଢ଼ାଗଲା । ଏହା "ମୂର୍ତ୍ତି ନିର୍ମାଣ କମିଟି" ନାମରେ ନାମିତ ହେଲା । ଏହି କମିଟିରେ 'ସଂଘ'ର ଉପସଭାପତି ଶ୍ରୀଯୁକ୍ତ ନାରାୟଣ ଆଚାର୍ଯ୍ୟ ଚେୟାରମ୍ୟାନ ରହିଲେ । କମିଟିର ସଭ୍ୟମାନେ ହେଲେ କୁମାରୀ ନିରୁପମା ପଟ୍ଟନାୟକ, ଶ୍ରୀ ରାଧାନାଥ ରାଉତ ଓ ଶ୍ରୀ ହରିହର ମହାପାତ୍ର । ଶ୍ରୀ ରମେଶ ଚନ୍ଦ୍ର ମହାନ୍ତି ହେଲେ ଆବାହକ । ବୈଠକରେ ୫୭୫,୦୦୦/ ଖର୍ଚ୍ଚର ଏକ ଅଟକଳ ପ୍ରସ୍ତୁତ କରାଗଲା ଓ ୧୯୭୬ ମସିହା ଏପ୍ରିଲ ପହିଲା ମଧ୍ୟରେ ଯୋଜନାଟି ପୂର୍ଣ୍ଣାଙ୍ଗ କରିବା ନିମନ୍ତେ ପଦକ୍ଷେପ ନେବାକୁ ସ୍ଥିର ହେଲା ।

ମୂର୍ତ୍ତି ନିର୍ମାଣ କମିଟିର ଏକ ସର୍ବସାଧାରଣ ବୈଠକ ଆହୂତ ହେଲା । ଏଥିପାଇଁ ସମସ୍ତଙ୍କର ଅକୁଣ୍ଠ ସାହାଯ୍ୟ ଓ ସହଯୋଗ ଦରକାର । ବୈଠକରେ ବିଭିନ୍ନ ଅନୁଷ୍ଠାନର ପ୍ରତିନିଧି, ସାମ୍ବାଦିକ, ଶିକ୍ଷାବିତ, ଚିନ୍ତାଶୀଳ ବୁଦ୍ଧିଜୀବୀ, ବ୍ୟବସାୟୀ, ଶିଳ୍ପ

ପଣ୍ଡା, ଗ୍ରାମ, ଶ୍ରମିକ ଯୋଗଦେଇ ସାଧୁ ଉଦ୍ୟମକୁ ପ୍ରଶଂସା କଲେ । ଏହି ମହତ କାର୍ଯ୍ୟର ସଫଳତା ପାଇଁ ପ୍ରତ୍ୟେକ ମୁକ୍ତ ହସ୍ତରେ ଦାନ କରିବାକୁ ଏକ ନିବେଦନ ପତ୍ର ପ୍ରକାଶ ପାଇଲା । ଯେଉଁ ସଜ୍ଜନମାନଙ୍କ ସ୍ୱାକ୍ଷରରେ ଏହା ବାହାରିଲା ସେମାନେ ହେଲେ ସର୍ବଶ୍ରୀ ନରେଶ ଚନ୍ଦ୍ର ନାୟକ, ଅଗଣି ଚନ୍ଦ୍ର ଲେଙ୍କା, ହୃଷିକେଶ ରାୟ, ଅବଦୁଲ ଗଫୁର, ପୀତାମ୍ବର ମିଶ୍ର, ଶରତ ଚନ୍ଦ୍ର ଭଞ୍ଜାଣି, କାଶି ପ୍ରସାଦ ଝୁନଝୁନୱାଲା, ଦେବେନ୍ଦ୍ର ନାରାୟଣ ପଣ୍ଡା, ରଜନୀକାନ୍ତ ଦାସ, ନାରାୟଣ ଆଚାର୍ଯ୍ୟ, ଗୁଣନିଧି ମହାପାତ୍ର, ରାଜକିଶୋର ସାମନ୍ତରାୟ, ପ୍ରଫେସର ସୋମନାଥ ମିଶ୍ର, ଡକ୍ଟର ଅମିତାଭ ମହାନ୍ତି, କୁମାରୀ ନିରୁପମା ପଟ୍ଟନାୟକ, ରାଧାନାଥ ରାଉତ, ରମେଶ ଚନ୍ଦ୍ର ମହାନ୍ତି, ହରିହର ମହାପାତ୍ର ।

ରାଉରକେଲାର ତତ୍କାଳୀନ ଅତିରିକ୍ତ ଜିଲାପାଳ ଶ୍ରୀଯୁକ୍ତ ଶ୍ରୀନିବାସ ରଥ (IAS) ଏ କାର୍ଯ୍ୟକୁ ଆଗେଇ ନେବାକୁ ଏପରି ଉତ୍ସାହ ଓ ସହଯୋଗ ପ୍ରଦାନ କଲେ ଯେ "ମୂର୍ତ୍ତି ନିର୍ମାଣ କମିଟି" ଅପୂର୍ବ ଦମ୍ଭ ଓ ଆତ୍ମ ବିଶ୍ୱାସ ନେଇ ଆଗେଇ ଚାଲିଲା ।

ଶୁଣିଥିଲେ ଆଲୋଚନା । ମଧୁବାବୁଙ୍କର ବ୍ରୋଞ୍ଜ ପ୍ରତିମୂର୍ତ୍ତି ସ୍ଥାପିତ ହେବ । ସଭ୍ୟମାନଙ୍କର ଅକ୍ଳାନ୍ତ ଉଦ୍ୟମ । ସହରର ଗଳିକନ୍ଦି, ହାଟ ବଜାରରେ ଦଳକୁଦଳ କର୍ତ୍ତବ୍ୟରତ । ଦାନ ସଂଗ୍ରହ ଚାଲିଛି । ଅକୁଣ୍ଠ ସାହାଯ୍ୟ ସମର୍ଥନ । ସାଧାରଣ ମଜୁରିଆଠାରୁ ଶିଳ୍ପପତି ଯାଏ ।

ଅଭିଜ୍ଞ ଶିଳ୍ପୀ ଦରକାର । ପତ୍ର ପତ୍ରିକାରେ ବିଜ୍ଞାପନ, ଟେଲିଫୋନରେ କଥା ବାର୍ତ୍ତା ..... ଚିଠିପତ୍ର ଆଦାନ ପ୍ରଦାନ । ଶେଷକୁ ଉପଯୁକ୍ତ ବିବେଚିତ ହେଲେ ଶିଳ୍ପୀ ଶ୍ରୀଯୁକ୍ତ ବିପ୍ରଚରଣ ମହାନ୍ତି । ସେ ଖଲ୍ଲିକୋଟ ସରକାରୀ "ଆର୍ଟ ଏବଂ କ୍ରାଫ୍ଟ" ସ୍କୁଲର ସ୍ୱନାମଧନ୍ୟ ଅଧ୍ୟାପକ । ତାଙ୍କ ସହିତ ତା ୨୮-୨-୭୫ରିଖରେ ଚୁକ୍ତି ସ୍ୱାକ୍ଷରିତ ହେଲା ଓ ଅଗ୍ରୀମ ସ୍ୱରୂପ ପାଞ୍ଚହଜାର ଟଙ୍କା ଦିଆଗଲା । ସେ ସରକାରୀ ଚାକିରିଆ । ଏ କାର୍ଯ୍ୟପାଇଁ ବିଭାଗୀୟ ଅନୁମତି ଦରକାର । ତା' ମଧ୍ୟ ହେଲା । ଚିଠି ନଂ IVCA-26/74/1629 ତା ୧-୪-୭୫ ଦ୍ୱାରା ତାଙ୍କୁ ସରକାରଙ୍କ ସ୍ୱତନ୍ତ୍ର ଅନୁମତି ମିଳିଲା ମୂର୍ତ୍ତି ନିର୍ମାଣ କାର୍ଯ୍ୟ କରିବାକୁ ।

ହେଲା କରିବାକୁ ବେଳ ନାହିଁ । ଖଲ୍ଲିକୋଟରେ ମୂର୍ତ୍ତିଗଢା ଚାଲିଲା । ଏଣେ ଅର୍ଥ ସଂଗ୍ରହ ହେଉଛି ଦ୍ୱାର ଦ୍ୱାରବୁଲି । ଅକ୍ଳାନ୍ତ ପରିଶ୍ରମ 'ସଂଘ'ର ସଦସ୍ୟମାନଙ୍କର । ଏ ଦାୟିତ୍ୱ ସବୁଠାରୁ ଅଧିକ, ଗୁରୁତ୍ୱ । ଘରୁ ସକାଳୁ ବାହାରନ୍ତି କାରଖାନାକୁ । ସେଠାରେ ଆଠ ନ'ଘଣ୍ଟା କାମସାରି ସମସ୍ତେ ଜୁଟନ୍ତି ରାଉରକେଲା ବସଷ୍ଟାଣ୍ଡ ନିକଟରେ

ସନ୍ଧ୍ୟାରେ । ସେଠାରୁ ଆରମ୍ଭ ହୁଏ ଅର୍ଥ ସଂଗ୍ରହ । ଟଙ୍କା ନ ହେଲେ କାମ ଅଧା-ପଡ଼ିବ । ଲୋକହସା ହେବାକୁ ପଡ଼ିବ । ଏଥି ସହିତ ଜଡ଼ିତ ଅନୁଷ୍ଠାନର ମର୍ଯ୍ୟାଦା ଓ ମଧୁବାବୁଙ୍କର ସମ୍ମାନ । ଘରକୁ ଫେରୁ ଫେରୁ ରାତି ଦଶଟା କି ଏଗାରଟା । ଦିନେ ଦିନେ ବାରଟା ବି ବାଜିଯାଏ । କାହାରି ମନରେ କ୍ଳାନ୍ତି ନାହିଁ, ବିରକ୍ତି ଭାବ ନାହିଁ । ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ, ଏକ ଜାତୀୟ ଉନ୍ମାଦନାରେ ସମସ୍ତେ ଉଦ୍‌ବେଳିତ········ ଉଦ୍‌ଭାସିତ ।

ରାଉରକେଲା ବଜାର ଅଞ୍ଚଳର ବନ୍ଧୁ ବାନ୍ଧବଙ୍କର ଅଯାଚିତ ସାହାଯ୍ୟ ସହାନୁଭୂତି ଭୁଲିବାର ନୁହେଁ । ସର୍ବଶ୍ରୀ ହୃଷିକେଶ ରାୟ, ଧରମପାଳ ଗୁପ୍ତା, କେଦାର ମଲ୍ଲି, କୁନ୍ଦନ ସିଂ, ମାରୁଣି ଦ୍ୱିବେଦୀ, ବଂଶୀଧର ମହାପାତ୍ର, ପ୍ରବୋଧ କୁମାର ପତି, ଏ.ଏନ୍. ପଟେଲ ପ୍ରଭୃତିଙ୍କ ଅବଦାନ ଏଠାରେ ନିଶ୍ଚୟ ସ୍ମରଣୀୟ ।

ଚପରାଶି ଓ ଅଫିସର, ଶ୍ରମିକ ଓ ଇଞ୍ଜିନିୟର, ଦିନ ମଜୁରିଆ ଓ ଶିଳ୍ପପତି ସମସ୍ତେ ଗୋଟିଏ ସୂତାରେ ଯେପରି ବନ୍ଧା । ଏଠାରେ ବାଛ ବିଚାର ନାହିଁ । କାହାରି ମନରେ ଭେଦଭାବ ନାହିଁ । ବେଳେ ବେଳେ ଲଘୁ ପରିହାସ । ରମେଶ ବାବୁଙ୍କ ଲନ୍ଦି ଫନ୍ଦି କରିବାକୁ ବହୁତ ପଇସା ଦରକାର", "ତ୍ରିପାଠୀ ବାବୁଙ୍କ ସେଓ ବଡ଼ିଲେ ଗଣ୍ଡିଆ" ଇତ୍ୟାଦି । 'ସଂଘ'ର ଯେଉଁ ସଭ୍ୟମାନେ ଏ କାର୍ଯ୍ୟରେ ବିଶେଷଭାବେ ଯୋଗଦାନ କରିଥିଲେ, ସେମାନଙ୍କ ନାମାଙ୍କନ ଏଠାରେ ପ୍ରଣିଧାନ ଯୋଗ୍ୟ । ସର୍ବଶ୍ରୀ ସତ୍ୟନାରାୟଣ ମହାନ୍ତି, ସତ୍ୟନାରାୟଣ ମହାନ୍ତି (ଗାନ୍ଧିବାବୁ), ରାଘବ ଚରଣ ମହାନ୍ତି, ବିରୂପାକ୍ଷ ପାଢ଼ୀ, ତରଣୀସେନ ସାହୁ, କାହ୍ନୁ ଚରଣ ପଟ୍ଟନାୟକ, ଗଜେନ୍ଦ୍ର ପ୍ରସାଦ ତ୍ରିପାଠୀ, ଦିବାକର ମହାନ୍ତି, ଅଭିମନ୍ୟୁ ଦାସ, ବି. ବି. ରାୟ, ନାରାୟଣ ପ୍ରସାଦ ମହାନ୍ତି, କ୍ଷିରୋଦ ଚନ୍ଦ୍ର ରାୟ, ଅଖିଳ କୁମାର ସାମଲ, ବୃନ୍ଦାବନ ନାୟକ, ବିଦ୍ୟାଧର ଜେନା ଓ ଆହୁରି ଅନେକ । ଯୁବ ସଦସ୍ୟ ଶ୍ରୀ ରାଧାମୋହନ ନାୟକ, ଶ୍ରୀ କଣୋଶ୍ୱ ମୋହନ କର ପ୍ରଭୃତି ମଧ୍ୟ ଅକ୍ଲାନ୍ତ ଶ୍ରମ ସ୍ୱୀକାର କରିଥିଲେ । ଦଳଗତ ଭାବନା ସାଫଲ୍ୟ ଆଣିଛି ।

ରାଉରକେଲା ରେଳଷ୍ଟେସନ ସାମନା । ବସଷ୍ଟାଣ୍ଡ ପାଖ ଛକ । ସବୁ ଦୃଷ୍ଟିରୁ ଉପଯୁକ୍ତ ସ୍ଥାନ ମୂର୍ତ୍ତି ସ୍ଥାପନା ନିମିତ୍ତ । ସିଭିଲ ଟାଉନସିପ୍ ବହିର୍ଭୂତ ଅଞ୍ଚଳ ପରିଷଦ କର୍ତ୍ତୃପକ୍ଷ ତା ୧୪-୮-୭୪ ରିଖରେ ସଦସ୍ୟ ପତ୍ରଦ୍ୱାରା ଏ ସ୍ଥାନଟିକୁ ମଞ୍ଜୁରି ଦେଲେ । ଆଉ ଡେରି ନାହିଁ । କାର୍ଯ୍ୟ ଆରମ୍ଭ ହେବ ।

ତା ୧୬-୪-୭୭ରିଖର ଶୁଭ ସକାଳ । ରାଉରକେଲାର କଷ୍ଟମ୍ ଆଣ୍ଡ୍ ଉତ୍ପାଦ ବିଭାଗର ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ବି. ଏନ୍. ଦାସ (IRS) କୋଡ଼ିଆ ଝାଡ଼ି ଆନୁଷ୍ଠାନିକ ଭାବେ ମାଟି ଖନନ କାର୍ଯ୍ୟ ଆରମ୍ଭ କଲେ । ଟ୍ରାଫିକ ଝିଭୂଜ ନିର୍ମିତ ହେବ । ସେଠାରେ ପ୍ରତିମୂର୍ତ୍ତି ବସିବ ।

ସିଭିଲ ଟାଉନ୍‌ସିପର ବିଜ୍ଞାପିତ ଅଞ୍ଚଳ ପରିଷଦ ଏ ଦାୟିତ୍ୱ ନେଲେ । ଆବଶ୍ୟକୀୟ ଅର୍ଥ ମଞ୍ଜୁର କଲେ । ପି.ଡବ୍ଲୁ.ଡ଼ି ବିଭାଗ ଦ୍ୱାରା ରାସ୍ତାର ନବୀକରଣ କରାଗଲା ରେଲଷ୍ଟେସନଠାରୁ ଟ୍ରାଫିକ ଛକଯାଏ । କଣ୍ଟ୍ରାକ୍ଟର ଶ୍ରୀ ଶମ୍ଭୁନାଥ ପ୍ରସାଦଙ୍କର ଧନରାଶି ନାହିଁ, ଭଙ୍ଗା ଗଡା ଚାଲିଛି । ମାଟି ତଳେ ମୋଟା ପାଇପ ସମସ୍ୟା । ସ୍ଥାନ ବଦଳିବ ନାହିଁ । ପାଇପ ନିରାପଦ ରହିବାର ବ୍ୟବସ୍ଥା କରାଯିବ । ସରକାରଙ୍କର ଟ୍ରାଫିକ୍ ନିୟମ ପ୍ରତି ମଧ୍ୟ ଦୃଷ୍ଟି ଦିଆଯିବ । ଲୁହାଛଡ଼, ସିମେଣ୍ଟ, ଇଟା, ଗୋଟି, ବାଲିର ସମାହାର । ଇଞ୍ଜିନିୟରିଂ ବିଦ୍ୟାର ବିସ୍ମୟ ପ୍ରକାଶ । ମୂର୍ତ୍ତି ପେଡେଷ୍ଟାଲ ଗଢ଼ିଉଠୁଛି । ପେଡେଷ୍ଟାଲ ଡ଼ିଜାଇନ, ଲୁହା ଗ୍ରିଲର ଡ଼ିଜାଇନ୍ ଓ ନାମ ଫଳକ ଲେଖା ଶ୍ରୀ ରାଧାନାଥ ରାଉତଙ୍କର ନିଜସ୍ୱ ।

ହାତରେ ବହୁତ କାମ । ହେଲା କଲେ ଭେଲା ବୁଡ଼ିବ । ତା ୬-୪ ୭୭ରିଖରେ ଲୁହା ଗ୍ରିଲ ତିଆରି ପାଇଁ "ରାଉରକେଲା ଫେବ୍ରିକେଶନ"ରେ ଅର୍ଡ଼ର ଦିଆଗଲା । ପେଡେଷ୍ଟାଲରେ ମାର୍ବଲ ଟାଇଲ୍ସ ଦିବାକୁ ଓ ନାମ ଫଳକ ଖୋଦେଇ କରିବାକୁ ତା ୨୬ ୪-୭୭ରିଖରେ କଲିକତାର ବିଶିଷ୍ଟ "ମାର୍ବଲ କମ୍ପାନୀ"ରେ ବରାଦ ଦିଆଗଲା । ଉନ୍ମୋଚନ ଉତ୍ସବ ଉପଲକ୍ଷେ "ମଧୂସୁଦନ" ସ୍ମାରକୀ ଛପା ହେବାକୁ "କୋଣାର୍କ ପ୍ରିଣ୍ଟିଂ ଓାର୍କସ" ପ୍ରେସ୍‌ରେ ଦାଖଲ କରାଗଲା ପାଣ୍ଡୁଲିପି ।

କେଉଁଠି ମୂର୍ତ୍ତି ତିଆରି ଚାଲିଥାଏ । କିସ୍ତିଓ୍ୱାରି ଟଙ୍କା ଦିଆ ଯାଉଥାଏ । ଯାହା ହାତକୁ ଆସିଲା । ତା ୨୩ ୫-୭୫ରିଖରେ ଆମର ପ୍ରତିନିଧି ସର୍ବଶ୍ରୀ ନରେଶ ଚନ୍ଦ୍ର ନାୟକ, ନାରାୟଣ ଆଚାର୍ଯ୍ୟ, ରମେଶ ଚନ୍ଦ୍ର ମହାନ୍ତି ଓ ରାଧାନାଥ ରାଉତ ଖଲ୍ଲିକୋଟ ଯାଇ ମୂର୍ତ୍ତିର "କ୍ଲେ ମଡ଼େଲ" ପରିଦର୍ଶନ କଲେ । କ୍ଲେ ମଡ଼େଲ ପରେ "ପ୍ଲାଷ୍ଟର ଅଫ୍ ପ୍ୟାରିସ ମଡ଼େଲ" । ପୁଣି ତା ୧୭-୯-୭୫ରିଖ ବିଶ୍ୱକର୍ମା ପୂଜା ଦିନ ଆମର ଉକ୍ତ ପ୍ରତିନିଧିମାନେ ଖଲ୍ଲିକୋଟ ଗଲେ ପରିଦର୍ଶନରେ । "ପ୍ଲାଷ୍ଟର ଅଫ୍ ପ୍ୟାରିସ ମଡ଼େଲ" ଠିକ୍ ଅଛି । ସମ୍ପୂର୍ଣ୍ଣ ମୂର୍ତ୍ତି ନିର୍ମାଣ ଅଗ୍ରଗତିରେ । ତା'ପରେ "ଓ୍ୱାକସ ମଡ଼େଲ", ବ୍ରୋଞ୍ଜ ଢ଼ଳେଇ, ଓ୍ୱେଲଡ଼ିଂ......ଫିନିସିଙ୍ଗ......କଲରିଂ ଇତ୍ୟାଦି କାମ । ସମୟ ଲାଗିବ ।

ଏଣେ କଲିକତାରୁ ମାର୍ବଲ କାରିଗରମାନେ ଆସି ପହଞ୍ଚି ଗଲେଣି । ଫ୍ରିଲଗୁଡ଼ିକ ଆସି ଜମା ହେଲଣି ଲାଗିବାକୁ । ପ୍ରତି ଖଣ୍ଡକୁ ୫୨୧୦ଙ୍କା ହିସାବରେ ୫୦ ଖଣ୍ଡ ୭% ଟିକସ ଅଲଗା । ଫିଲିପ୍ସ ଇଣ୍ଡିଆ କମ୍ପାନୀର ବିଶେଷଜ୍ଞମାନେ ଉପସ୍ଥିତ ଆଲୋକ ସଜାଇବାକୁ......ବତୀ ଲଗାଇବାକୁ ।

ତା ୧୪-୭-୭୫ରିଖ ଦିନ ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବିଭାଗ ନିର୍ଦ୍ଦେଶକ ଶ୍ରୀ ଅୱଧ ନାରାୟଣ ତିୱାରୀ ଓ ତା ୧-୬-୭୭ରିଖ ଦିନ ମାନ୍ୟବର ସାଂସ୍କୃତିକ ମନ୍ତ୍ରୀ ଶ୍ରୀ ଗଙ୍ଗାଧର ମହାପାତ୍ରଙ୍କ ସହ ବିସ୍ତୃତ ଆଲୋଚନା, କଥାବାର୍ତ୍ତା । ସାହାଯ୍ୟ ପାଇଁ ଆବେଦନ ପତ୍ର । ବିଭିନ୍ନ ସମୟରେ ଶିଳ୍ପମନ୍ତ୍ରୀ ଶ୍ରୀଯୁକ୍ତ କାହ୍ନୁ ଚରଣ ଲେଙ୍କା, ସାଂସ୍କୃତିକ ଉପମନ୍ତ୍ରୀ ଶ୍ରୀ ମତଲୁବ ଅଲ୍ଲୀ, ସାଂସ୍କୃତିକ ସହ-ନିର୍ଦ୍ଦେଶକ ଶ୍ରୀ ଅର୍ଜୁନ ଯୋଷୀଙ୍କଠାରୁ ପରାମର୍ଶ ନିଆଯାଇଛି । ସରକାରୀ ଅନୁଦାନ ପାଇଁ ନିବେଦନ କରାଯାଇଛି । କିନ୍ତୁ ଫଳ କିଛି ହୋଇନି । ଭୁବନେଶ୍ୱରରେ ଟଙ୍କା କେଉଁଠୁ ଆସିବ ? ସେମାନେ କୁଆଡ଼େ ରାଉରକେଲା ଆସିଛନ୍ତି ଟଙ୍କା ନେବାକୁ · ବିଭିନ୍ନ ଲୋକହିତକର କାମ କରିବାକୁ ।

ଦୁଃଖ ନାହିଁ । ଅନୁଶୋଚନା ବି ନାହିଁ । ମନରେ ଏକାଗ୍ରତା ଥିଲେ, କାର୍ଯ୍ୟରେ ନିଷ୍ଠା ଓ ସାଧୁତା ଥିଲେ, କୌଣସି କାର୍ଯ୍ୟ ଅସଂପୂର୍ଣ୍ଣ ରହିପାରେନା ।

ମୂର୍ତ୍ତି ଗଢା କାମ ସମ୍ପୂର୍ଣ୍ଣ ହେଲା । ନିର୍ଦ୍ଦିଷ୍ଟ ସମୟଠାରୁ କେଇମାସ ଅବଶ୍ୟ ବିଳମ୍ବ ହୋଇଗଲା । ସେହି ସମୟରେ ଖଲ୍ଲିକୋଟଠାରେ ଗୋଟିଏ ହୋଟେଲ ଉପରକୁ ଯାତ୍ରୀବାହୀ ବସଟି ମାଡ଼ିଯିବା ଫଳରେ ଅନ୍ୟମାନଙ୍କ ସହିତ ଦୁଇଜଣ କାଷ୍ଟିଙ୍ଗ ମିସ୍ତ୍ରୀଙ୍କର ଅକାଳ ମୃତ୍ୟୁ ପଡ଼ିଲା । ଶିଳ୍ପୀ ଶ୍ରୀ ମହାନ୍ତିଙ୍କୁ ଅନ୍ୟ ଯୋଗ୍ୟ କାରିଗର ଖୋଜିବାକୁ ସମୟ ଲାଗିଲା ।

ସବୁ କାର୍ଯ୍ୟରେ ସୁବିଧା ଅସୁବିଧା ଅଛି । ବାଧାବିଘ୍ନ ଅଛି । ଏଥିରେ ମଧ୍ୟ ବହୁ ପ୍ରତିବନ୍ଧକ ଆସିଛି, ଆସିବା ମଧ୍ୟ ସ୍ୱାଭାବିକ । ମୂର୍ତ୍ତି ଗଢାଣିରେ ଏଠାରେ ରାଜନୀତି ଗ୍ରସିଛି । ମୂର୍ତ୍ତି ବସାଇ ଓଡ଼ିଆ ଅଣଓଡ଼ିଆ ମଧ୍ୟରେ ଚିରଦିନ ପାଇଁ ବିଭେଦ ପ୍ରାଚୀର ଗଢା ଯାଉଛି । ସ୍ଥାନୀୟ ଲୋକଙ୍କ ଜମିକୁ ଜବର ଦଖଲ କରାଯାଇଛି । ମଧୁବାବୁ କଂଗ୍ରେସ ଅନୁଷ୍ଠାନର କୁଆଡେ ବିରୋଧି ଥିଲେ । ଇଂରେଜମାନଙ୍କୁ ସମର୍ଥନ ଦେଉଥିଲେ । ଖ୍ରୀଷ୍ଟିଆନ ଧର୍ମର ପ୍ରବର୍ତ୍ତା ଇତ୍ୟାଦି, ଇତ୍ୟାଦି । ନାନା ମନଗଢା କାହାଣୀ ·· ଚତୁର ଅପପ୍ରଚାର । ହେଲେ ଗର୍ଜିଲା ମେଘ ବର୍ଷି ନାହିଁ । ସବୁ ମିଳେଇ ଯାଉଛି, ସାମାନ୍ୟ ପବନରେ ।

ପୁଣି ପେଡେଷ୍ଟାଲ ଉଚ୍ଚ ପାଇପ ଯାଇଛୁ । ଭବିଷ୍ୟତରେ ଅସୁବିଧା ହେବ । ଟ୍ରାଫିକ୍ ନିୟନ୍ତ୍ରଣ ପାଇଁ ସମସ୍ୟା । ସବୁ ଯେତେ ଅବାନ୍ତର ଯୁକ୍ତି ସମ୍ବନ୍ଧ ।

ଇନ୍‌କମଟ୍ୟାକ୍ସ ଛଡ଼ାଉ ପାଇଁ କଳାଯୋଗାଡ଼ ଲଗିବ । ମୋଟା ଚାନ୍ଦା ଦରକାର ନାହିଁ । ମୀଡ ବର୍ଚ୍ଚ୍ୟତ ହୋଇ ମଧୁବାବୁଙ୍କୁ କଳୁଷିତ କରିବା ଠିକ୍ ନୁହେଁ । ନାନା ସ୍ଥାନରେ ଚାନ୍ଦା ଆଦାୟ ବେଳେ ବାଧାସୃଷ୍ଟି କରାଯାଇଛୁ । କମିଟିର ବେଣ୍ଟାରମ୍ୟାନଙ୍କ ଗାଡ଼ିକୁ ରାତିରେ ଅଟକା ଯାଇଛୁ, ଧମକ ଦିଆଯାଇଛୁ । ଗାଲିଗୁଲଜ ଶୁଣିବାକୁ ହେଉଛୁ । ସବୁକଥା ଜିଲ୍ଲାପାଳ ଓ ସ୍ଥାନୀୟ ପ୍ରଶାସକଙ୍କ କାନକୁ ଯାଇଛୁ । ହେଲେ ସମସ୍ତେ ଏକମତ । ସବୁଗୁଡ଼ିକ ଚପାଇଦେଇ ଲକ୍ଷ୍ୟ ହାସଲ କରିବାକୁ ପଡ଼ିବ । ଆହୁରି ଅନେକ ବାଟ ଯିବାକୁ ଅଛୁ ।

ସଭ୍ୟମାନଙ୍କର କର୍ତ୍ତବ୍ୟ ନିଷ୍ଠା ଓ ସହନଶୀଳ ଆଚରଣ । ଲକ୍ଷ୍ୟ ସୁଦୂର ପ୍ରସାରି । ଡର ନାହିଁ କାହାକୁ । ପଛରେ ଜିଲ୍ଲାପାଳ ଶ୍ରୀଯୁକ୍ତ ରଥଙ୍କର ବଳିଷ୍ଠ ସହାୟତା ଓ ଆନ୍ତରିକତା । ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କର ଚକ୍ରାନ୍ତପଣ୍ଡ ହୋଇଛୁ । ସ୍ୱରୂପ ପଦାରେ ପଡ଼ିଯାଇଛୁ ସେମାନଙ୍କର । ଶେଷରେ ସତ୍ୟ ଉଦ୍‌ଘାଟିତ ହୋଇଛୁ ।

ମୂର୍ତ୍ତି ଗଢ଼ା ସରିଲାଣି । ସଭ୍ୟ ଶ୍ରୀ ନାରାୟଣ ପ୍ରସାଦ ମହାନ୍ତି ଓ ଶ୍ରୀ ରାଧାନାଥ ରାଉତ ଖଲ୍ଲିକୋଟ ଯାଇଛନ୍ତି ଆଣିବାକୁ । ଟ୍ରକ୍ ଯୋଗାଡ଼ ହେଲା ରମ୍ଭାରୁ । କଲୋମିଟର ପ୍ରତି ଦୁଇଟଙ୍କା ପଡ଼ିବ । କେନ୍ଦୁଝର ବାଟେ ଆସିଲେ କମ୍ ବାଟପଡ଼ିବ । ଭଡ଼ା ହେଲା । ତା ୨୧-୬-୭୬ରିଖ ରାତି ୯ ଘଟିକା ୩୦ ମିନିଟରେ ORG 1856 ନମ୍ବର ଟ୍ରକ୍ଟି ପାଦଦେଲା 'ସଂଘ'ର କାର୍ଯ୍ୟାଳୟ ସମ୍ମୁଖରେ । ମୂର୍ତ୍ତି ଆସିଗଲା । ମଯୁରଭଞ୍ଜ ଚହଲା ଗଲା ।

ଏଥରକ ମୂର୍ତ୍ତି ବସାଯିବ । ଉଦ୍‌ଘାଟନ ଉତ୍ସବର ଆନୁସଙ୍ଗିକ ବ୍ୟବସ୍ଥା ହେବ । ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଉଦ୍‌ଘାଟନ କରିବେ । କଥା ଦେଇଛନ୍ତି । ତଥାପି ବିଘ୍ନ ଟ । ସେ ନ ଆସିବାକୁ ନାନା ମିଥ୍ୟା ଟେଲିଫୋନ । ବେନାମୀ ଚିଠି, ଟେଲିଗ୍ରାମ । କପୋଳ କଳ୍ପିତ ବାର୍ତ୍ତା । ମୂର୍ତ୍ତି ଉଦ୍‌ଘାଟନ ଦିନ ଏଠାରେ କୁଆଡ଼େ ଅଶାନ୍ତି ଉପୁଜିବ । ଶାନ୍ତି ଭଙ୍ଗର ଆଶଙ୍କା ରହିଛୁ । ଏକାର୍ଯ୍ୟ ପଛରେ ସର୍ବ-ସାଧାରଣଙ୍କର ସହଯୋଗ ନାହିଁ । କେତେକ ମୁଷ୍ଟିମେୟ ଲୋକଙ୍କର କାମ ।

ଆମର ନିର୍ଭର ଜିଲ୍ଲାପାଳ ଶ୍ରୀଯୁକ୍ତ ଶ୍ରୀନିବାସ ରଥ ସେ ହିଁ ଭରସା । ମୁଖ୍ୟମନ୍ତ୍ରୀ ମଧ୍ୟ ଅପେକ୍ଷା କରିଛନ୍ତି ଜିଲ୍ଲାପାଳଙ୍କ ମତାମତକୁ । ସେ କିନ୍ତୁ ହାଲିବାର ବ୍ୟକ୍ତି

ନୁହଁନ୍ତି । ତାଙ୍କର ସେହି ଗୋଟିଏ କଥା । ସେହିଦିନ ମୂର୍ତ୍ତି ଉନ୍ମୋଚିତ ହେବ । ମୁଖ୍ୟମନ୍ତ୍ରୀ ହିଁ କରିବେ । ପ୍ରୋଗ୍ରାମ ଅପରିବର୍ତ୍ତନୀୟ ।

ତା ୨୧-୮-୧୯୭୭ରିଖ ଅପରାହ୍ଣ ଛଅ ଘଟିକା ପରିଶ୍ରମ ମିନଟ୍ ହେବ । ଉନ୍ମୋଚନ ଉତ୍ସବ ଆରମ୍ଭ । ଗୃହଆଡ଼େ ଜନସମୁଦ୍ର । ତିଳଏ ହେଲେ ଜାଗା ନାହିଁ ଖାଲି । ଜାତି ଧର୍ମ-ବର୍ଣ୍ଣ ନିର୍ବିଶେଷରେ ଆବାଳ ବୃଦ୍ଧ-ବନିତା ଏକତ୍ରିତ । ପରମ ପୁରୁଷ, ସ୍ଵତନ୍ତ୍ର ଉତ୍କଳର ପ୍ରାଣ ପ୍ରତିଷ୍ଠାତା, ଓଡ଼ିଆ ଜାତିର ସ୍ଵାଭିମାନର ପ୍ରତୀକ, ଉତ୍କଳ ଗୌରବ ମଧୁସୂଦନ ଦାସଙ୍କୁ ସେମାନେ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜଣାଇବେ ।

ଏଠାରେ ସମ୍ପ୍ରଦାୟ କମ୍ବା ଗୋଷ୍ଠୀ ଭାବର ପ୍ରଶ୍ନ ନାହିଁ । ଓଡ଼ିଆ ଅଣଓଡ଼ିଆର ନାହିଁ । ସମସ୍ତଙ୍କର ସେ ପୂଜନୀୟ, ବନ୍ଦନୀୟ । ବରଂ ଯାହା ଦେଖାଯାଏ – ଅଣ-ଓଡ଼ିଆଙ୍କ ସହଯୋଗ ଅଧିକ । ଉପସ୍ଥିତିରେ ଓ ଅର୍ଥ ଦାନରେ ଏମାନେ ସଂଖ୍ୟା ଗରିଷ୍ଠ ।

ଗମ୍ଭୀର ପରିବେଶ । ସୁରମ୍ୟ ସମାବେଶ । ନୀରବତା ଗୃହଆଡ଼େ । ସମସ୍ତଙ୍କର ଦୃଷ୍ଟି ମୂର୍ତ୍ତି ଉପରେ । ଆତ୍ମା ପରମାତ୍ମାର ମିଳନ…… । ମୁଖ୍ୟମନ୍ତ୍ରୀ ମହୋଦୟା ଯଥା ସମୟରେ ବଶିଂଟାଣି ଆନୁଷ୍ଠାନିକ ଭାବେ ଷ୍ଟାଚୁ ଉନ୍ମୋଚନ କଲେ । ଇଚ୍ଛାଥିଲା ଯାହା ଜନଗଣଙ୍କର । ଖାଲି କରତାଳି । ଅପରନ୍ତୁ ।

ଉତ୍ସବ ମଣ୍ଡପରେ କଡ଼ାକଡ଼ି ବନ୍ଧି ବ୍ୟବସ୍ଥା । ଜାଣୀୟ ଜରୁରୀକାଳୀନ ପରିସ୍ଥିତି ସମୟ । ସେଠାରେ କେଉଁମାନେ ରହିବେ, କେଉଁମାନେ କହିବେ, ସବୁ ସରକାରୀ ନିୟନ୍ତ୍ରଣାଧୀନ ।

'ସଂଘ'ର ସଭାପତି ଶ୍ରୀ ନରେଶ ଚନ୍ଦ୍ର ନାୟକଙ୍କ ସ୍ଵାଗତ ଭାଷଣପରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଉଦ୍‌ଘାଟନୀ ଉଦ୍‌ବୋଧନ ଦେଲେ । ଅତ୍ୟନ୍ତ ସାର ଗର୍ଭିକ ଓ ମର୍ମସ୍ପର୍ଶୀ । ମୁଖ୍ୟଅତିଥି ମାନ୍ୟବର ସ୍ଵାସ୍ଥ୍ୟମନ୍ତ୍ରୀ ଶ୍ରୀ ସୋମନାଥ ରଥଙ୍କ ଭାଷଣ ପରେ ଉତ୍ସବର ସଭାପତି ତଥା ମାନ୍ୟବର ବିଦ୍ୟୁତ ମନ୍ତ୍ରୀ ଶ୍ରୀ ଦିବ୍ୟଲୋଚନ ଶେଖର ଦେଓ ତାଙ୍କର ଅଭିଭାଷଣରେ ମହତ୍ କାର୍ଯ୍ୟର ଭୂୟସୀ ପ୍ରଶଂସା କଲେ । 'ସଂଘ'ର ଅନ୍ୟତମ ଉପ-ସଭାପତି କୁମାରୀ ନିରୁପମା ପଟ୍ଟନାୟକ ଶେଷକୁ ଧନ୍ୟବାଦ ଅର୍ପଣ କରିଥିଲେ ।

ଯେଉଁ ବଶିଷ୍ଟ ବ୍ୟକ୍ତିଙ୍କର ଯୋଗଦାନରେ ଉତ୍ସବ ସ୍ଥଳ ଧନ୍ୟ ହୋଇଥିଲା, ସେମାନେ ହେଲେ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଡଃ ନବୀନ କୁମାର ସାହୁ, ରାଉରକେଲା ଷ୍ଟିଲ ପ୍ଲାଣ୍ଟର ଜେନେରାଲ ମ୍ୟାନେଜର ଡଃ ପ୍ରଫୁଲ୍ଲ ଅଗ୍ରୱାଲ,

ଲ୍ଯାଟିକଟାର ଶ୍ରୀଯୁକ୍ତ କାଶୀନାଥ ପ୍ରସାଦ ଝୁନ୍‌ଝୁନୱାଲା ରାଜଗାଙ୍ଗପୁର ସିମେଣ୍ଟ କାରଖାନାର ଶ୍ରୀଯୁକ୍ତ ଗୁପ୍ତ, କଲିକତା ମାର୍ବଲ କମ୍ପାନୀର ମ୍ୟାନେଜର ଶ୍ରୀ ବାଜପେଇ, ଆର୍.ଡ଼ି.ସି. କଲେକ୍ଟର ଓ ସ୍ଥାନୀୟ ସରକାରୀ ଓ ବେସରକାରୀ ପ୍ରତିନିଧିମାନେ ।

ଆଶ୍ଚର୍ଯ୍ୟ ! ଚତୁଃର୍ଦ୍ଦିଗରେ ବର୍ଷା, ପବନ । କଳାମେଘ ମାଳାର ମେଳଣ ଘୂରୁଥାଏ । ଉତ୍ସବ ସ୍ଥଳୀରେ ଧୂଳି ଉଡ଼ୁଛି, ଝଡ଼ ପଡ଼ୁଛି । ମଧୁବାବୁଙ୍କର ପ୍ରତିମୂର୍ତ୍ତି ଝାଳଭୂଳମାନ ଦିଶୁଛି । ଫୁଲହାର ଲମ୍ବିଛି ପାଦଯାଏ ।

ମଧୁବାବୁଙ୍କର ଏ ପ୍ରତିମୂର୍ତ୍ତି ସର୍ବ ବୃହତ୍ତମ, ସର୍ବ ପ୍ରଥମ ବ୍ରୋଞ୍ଜ ନିର୍ମିତ । ପ୍ରତିମୂର୍ତ୍ତିର ଉଚ୍ଚତା ପ୍ରାୟ ଆଠ ଫୁଟ । ଓଜନ ଛଅଶହ କଲୋଗ୍ରାମ୍ । ରାସ୍ତାଠାରୁ ପ୍ରାୟ ଦୁଇଫୁଟ ଉଚ୍ଚ ଓ ୭୫୦ ବର୍ଗଫୁଟ କ୍ଷେତ୍ରଫଳ ବିଶିଷ୍ଟ ଏକ ତ୍ରିକୋଣାକାର ମଣ୍ଡପ । କଂକ୍ରିଟ ତିଆରି ଚୌହଦୀ । ତା' ଉପରେ ଶୁଭ୍ର ମାର୍ବଲ ଖଚିତ ଆଠଫୁଟ ଉଚ୍ଚତାର ସୁନ୍ଦର ବର୍ଗାକାରସ୍ତମ୍ଭ । ଅର୍ଥାତ୍ ମାଟି ଉପରୁ ମୂର୍ତ୍ତି ପାଦଯାଏ ୧୦ ଫୁଟ ଓ ପାଦଠାରୁ ମୂର୍ତ୍ତିର ମସ୍ତକଯାଏ ୮ ଫୁଟ । ମୋଟରେ କହିଲେ, ଭୂମିଠାରୁ ମସ୍ତକ ପର୍ଯ୍ୟନ୍ତ ଉଚ୍ଚତାର ଅଙ୍କ ହେଲା ୧୮ ଫୁଟ । ଧଳା ମାର୍ବଲ ଦେହରେ କଳା ମାର୍ବଲର ଫଳକ, ଚତୁପାର୍ଶ୍ବରେ । ତା' ଉପରେ ସ୍ବର୍ଣ୍ଣାକ୍ଷରରେ ଖୋଦେଇ ଇଂରାଜୀ, ହିନ୍ଦୀ, ଓଡ଼ିଆ ଭାଷାର ନାମାଙ୍କନ । ମଣ୍ଡପର କଂକ୍ରିଟ ଧାରେ ଧାରେ ଲୁହା ଗ୍ରିଲର ଝଲକ । ପାଞ୍ଚଫୁଟ ଉଚ୍ଚତାର ସୁନ୍ଦର ଓ ସୁଦୃଢ଼ କଳେବର । ସହଜରେ ଡେଇଁ ଭିତରକୁ ପଶି ହୁଏନା । ମଝିରେ ଘାସର ସବୁଜ ଗାଲିଚ୍ଚ । ପୁଣି ରଙ୍ଗ ବେରଙ୍ଗର ବିଜୁଳି ଆଲୋକମାଳା ।

ଖର୍ଚ୍ଚ ବଢିଗଲା । ମୂଳ ହିସାବ ୭୦ ହଜାର ଥିଲା । ବଢି ଲକ୍ଷେ ପାଖାପାଖି ହୋଇଗଲା । ଆୟବ୍ୟୟ ହିସାବ ପତ୍ର ଜଣାଇ ଦିଆଗଲା ସର୍ବସାଧାରଣଙ୍କୁ । ମୋଟ ଖର୍ଚ୍ଚ ହେଲା ଟ୧୭,୪୪୯ ୯୪ ପଇସା । ଆୟ ହେଲା କମ୍ । ପ୍ରଗତି ଉତ୍କଳ ସଂଘ ଭରଣ କଲା ବାକି ଡକ ଟ୧୫,୦୭୩-୦୦ ମାତ୍ର ।

କାର୍ଯ୍ୟଟି ପୂର୍ଣ୍ଣାଙ୍ଗ ହେଲା । ଯୋଜନାଟି ଶେଷ ହେଲା । ତାପରେ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ଏହି ମୂଲ୍ୟବାନ କୀର୍ତ୍ତିର ରକ୍ଷଣାବେକ୍ଷଣ ଭାର ସଂପୃକ୍ତ ବିଜ୍ଞାପିତ ଅଞ୍ଚଳ ପରିଷଦର । ଚିଠି ନମ୍ବର PUS/MSJ/77/32 ତା 1-4-1977 ଦ୍ଵାରା ପ୍ରଗତି ଉତ୍କଳ ସଂଘ ହସ୍ତାନ୍ତର କଲା ଅଧିକାରୀଙ୍କୁ । ଅତିରିକ୍ତ ଜିଲାପାଳ ଶ୍ରୀ ଅଶୋକ କୁମାର ମିଶ୍ର (IAS) ଆନୁଷ୍ଠାନିକଭାବେ ଏହି ଗୁରୁଦାୟିତ୍ବ ଗ୍ରହଣ କଲେ ।



# ପ୍ରଗତି ଉତ୍କଳ ସଂଘ ଓ ଡ଼କ୍ଟର
# ନବୀନ କୁମାର ସାହୁ

-ବିରୂପାକ୍ଷ ପାଢ଼ୀ-

ସାମାନ୍ୟ ମୂଲ୍ୟର ପଥର ଖଣ୍ଡିଏ ବହୁଦିନ ପର୍ଯ୍ୟନ୍ତ ରାସ୍ତା ଧାରରେ ପଡ଼ି ରହିଥିଲେ ମଧ୍ୟ ସହଜରେ କାହାର ଦୃଷ୍ଟି ଆକର୍ଷଣ କରେ ନା । ଯଦି ଦୈବାତ୍ ସେହି ପଥର ଖଣ୍ଡିକ କୌଣସି କୁଶଳୀ ଶିଳ୍ପୀର ହାତସ୍ପର୍ଶ ପାଇ ଏକ ମନୋରମ ମୂର୍ତ୍ତିର ରୂପଧାରଣ କରେ ତେବେ ତାହା ଶିଳ୍ପ ସୌନ୍ଦର୍ଯ୍ୟ ପ୍ରେମୀ ଜନସମାଜର ଆଦରଲାଭ ସହିତ ସ୍ୱତନ୍ତ୍ର ସମ୍ମାନପାଏ । ସେହିପରି କେବଳ ଦଶ ବର୍ଷର ସ୍ୱଳ୍ପ ପରିଚିତ ସାଂସ୍କୃତିକ ଅନୁଷ୍ଠାନ ପ୍ରଗତି ଉତ୍କଳ ସଂଘ ଏକ ଅଲୌକିକ ପ୍ରତିଭା ସମ୍ପନ୍ନ, ସ୍ୱନାମଧନ୍ୟ ଗବେଷକ ଐତିହାସିକ ଡକ୍ଟର ନବୀନ କୁମାର ସାହୁଙ୍କ ଆଶୀର୍ବାଦ ଲାଭକରି ଥିଲା । ସେଥିଯୋଗୁ ଖୁବ୍ ଅଳ୍ପ ସମୟ ମଧ୍ୟରେ ଓଡ଼ିଶାର ପ୍ରତିଭାବାନ ଶିକ୍ଷାବିତ୍, ଲେଖକ, ସାମ୍ବାଦିକ, କଳାକାର, ଶିଳ୍ପୀ, କ୍ରୀଡ଼ାବିତ୍, ଜନସେବକ ତଥା ସଂସ୍କୃତି ସଚେତନ ଜନସାଧାରଣଙ୍କର ଆଦରଣୀୟ ହୋଇ ପାରିଛି । ଏକ ଅପ୍ରତ୍ୟାଶିତ ଘଟଣାକ୍ରମେ ସେ ସଂଘର ସାଂସ୍କୃତିକ କାର୍ଯ୍ୟଧାରାରେ ଏପରି ଓତଃପ୍ରୋତ ଭାବେ ଜଡ଼ିତ ହୋଇପଡ଼ିଥିଲେ ଯେ ଏ ସମ୍ପର୍କ ଚିରସ୍ଥାୟୀ ହୋଇ ରହିଗଲା ।

୧୯୬୭ ବେଳକୁ ପ୍ରଗତି ଉତ୍କଳ ସଂଘର ସଭ୍ୟମାନେ ସଂଘର ସ୍ଥିତିକୁ ଆହୁରି ସୁଦୃଢ଼ କରିବାକୁ ଏକ ସାର୍ବଜନୀନ ଉତ୍ସବ ମାଧ୍ୟମରେ ଜନସାଧାରଣଙ୍କ ନିକଟତର ହେବାକୁ ଆଗ୍ରହୀ ହେଲେ । ମୋର କର୍ମକ୍ଷେତ୍ରର ବନ୍ଧୁ ଶ୍ରୀ ଅଚ୍ୟୁତାନନ୍ଦ ଦାଶକ ଓ ମୁଁ ଆଲୋଚନା କରି ଓଡ଼ିଶା ରାଜ୍ୟର ଜନ୍ମ ଦିନ ଏପ୍ରିଲ ପହିଲାକୁ "ଉତ୍କଳ ଦିବସ" ରୂପେ ବିଧିବଦ୍ଧ ଭାବରେ ପାଳନ କରିବା ନିମନ୍ତେ ସଂଘର ଅକ୍ଟୋବର ମାସର କାର୍ଯ୍ୟକାରୀ ସମିତି ବୈଠକରେ ପ୍ରସ୍ତାବ ଦେଲୁ । ବନ୍ଧୁ ଶ୍ରୀ ସତ୍ୟନାରାୟଣ ମହାନ୍ତି ମଧ୍ୟ ଏହି ବୈଠକରେ ଏପ୍ରିଲ ୨୮ ତାରିଖରେ "ଉତ୍କଳ ଗୌରବ ମଧୁସୂଦନଙ୍କ ଜୟନ୍ତୀ" ପାଳନ ପାଇ ପ୍ରସ୍ତାବ ଆଗତ କଲେ । ଆଲୋଚନା ଶେଷରେ ଏପ୍ରିଲ ପହିଲା ଦିନ "ଉତ୍କଳ ଦିବସ ଓ ଉତ୍କଳ ଗୌରବ ମଧୁସୂଦନ ଜୟନ୍ତୀ" ଉତ୍ସବ ପାଳନ କରିବାକୁ ପ୍ରସ୍ତାବ ଗୃହୀତ ହେଲା ଓ ଜାନୁୟାରୀ ମାସରେ ଜରୁରୀ ସାଧାରଣ ସଭା ବୈଠକରେ ଏହା ଅନୁମୋଦନ ଲାଭକଲା ।

ଫେବୃୟାରୀ ମାସର ଦ୍ୱିତୀୟ ସପ୍ତାହରେ ବନ୍ଧୁ ଶ୍ରୀ କରୁଣ ଚନ୍ଦ୍ର ଦାସଙ୍କ ଏକ ପ୍ରସ୍ତାବ ଉପରେ ଆଲୋଚନା କରାଯାଇ ଉତ୍ସବ ଉପଲକ୍ଷେ ଏକ "ସ୍ମାରକୀ" ଗ୍ରନ୍ଥ ପ୍ରକାଶ କରିବାକୁ ସ୍ୱୀକୃତ ହେଲା । ନୀତିଗତ ଭାବରେ ଏହି ଗ୍ରନ୍ଥରେ ଓଡ଼ିଶାର ସାହିତ୍ୟ, ସଂସ୍କୃତି, ଶିଳ୍ପକଳା, ସାଙ୍ଗରେ ଏହାର ଗୌରବମୟ ଇତିହାସ ତଥା ଉତ୍କଳ ଗୌରବ ମଧୁସୂଦନଙ୍କ ଜୀବନୀ ସମ୍ପର୍କିତ ଲେଖାମାନ ପ୍ରକାଶ କରି ଜନସାଧାରଣଙ୍କ ମନରେ ଜାତୀୟଭାବର ଜାଗରଣ ଓ ସାଂସ୍କୃତିକ ସଚେତନତା ସୃଷ୍ଟି କରିବାକୁ ସ୍ଥିର କରାଗଲା । କେତେକ ଯୁବଲେଖକ ବନ୍ଧୁଙ୍କ ପ୍ରତିଶ୍ରୁତି ଓ ପରାମର୍ଶ କ୍ରମେ ପ୍ରସ୍ତାବକ ଶ୍ରୀ କରୁଣ ଚନ୍ଦ୍ର ଦାସ, ସାଂସ୍କୃତିକ ସମ୍ପାଦକ ଶ୍ରୀ ସତ୍ୟନାରାୟଣ ମହାନ୍ତି (ଶାନ୍ତି) ଓ ମୁଁ ସମ୍ବଲପୁରରେ ଅନୁଷ୍ଠିତ ହେଉଥିବା "ଓଡ଼ିଶା ଯୁବ ଲେଖକ ସମ୍ମିଳନୀ"ରେ ଯାଇ ତା ୧୪-୨-୬୮ରିଖ ଦିନ ସକାଳେ ପହଞ୍ଚିଲୁ । ସେଦିନ ତମାମ୍ ଓ ତାପର ଦିନ ପୂର୍ବାହ୍ଣ ପର୍ଯ୍ୟନ୍ତ ବନ୍ଧୁ ଲେଖକଙ୍କୁ ଅନୁରୋଧ କରି ବିଫଳ ହେଲୁ । ସମୟର ସ୍ୱଳ୍ପତା ଦୃଷ୍ଟିରୁ ସମସ୍ତେ ନିଜ ନିଜର ଅକ୍ଷମତା ପ୍ରକାଶ କଲେ । ଏଠାରେ ପ୍ରକାଶ ଯୋଗ୍ୟ ଯେ କୌଣସି ପ୍ରକାରର ପ୍ରକାଶନର ଅଭିଜ୍ଞତା ଆମ୍ଭମାନଙ୍କର ନଥିଲା କିନ୍ତୁ ଏହି "ସ୍ମାରକୀ" ପ୍ରକାଶ ନିମନ୍ତେ ଯେ କୌଣସି ପଦକ୍ଷେପ ନେବାକୁ ସଂଘ ପକ୍ଷରୁ ଆମ୍ଭମାନଙ୍କୁ ଅଖଣ୍ଡ କ୍ଷମତା ଦିଆଯାଇଥାଏ । ବିଫଳ ହୋଇ ଫେରିଗଲେ ଆମ ତିନି ଜଣଙ୍କ ଅବସ୍ଥା ଯାହା ହେବ ତାହା ସହଜେ ଅନୁମେୟ । ପୂର୍ବର ଉତ୍ସାହ ହ୍ରାସ ପାଇଲେ ମଧ୍ୟ ହତାଶ ହୋଇ ନଥିଲୁ । ସର୍ବଶେଷ ଚେଷ୍ଟା ସ୍ୱରୂପ ଉକ୍ତ ସମ୍ମିଳନୀର ଉଦ୍ୟୋକ୍ତାମାନଙ୍କ ମଧ୍ୟରୁ ଅଧ୍ୟାପକ ପୂର୍ଣ୍ଣଚନ୍ଦ୍ର ମହାପାତ୍ର, ଅଧ୍ୟାପକ ଦୁର୍ଗାପ୍ରସାଦ ନାୟକ ତଥା ତାଙ୍କର ସହଧର୍ମିଣୀ ସମାଜସେବିକା ଶ୍ରୀମତୀ ସୈରେନ୍ଧ୍ରୀ ନାୟକ ଏବଂ ବ୍ୟଙ୍ଗ ସାହିତ୍ୟିକ ଓଡ଼ିଶା ଶ୍ରୀ ସୁନୀଲ ମିଶ୍ରଙ୍କର ସାହାଯ୍ୟ ପ୍ରାର୍ଥୀହେଲୁ । ସଂଯୋଗକୁ ଏମାନେ ସମସ୍ତେ ମୋର ନିକଟ ସମ୍ପର୍କୀୟ ପାରିବାରିକ ବନ୍ଧୁ ତଥା ସମ୍ମାନାସ୍ପଦ ସଂସ୍କୃତିପ୍ରେମୀ ଉଦାର ବ୍ୟକ୍ତି । ଆମ୍ଭମାନଙ୍କ ଏକାନ୍ତ ଅନୁରୋଧରେ ଏକ କ୍ଷୁଦ୍ର ଆଲୋଚନା ପରେ ତାଙ୍କ ପକ୍ଷରୁ "ସ୍ମାରକୀ"ର ଯୁଗ୍ମ ସମ୍ପାଦକ ଭାରଗ୍ରହଣ କରିବାକୁ ପ୍ରଖ୍ୟାତ ଲେଖକ ଶ୍ରୀ ଗୋପୀନାଥ ମହାନ୍ତି ଓ ପ୍ରବୀଣ ଐତିହାସିକ ଡ଼କ୍ଟର ନବୀନ କୁମାର ସାହୁଙ୍କୁ ଅନୁରୋଧ କରିବାକୁ ପ୍ରସ୍ତାବ ଦେଲେ । କାଳବିଳମ୍ବ ନକରି ସଭାସ୍ଥଳରେ ଉପସ୍ଥିତ ଶ୍ରୀ ଗୋପୀନାଥ ମହାନ୍ତିଙ୍କୁ ସବୁକଥା ଜଣାଇଲୁ । ସେ ମହାଶୟ ଏଥିନିମନ୍ତେ ନିଜର ସମ୍ମତି ଜଣାଇଥିଲେ ମଧ୍ୟ ପରେ ସମୟ ଅଭାବରୁ ଆମ୍ଭମାନଙ୍କୁ ସାହାଯ୍ୟ କରି ପାରିନଥିଲେ । ଏହାପରେ ମୋର ଦୁଇ ବନ୍ଧୁ ଘରକୁ ଫେରିଲେ ଏବଂ ଡକ୍ଟର ନବୀନ କୁମାର ସାହୁଙ୍କ ସାକ୍ଷାତ୍ କରି ଅନୁରୋଧ ଜଣାଇବାକୁ ଅଧ୍ୟାପକ ମହାପାତ୍ର ଓ ମୁଁ ସମ୍ବଲପୁର ବିଶ୍ୱବିଦ୍ୟାଳୟ କାର୍ଯ୍ୟାଳୟ (ଧନୁପାଲି)କୁ ଗଲୁ ।

ଏତେ ବେଳକେ ମୋର ମନରେ ଆଶାର ସଞ୍ଚାର ହେଲା । ଡକ୍ଟର ସାହୁଙ୍କ ସଙ୍ଗେ ବହୁ ଦିନ ତଳେ ୧୯୬୨-୬୩ ମସିହାରେ ମୁଁ ରାଣୀହାଟ ସ୍କୁଲର ଛାତ୍ର ଥିବା-ବେଳେ ରେଭେନ୍ସା କଲେଜର ତତ୍କାଳୀନ ଇତିହାସ ଅଧ୍ୟାପକ ପ୍ରଫେସର ଘନଶ୍ୟାମ ଦାସଙ୍କ ଘରେ ଅନେକ ଥର ସାକ୍ଷାତ ହୋଇଥିଲି କିନ୍ତୁ ଏବେ ସେକଥା ଜଣାଇବି କି ନାହିଁ ଠିକ କରି ପାରୁ ନଥାଏ । ଗନ୍ତବ୍ୟ ସ୍ଥଳରେ ପହଞ୍ଚି ଡକ୍ଟର ସାହୁଙ୍କୁ ସାକ୍ଷାତ କଲୁଁ ।, ମୋ ପାଖରୁ ସବୁ ବିଷୟ ସ୍ଥିର ଚିତ୍ତରେ ଶୁଣିବା ପରେ ସେ ଯୁଗ୍ମ-ସମ୍ପାଦକ ଦାୟିତ୍ୱ ଗ୍ରହଣ କରିବାକୁ ସମ୍ମତି ପ୍ରଦାନ କଲେ । ତାହା ସଙ୍ଗରେ ପନ୍ଦର ବର୍ଷ ତଳର ଆମ ଭିତରେ ସାକ୍ଷାତ ହୋଇଥିବା ବିଷୟରେ କହି ମୋତେ ଚକିତ କରି ଦେଲେ, ଅଧ୍ୟାପକ ମହାପାତ୍ର ମଧ୍ୟ ଆଶ୍ଚର୍ଯ୍ୟ ହୋଇଗଲେ । ତ ପରଦିନ ସକାଳୁ ତାଙ୍କ ବାସଭବନରେ ଆମ୍ଭମାନଙ୍କୁ ଜଳଯୋଗର ନିମନ୍ତ୍ରଣ ଜଣାଇ ବିଦାୟ ଦେଲେ । "ସ୍ମାରକୀ" ଯେ ପ୍ରକାଶ ପାଇବ ଏ ବିଷୟରେ ନିଃସନ୍ଦେହ ହେବାକୁ ଅଧ୍ୟାପକ ମହାପାତ୍ର ମୋତେ ଆଶ୍ୱାସବାଣୀ ଶୁଣାଇଲେ । ମୁଁ ଆନନ୍ଦରେ ପୁଲକିତ ହୋଇ ଉଠିଲେ ।

୧୭-୨-୭୮ ଦିନ ସକାଳ ସାଢେ ଆଠଟା ବେଳେ ଆମ୍ଭେମାନେ ଡକ୍ଟର ସାହୁଙ୍କ କମିଶନର କଲୋନୀ ସ୍ଥିତ ବାସଭବନରେ ପହଞ୍ଚିଲୁଁ । ଜଳଯୋଗ ସମୟରେ ଡକ୍ଟର ସାହୁ "ପ୍ରଗତି ଉତ୍କଳ ସଂଘ'ର ଉଦ୍ଦେଶ୍ୟ, ଲକ୍ଷ୍ୟ, ପରିଚାଳନା ପ୍ରଣାଳୀ ଇତ୍ୟାଦି ବିଷୟରେ ତଥା ପ୍ରସ୍ତାବିତ ଉତ୍ସବ ଓ ସ୍ମାରକୀ ସମ୍ବନ୍ଧରେ ଆମର ପରିକଳ୍ପନା ବିଷୟରେ ସବୁ କିଛି ବୁଝି ନେଲେ । ଉପଦେଶ ଦେଇ କହିଲେ ଯେ ସ୍ମାରକୀ ଗ୍ରନ୍ଥରେ ଓଡ଼ିଶାର ଐତିହ୍ୟ, ସଂସ୍କୃତି, ଶିଳ୍ପକଳା ଉପରେ ଉନ୍ନତ ମାନର ଗବେଷଣାତ୍ମକ ପ୍ରବନ୍ଧ ସାଙ୍ଗରେ ଐତିହାସିକ ଦଲିଲ ତଥା ମଧୁବାବୁଙ୍କ ଜୀବନୀ ତାଙ୍କର ବାଣୀ ଓ ରଚନା ସମ୍ବଳିତ ଲେଖା ଗୁଡ଼ିକୁ ସ୍ଥାନ ଦେବାକୁ ହେବ । ଜଣେ ଯୋଗ୍ୟ ଲୋକକୁ କଟକ ପଠାଇ କିଛି ଉପାଦେୟ ଲେଖା ପାଇଁ ଚେଷ୍ଟା କରିବାକୁ ଓ ସେଠାକାର ପ୍ରେସମାନଙ୍କ ସଙ୍ଗେ ଯୋଗାଯୋଗ କରିବାକୁ କହିଲେ । ରାଉରକେଲାରୁ ମଧ୍ୟ ଯେତେ ଲେଖା ମିଳିବ ସେଗୁଡ଼ିକୁ ନେଇ ମାର୍ଚ୍ଚ ୭ ତାରିଖ ସୁଦ୍ଧା ତାଙ୍କ ପାଖରେ ଉପସ୍ଥିତ ହେବାକୁ ମୋତେ ନିର୍ଦ୍ଦେଶ ଦେଲେ । ଅଧ୍ୟାପକ ମହାପାତ୍ର ତାଙ୍କୁ ସମ୍ପାଦନା କାର୍ଯ୍ୟରେ ସାହାଯ୍ୟ କରିବାକୁ ପ୍ରସ୍ତାବ ଦେଲେ । ତାଙ୍କଠାରୁ ଆମ ସଭାପତି ଓ ସଭ୍ୟମାନଙ୍କ ପାଇଁ ଏକ ଶୁଭେଚ୍ଛାବାର୍ତ୍ତା ନେଇ ମୁଁ ଖୁସି ମନରେ ରାଉରକେଲା ଫେରିଲି ।

ଉଲ୍ଲିଖିତ ସବୁ ବିଷୟରେ ସଂଘର ଏକ ଆଲୋଚନା ହେଲା । କର୍ମକର୍ତ୍ତା ଓ ସଭ୍ୟମାନେ ଆନନ୍ଦରେ ବିଭୋର ହୋଇ ଦ୍ୱିଗୁଣ ଉତ୍ସାହରେ ଉତ୍ସବର ଆୟୋଜନରେ ଲାଗି ପଡ଼ିଲେ । ସାମ୍ବାଦିକଙ୍କୁ ଏକ ସାକ୍ଷାତକାରରେ ସଂଘର ସଭାପତି ଏହି ଉତ୍ସବ ପାଳନର ମହତ୍ତ୍ୱ ଓ ଲକ୍ଷ୍ୟ ସମ୍ପର୍କରେ ଏକ ବକ୍ତବ୍ୟ ପ୍ରଦାନ କରି ଓଡ଼ିଶା ତଥା ଓଡ଼ିଶା

ବାହାରେ ଥିବା ସବୁ ଓଡ଼ିଆ ଅନୁଷ୍ଠାନ ଏବଂ ଉତ୍ସବ ପାଳନ କରିବାକୁ ନିବେଦନ କରିଥିଲେ । ସଂସ୍କୃତିକ ସମ୍ପାଦକ ଶ୍ରୀ ସତ୍ୟନାରାୟଣ ମହାନ୍ତି ଫେବୃୟାରୀ ୨୦ ତାରିଖ ରେ କଟକ ଯାଇ ଅନେକ ଗଣ୍ୟମାନ୍ୟ ବ୍ୟକ୍ତିଙ୍କୁ ସାକ୍ଷାତ କରି ଉପାଦେୟ ଲେଖା ପାଇଁ ସଂଘର ଅନୁରୋଧ ପତ୍ର ଦେବାକୁ କେତେଜଣ ଲେଖା ପଠାଇବାକୁ ପ୍ରତିଶ୍ରୁତି ଦେଲେ । କିନ୍ତୁ କୌଣସି ପ୍ରେସ୍ ଏତେ ଅଳ୍ପ ସମୟ ମଧ୍ୟରେ ଶହେ ପୃଷ୍ଠାର ଏକ ଗ୍ରନ୍ଥ ଛପିବାକୁ ନିର୍ଭର ପ୍ରତିଶ୍ରୁତି ଦେଇ ପାରିଲେ ନାହିଁ । ତେଣୁ ବିଶିଷ୍ଟ କବି ଶ୍ରୀ ମହେଶ୍ୱର ପଣ୍ଡାଙ୍କ ପରାମର୍ଶରେ ବନ୍ଧୁ ଶ୍ରୀ ଅଚ୍ୟୁତାନନ୍ଦ ବାରିକ କଲିକତା ଯାଇ ରହସ୍ୟ-ରୋମାଞ୍ଚ ଉପନ୍ୟାସ ଲେଖକ ଶ୍ରୀ କର୍ଣ୍ଣିକା ଚରଣ ଦାସ ଓ ତାଙ୍କର ଭାଇ କଳିଙ୍ଗ ମୁଦ୍ରଣୀର ମାଲିକ ଶ୍ରୀ ପ୍ରାଣକୃଷ୍ଣ ଦାସଙ୍କୁ ସାକ୍ଷାତ କଲେ । ସେମାନେ ୧୫ ଦିନ ମଧ୍ୟରେ ସ୍ମାରକୀଟିକୁ ଛାପି ଦେବାକୁ ନିର୍ଭର ପ୍ରତିଶ୍ରୁତି ଦେଲେ ।

ଡକ୍ଟର ସାହୁଙ୍କ ପୂର୍ବ ନିର୍ଦ୍ଦେଶ ଅନୁସାରେ ମୁଁ ମାର୍ଚ୍ଚ ମାସର ୭ ତାରିଖରେ ରାଉରକେଲାରୁ ସଂଗୃହୀତ ତିନୋଟି, କଟକରୁ ଆସିଥିବା ଦୁଇଟି ଲେଖା ନେଇ ତାଙ୍କ ପାଖରେ ପହଞ୍ଚିଲି । ସେ ତାଙ୍କ ନିଜର ଓ ଅଧ୍ୟାପକ ମହାପାତ୍ରଙ୍କ ଲିଖିତ ଦୁଇଟି ଲେଖା ସହିତ ବିଭିନ୍ନ ଐତିହାସିକ ଦଲିଲ, ପୂର୍ବ ପ୍ରକାଶିତ ମଧୁବାବୁଙ୍କ ବକ୍ତୃତା ଓ କବିତା ତଥା ତାଙ୍କର ଜୀବନୀ ଉପରେ ଏଡଭୋକେଟ ଶ୍ରୀ ନବ କିଶୋର ଦାସଙ୍କ ଏକ ଲେଖା ଏବଂ ମଧୁବାବୁଙ୍କ କନ୍ୟା କୁମାରୀ ଶୈଳବାଳାଙ୍କ ଏକ ପାଣ୍ଡୁଲିପିର କିୟଦଂଶ ସ୍ମାରକୀ ପାଇଁ ପ୍ରସ୍ତୁତ କରି ରଖିଥିଲେ । ଏ ଗୁଡ଼ିକୁ ନେଇ ଓଡ଼ିଆ ଓ ଇଂରାଜୀ ଭାଷାର ଏକ ସର୍ବାଙ୍ଗ ସୁନ୍ଦର ପାଣ୍ଡୁଲିପି ପ୍ରସ୍ତୁତ କରାଗଲା । ପ୍ରଚ୍ଛଦ ପଟରେ ପ୍ରଗତିର ସ୍ୱରୂପ ସୂର୍ଯ୍ୟ ମନ୍ଦିରର କୋଣାର୍କ ଚକ୍ରର ପ୍ରତିଛବି ଦେବାକୁ ଏବଂ ସ୍ମାରକୀର ଆରମ୍ଭରେ ମଧୁବାବୁଙ୍କ ପ୍ରତିକୃତି ଦାମୀ କାଗଜରେ ଛପାଇ ସନ୍ନିବେଶ କରିବାକୁ ସ୍ଥିର କରାଗଲା । ସମ୍ପାଦନା କାର୍ଯ୍ୟରେ ଡକ୍ଟର ସାହୁଙ୍କୁ ଅଧ୍ୟାପକ ମହାପାତ୍ର ପୂର୍ଣ୍ଣପ୍ରାଣରେ ସାହାଯ୍ୟ କରିଥିଲେ । ମୋର ପୂର୍ବ ପରିଚିତ ସମ୍ବଲପୁର ବିଶ୍ୱବିଦ୍ୟାଳୟର କର୍ମଚାରୀ ଶ୍ରୀ ଅନ୍ତର୍ଯ୍ୟାମୀ ଷଡ଼ଙ୍ଗୀ ବନ୍ଧୁ କଷ୍ଟ ସ୍ୱୀକାର କରି ପାଣ୍ଡୁଲିପିର ଇଂରାଜୀ ଅଂଶକୁ ଟାଇପ୍ କରିଥିଲେ । ତାଙ୍କର ସାହାଯ୍ୟ ଭୁଲିହେବ ନାହିଁ । ଏତେ ବଡ କାର୍ଯ୍ୟକୁ ଏତେ ଅଳ୍ପ ସମୟ ମଧ୍ୟରେ ସୁରୁଖୁରୁରେ ସମ୍ପାଦନ କରିବା କେବଳ ଡକ୍ଟର ସାହୁ ଏବଂ ଅଧ୍ୟାପକ ମହାପାତ୍ରଙ୍କ ବିପୁଳ ଅଭିଜ୍ଞତା ଓ ଆଗ୍ରହ ଯୋଗୁ ସମ୍ଭବ ହୋଇ ପାରିଥିଲା । ସେଦିନ ମୁଁ ପୂର୍ଣ୍ଣଭାବରେ ଉପଲବ୍ଧି କଲି ଯେ ନିଷ୍ଠା ଓ ସଦିଚ୍ଛା ରହିଲେ ଧୈର୍ଯ୍ୟ ଓ ଅଧ୍ୟବସାୟ ବଳରେ ଯେ କୌଣସି ମହତ କାର୍ଯ୍ୟ ସମ୍ପାଦିତ ହୋଇ ପାରିବ । ମାର୍ଚ୍ଚ ୧୦ ତାରିଖ ସନ୍ଧ୍ୟାରେ ପ୍ରସ୍ତୁତ ପାଣ୍ଡୁଲିପି ସହିତ ମୁଁ ସଂଘଗୃହରେ ପହଞ୍ଚିଲି । ଖବର ପାଇ ସଭାପତି, ଉପସଭାପତି ତଥା ଅନ୍ୟ ଉତ୍ସାହୀ ବନ୍ଧୁମାନେ ଆସି ପହଞ୍ଚିଲେ । ପାଣ୍ଡୁଲିପି ଦେଖି ସମସ୍ତେ ଆନନ୍ଦ ଓ ଆଶ୍ଚର୍ଯ୍ୟ ଅନୁଭବ କଲେ ।

ପୂର୍ବ ପରିକଳ୍ପନା ଅନୁଯାୟୀ ବନ୍ଧୁ ଶ୍ରୀ ଅଚ୍ୟୁତାନନ୍ଦ ବାରିକ ପାଣ୍ଡୁଲିପି ଏବଂ ଆବଶ୍ୟକ ନଥିପତ୍ର ସହ କଲିକତା ଅଭିମୁଖେ ଯାତ୍ରା କଲେ । ମାର୍ଚ୍ଚ ମାସ ୧୫ତାରିଖ ଦିନ ସେଠାରେ ପହଞ୍ଚି ଦିନରାତି ଅକ୍ଲାନ୍ତ ପରିଶ୍ରମ କରି ମାର୍ଚ୍ଚ ୩୧ ତାରିଖ ଦିନ ସକାଳେ ଦୁଇହଜାର 'ସ୍ମାରକୀ' ଓ ପାଞ୍ଚହଜାର ଖଣ୍ଡ ମଧୁବାବୁଙ୍କ ପ୍ରତିଛବି ନେଇ ଏଠାରେ ପହଞ୍ଚି ଆମ୍ଭମାନଙ୍କୁ ପ୍ରବଧ କରିଦେଲେ । ମାତ୍ର ୧୬ଦିନ ଭିତରେ ସେ ମଧୁବାବୁଙ୍କ ପ୍ରତିଛବି ତଥା କୋଣାର୍କ ଚକ୍ରର ବ୍ଲକ ତିଆରି, କଳିଙ୍ଗ ମୁଦ୍ରଣୀ ଓ ସ୍ମାରକୀର କିଛି ଅଂଶ ଛପୁଥିବା ପେଲିକ୍ୟାନ ପ୍ରେସ୍‌ରେ ଦିନରାତି ପ୍ରୁଫ ଦେଖିବା, ଛପା କାମ ଶେଷ ହେବା ପରେ ବନ୍ଧେଇ କରାଇବା ଇତ୍ୟାଦି କାମ ସୁରୁଖୁରୁରେ ସମ୍ପାଦନ କରିବାରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରି ସମସ୍ତଙ୍କର ପ୍ରଶଂସା ଭାଜନ ହୋଇଥିଲେ ।

ଅଦମ୍ୟ ଉତ୍ସାହ ଓ ଉଦ୍ଦୀପନା ମଧ୍ୟରେ ସେକ୍ଟର ସାତ କମ୍ୟୁନିଟି ସେଣ୍ଟର ପଡ଼ିଆରେ ପ୍ରାୟ ପନ୍ଦର ହଜାର ଦର୍ଶକଙ୍କ ଗହଣରେ ଡକ୍ଟର ସାହୁଙ୍କ ସଭାପତିତ୍ୱରେ "ଉତ୍କଳ ଦିବସ ଓ ମଧୁସୂଦନ ଜୟନ୍ତୀ" ୧୯୬୮ ମସିହା ଏପ୍ରିଲ ପହିଲା ଦିନ ସନ୍ଧ୍ୟା-ରେ ମହାସମାରୋହରେ ପାଳିତ ହେଲା । ଏହି ସଭାରେ ମୁଖ୍ୟବକ୍ତା ସୁନାମ-ଧନ୍ୟ ଐତିହାସିକ ମନ୍ମଥ ନାଥ ଦାସ ବିପୁଳ ଜନସମାଗମକୁ ଲକ୍ଷ୍ୟକରି ନିଜକୁ ଭାରତର ପ୍ରଧାନମନ୍ତ୍ରୀଙ୍କ ସହ ତୁଳନା କରି ଗର୍ବ ଅନୁଭବ କରୁଥିବା ବିଷୟରେ କହିବା ଏକ ଉଲ୍ଲେଖଯୋଗ୍ୟ ଘଟଣା । ସଭାସ୍ଥଳରେ ସ୍ମାରକୀ ଏବଂ ମଧୁବାବୁଙ୍କ ପ୍ରତିଛବି ବିକ୍ରୀ କରାଯାଇ ଥିଲା ।

ଏପ୍ରିଲ ଦୁଇ ତାରିଖ ଦିନ ଡକ୍ଟର ସାହୁ ସଂଘର କର୍ମକର୍ତ୍ତା ଏବଂ ଉତ୍ସାହୀ ସଭ୍ୟମାନଙ୍କ ସଙ୍ଗେ ଏକ ଆଲୋଚନା ସଭାରେ ମିଳିତ ହୋଇଥିଲେ । କହିବାକୁ ଗଲେ ଏହି ଦିନଠାରୁ ହିଁ ଡକ୍ଟର ନବୀନ କୁମାର ସାହୁ ପ୍ରତି ଉତ୍କଳ ସଂଘ ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ହୋଇ ପଡ଼ିଲେ । ସଂଘର ସଭାପତି ଶ୍ରୀ ନରେଶ ଚନ୍ଦ୍ର ନାୟକଙ୍କ ସଂଘର ପରିଚାଳନାରେ ଐକାନ୍ତିକତା ତଥା କର୍ମକର୍ତ୍ତାଙ୍କୁ ଦେଉଥିବା ନେତୃତ୍ୱ ସାଙ୍ଗରେ ସଭ୍ୟମାନଙ୍କ ଆଗ୍ରହ ଓ ଶୃଙ୍ଖଳା ଡକ୍ଟର ସାହୁଙ୍କୁ ବିଶେଷ ଭାବେ ଆକୃଷ୍ଟ କଲା । ଅନ୍ୟପକ୍ଷରେ ତାଙ୍କର ଅକପଟ ସରଳ ହୃଦୟସ୍ପର୍ଶୀ ବ୍ୟବହାରରେ ସଂଘର କର୍ମକର୍ତ୍ତା ଓ ସଭ୍ୟମାନେ ଅଭିଭୂତ ହୋଇ ପଡ଼ିଲେ । ଜ୍ଞାନର ଭଣ୍ଡାର ଡକ୍ଟର ସାହୁଙ୍କ ସହିତ ସଂଘର ସୁପରିଚାଳକ କାର୍ଯ୍ୟଦକ୍ଷ ଶ୍ରୀ ନାୟକଙ୍କ ମିଳନ ପ୍ରକୃତ ଉତ୍କଳ ସଂଘର ଅଭିବୃଦ୍ଧିରେ ସହାୟକ ହେଲା ।

ପ୍ରଥମ ବର୍ଷର 'ସ୍ମାରକୀ'ରେ ପ୍ରକାଶିତ ବହୁ ଉପାଦେୟ ତଥା ଗବେଷଣାତ୍ମକ ଲେଖା ଗୁଡ଼ିକ ବହୁ ସୁନାମଧନ୍ୟ ସାହିତ୍ୟିକ, ଶିକ୍ଷାବିତ୍, ସାମ୍ବାଦିକ, ରାଜନୀତିଜ୍ଞ ତଥା

ବୃଦ୍ଧି ଜୀବୀ ଏବଂ ଓଡ଼ିଶାର ଜନସାଧାରଣଙ୍କୁ ସଂଘ ପ୍ରତି ଆକୃଷ୍ଟ କଲା । ଡକ୍ଟର ସାହୁଙ୍କ ସଫଳ ସମ୍ପାଦନା ହିଁ ଏହାର ମୁଖ୍ୟ କାରଣ । ତାଙ୍କର ପ୍ରେରଣା ଲାଭକରି ମୁଁ ସଂଘ ଦ୍ୱାରା ମଧୁବାବୁଙ୍କ ଏକ ଜୀବନୀ ଗ୍ରନ୍ଥ ପ୍ରକାଶ କରିବା ନିମନ୍ତେ ପ୍ରସ୍ତାବ ଆଗତ କଲି । ଏଥି ନିମନ୍ତେ ଏକ କର୍ମସୂଚୀ ମଧ୍ୟ ପ୍ରସ୍ତୁତ କରି ଡକ୍ଟର ସାହୁ ତାହା ସ୍ମାରକୀର ଦ୍ୱିତୀୟ ସଂଖ୍ୟାରେ ସନ୍ନିବେଶିତ କଲେ । ପ୍ରସ୍ତାବ ଗୃହୀତ ହୋଇଥିଲା କିନ୍ତୁ ବିଭିନ୍ନ କାରଣରୁ ତାହା କାର୍ଯ୍ୟକାରୀ ହୋଇପାରିଲା ନାହିଁ । ପୁଣି ତାଙ୍କର ପ୍ରେରଣାରେ ମଧୁବାବୁ ବ୍ୟବସ୍ଥାପକ ସଭେ ବିଭିନ୍ନ ବ୍ୟବସ୍ଥା ସଭାରେ ଦେଇଥିବା ଭାଷଣକୁ ଏକତ୍ର କରି ଏକ ପୁସ୍ତକ ପ୍ରକାଶ କରିବା ନିମନ୍ତେ ମୋର ଏକ ପ୍ରସ୍ତାବ ସଂଘର କାର୍ଯ୍ୟକାରୀ ସମିତି ଗ୍ରହଣ କଲେ । ତଦନୁସାରେ ଡକ୍ଟର ସାହୁଙ୍କ ପ୍ରିୟଶିଷ୍ୟ ଅଧ୍ୟାପକ ପ୍ରବୋଧ କୁମାର ମିଶ୍ର ଦିଲ୍ଲୀ, ପାଟଣା ଓ କଲିକତା ଯାଇ ସରକାରୀ ଅଭିଲେଖାଗାରରୁ ସମସ୍ତ କାଗଜପତ୍ର ସଂଗ୍ରହ କଲେ । ଏହିସବୁକୁ ମିଶାଇ ଡକ୍ଟର ନବୀନ କୁମାର ସାହୁ ଓ ଡକ୍ଟର ପ୍ରବୋଧ କୁମାର ମିଶ୍ରଙ୍କ ଯୁଗ୍ମ-ସମ୍ପାଦନାରେ Madhusudan Das—The Legislator ନାମରେ ୫୪୦ ପୃଷ୍ଠାର ଏକ ଇଂରାଜୀ ପୁସ୍ତକ ପ୍ରାୟ ପଞ୍ଚାଅଶୀ ହଜାର ଟଙ୍କା ବ୍ୟୟରେ ୧୯୮୦ ମସିହା ନଭେମ୍ବର ନଅ ତାରିଖରେ ପ୍ରଗତି ଉତ୍କଳ ସଂଘ ଦ୍ୱାରା ପ୍ରକାଶିତ ହେଲା । ଏଠାରେ ପ୍ରକାଶ ଯୋଗ୍ୟ ଯେ ଏହି ଦୁରୁହ କାର୍ଯ୍ୟ ଓଡ଼ିଶା ସରକାର ତଥା ଓଡ଼ିଶା ସାହିତ୍ୟ ଏକାଡ଼େମୀ ହାତକୁ ନେଇ ମଧ୍ୟ କରି ପାରିନଥିଲେ ।

ଏହା ମଧ୍ୟରେ ରାଉରକେଲା ରେଲ ଷ୍ଟେସନ ସାମନା ମୁଖ୍ୟ ରାସ୍ତାର ଛକଠାରେ ପ୍ରଗତି ଉତ୍କଳ ସଂଘ ଦ୍ୱାରା ଉତ୍କଳ ଗୌରବ ମଧୁବାବୁଙ୍କ ଏକ ପୂର୍ଣ୍ଣାବୟବ ବ୍ରୋଞ୍ଜ ପ୍ରତିମୂର୍ତ୍ତି ୧୯୭୬ ଅଗଷ୍ଟ ୨୧ ତାରିଖରେ ସ୍ଥାପିତ ହୋଇଅଛି । ଏହି ସାଧୁ ଉଦ୍ୟମ ନିମନ୍ତେ ଯେଉଁମାନେ ସଂଘକୁ ପ୍ରେରଣା ଦେଇଥିଲେ ସେମାନଙ୍କ ମଧ୍ୟରେ ଡକ୍ଟର ସାହୁ ଅନ୍ୟତମ । ତାଙ୍କର ପ୍ରେରଣାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଆର୍ଟଗ୍ୟାଲେରୀରେ ପ୍ରଖ୍ୟାତ ଶିଳ୍ପୀ ଶ୍ରୀ ମୁରଲୀଧର ଟାଲିଙ୍କ ଦ୍ୱାରା ପ୍ରସ୍ତୁତ ମଧୁବାବୁଙ୍କର ଏକ ତୈଳଚିତ୍ର ସଂଘ ଦ୍ୱାରା ସ୍ଥାପିତ ହୋଇଛି । ସମ୍ବଲପୁର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ମଧୁବାବୁଙ୍କ ନାମରେ ଦୁଇଟି ସ୍ୱର୍ଣ୍ଣପଦକ ପ୍ରଚଳନ କରିବା ଉଦ୍ଦେଶ୍ୟରେ ଆବଶ୍ୟକ ଅର୍ଥ ଜମା କରାଯାଇଅଛି ।

୧୯୭୮ ମସିହାରୁ ଆରମ୍ଭ କରି ୧୯୮୫ ମସିହା ପର୍ଯ୍ୟନ୍ତ "ଉତ୍କଳ ଦିବସ" ଉପଲକ୍ଷେ ପ୍ରକାଶିତ ଯେଉଁ 'ସ୍ମାରକୀ'ର ସମ୍ପାଦନା କରିଥିଲେ, ସେଗୁଡ଼ିକ ବର୍ତ୍ତମାନ ଗବେଷକମାନଙ୍କ ବିଶେଷ କାର୍ଯ୍ୟରେ ଲାଗି ପାରୁଛି । ବିଭିନ୍ନ ସମୟରେ ବିଭିନ୍ନ ଉଚ୍ଚ-ପଦବୀରେ ରହି କାର୍ଯ୍ୟବ୍ୟସ୍ତ ଜୀବନ ମଧ୍ୟରେ ପ୍ରଗତି ଉତ୍କଳ ସଂଘ ପାଇଁ ଡକ୍ଟର ସାହୁ ଠିକ୍ ସମୟରେ ନିଜର ବହୁମୂଲ୍ୟ ସମୟରୁ କିୟଦଂଶ ସ୍ମାରକୀ ସମ୍ପାଦନାରେ ବ୍ୟୟ

କରନ୍ତି । ଯେତେବେଳେ ଗ୍ରହରକେଲା ଆସିଲେ ସଂଘର କର୍ମକର୍ତ୍ତାଙ୍କୁ ଡକାଇ ଅଳ୍ପ ସମୟରେ ଅର୍ଦ୍ଧଘଣ୍ଟାର ଏକ ଆଲୋଚନା କରି ବିଭିନ୍ନ ସମସ୍ୟା ତଥା କାର୍ଯ୍ୟକ୍ରମ ବିଷୟରେ ନିଜର ମତାମତ ଓ ଉପଦେଶ ଦେଇ ସଂସ୍କୃତି ସଚେତନ ସଭ୍ୟମାନଙ୍କୁ ଉତ୍ସାହିତ କରୁଥିଲେ । ତାଙ୍କରି ପ୍ରେରଣା ପାଇ ପ୍ରଗତି ଉତ୍କଳ ସଂଘ ବିଭିନ୍ନ କର୍ମସୂଚୀ ହାତକୁ ନେଇ ତହିଁ ମଧ୍ୟରୁ କେତେକ କାର୍ଯ୍ୟକାରୀ କରି ସାରିଛି । ମଧୁବାବୁଙ୍କ ନାମରେ ଡାକ ଟିକଟ ପ୍ରଚଳନ ଓ ଏପ୍ରିଲ ପହିଲାକୁ ଏକ ଛୁଟିଦିନ କରିବାକୁ ସରକାରଙ୍କ ନିକଟରେ ଯଥାର୍ଥଭାବେ ଦାବୀକରି ଏ ସଂଘ ତହିଁରେ କୃତକାର୍ଯ୍ୟ ହୋଇଛି । ଗ୍ରହରକେଲା ଷ୍ଟେସନ ସମ୍ମୁଖର ମାର୍କେଟକୁ "ମଧୁସୂଦନ ମାର୍କେଟ" ଓ ଏହି ମାର୍କେଟର ସାମନାରୁ ଲିଙ୍କରୋଡ ପର୍ଯ୍ୟନ୍ତ ରାସ୍ତାକୁ 'ମଧୁସୂଦନ ମାର୍ଗ' ନାମ ଦିଆଯାଇଛି ଏହି ସଂଘର ପ୍ରସ୍ତାବ ଅନୁଯାୟୀ । ମଧୁବାବୁଙ୍କ ଜୀବନୀ ଓ କାର୍ଯ୍ୟକଳାପକୁ ଭିତ୍ତିକରି ଏକ "ଗବେଷଣା କେନ୍ଦ୍ର" ପ୍ରତିଷ୍ଠା କରିବା ପାଇଁ ସଂଘ ଏକ ଦୂରଦୃଷ୍ଟି କର୍ମସୂଚୀ ଗ୍ରହଣ କରିଛି ଓ ଏଦିଗରେ କିଛିବାଟ ଆଗେଇ ସାରିଛି ।

ପ୍ରଗତି ଉତ୍କଳ ସଂଘ ଏହିପରି ବିଭିନ୍ନ ସଫଳତା ହାସଲ କରି ସମସ୍ତଙ୍କ ପ୍ରଶଂସା ଭାଜନ ହେଉଥିବା ବେଳେ ହଠାତ୍ ଦିନେ ଏକ ଦାରୁଣ ଦୁଃସମ୍ବାଦ ଏହାର ସଭ୍ୟ ତଥା ଶୁଭ ଚିନ୍ତକଙ୍କ ମନରେ ଆଘାତ ଦେଲା । ଖ୍ୟାତନାମା ଐତିହାସିକ ତଥା ସମ୍ବଲପୁର ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଡ଼କ୍ଟର ନବୀନ କୁମାର ସାହୁ ୧୯୮୫ ମସିହା ସେପ୍ଟେମ୍ବର ଦୁଇ ତାରିଖ ସୋମବାର ଦିନ ସକାଳେ ହଠାତ ହୃଦରୋଗରେ ଆକ୍ରାନ୍ତ ହୋଇ ସମ୍ବଲପୁର ଜିଲ୍ଲାର ବରଗଡଠାରୁ ବୁର୍ଲା ମେଡ଼ିକାଲ ହାସପାତାଲକୁ ଆସିବା ବାଟରେ ପରଲୋକକୁ ଗ୍ଭଲିଗଲେ । ପ୍ରଗତି ଉତ୍କଳ ସଂଘ ତାହାର ଏକ ହିତାକାଂକ୍ଷୀଙ୍କୁ ଚିରଦିନ ପାଇଁ ହରାଇଲା । ଏହି ସଂଘ ଥିବା ପର୍ଯ୍ୟନ୍ତ ଡକ୍ଟର ନବୀନ କୁମାର ସାହୁଙ୍କ ଅମର କୀର୍ତ୍ତିକୁ ନିଶ୍ଚୟ ବଞ୍ଚାଇ ରଖିବ, ଏହା ତାହାର ପ୍ରତିଷ୍ଠାତା, ସଭ୍ୟ ତଥା ସଂଘର ଶୁଭଚିନ୍ତକମାନଙ୍କର ଏକାନ୍ତ ବିଶ୍ୱାସ । ପ୍ରଗତି ଉତ୍କଳ ସଂଘ ସାଙ୍ଗରେ ଡ଼କ୍ଟର ନବୀନ କୁମାର ସାହୁଙ୍କୁ ସଂଶ୍ଳିଷ୍ଟ କରାଇବାରେ ମୋର କିଞ୍ଚିତ ଅବଦାନ ନିମନ୍ତେ ମୁଁ ନିଜକୁ ଧନ୍ୟ ମନେକରେ ।

——

# ପ୍ରଗତି ଉତ୍କଳ ସଂଘରେ ମୋର ଅନୁଭୂତି

* ନରେଶ ଚନ୍ଦ୍ର ନାୟକ

ଆମେ ଅନେକ ୩୦ ବର୍ଷରୁ ବେଶୀ ସମୟ ଧରି ରାଉରକେଲାରେ ବସବାସ କରି ରହିଲୁଣି । ଏହି ଦୀର୍ଘସମୟ ଭିତରେ ଆମ ଜୀବନର ସବୁଠାରୁ ମୂଲ୍ୟବାନ ବର୍ଷ ଗୁଡ଼ିକ ମଧ୍ୟ ବିତି ଯାଇଛି । ଏହି ବର୍ଷ ଗୁଡ଼ିକରେ ଆମର ଯେଉଁ ସୁଖ ଦୁଃଖ ଆନନ୍ଦ ନିରାନନ୍ଦର ସମିଶ୍ରଣରେ ବିଭିନ୍ନ ଅନୁଭୂତି ଗୁଡ଼ିକ ହୋଇଛି, ତା ପ୍ରତି ଅବଦାନ ରହିଛି କେବଳ ଆମ ପରିବାରର ସଦସ୍ୟ ମାନଙ୍କର ନୁହେଁ, ଆମର ବନ୍ଧୁ ବାନ୍ଧବ ଏବଂ ସହକର୍ମୀ ମାନଙ୍କର ମଧ୍ୟ । କାରଣ ମଣିଷ ଏକ ସାମାଜିକ ଜୀବ । ବର୍ତ୍ତମାନ ଆମେ ପ୍ରତ୍ୟେକ ଯଦି ନିଜ ମନ ଭିତରେ ଏ ଅନୁଭୂତି ମାନଙ୍କର ଏକ ମୂଲ୍ୟାଙ୍କନ କରୁ, କେଉଁ ଅନୁଭୂତି ଆମର ସାମାଜିକ ଜୀବନକୁ ସରସ ସୁନ୍ଦର କରିବାରେ କେତେ ଦୂର ସାହାଯ୍ୟ କରିଛି । ସେ ତାଲିକାରେ ମୁଁ ପ୍ରଗତି ଉତ୍କଳ ସଂଘ ସହିତ ମୋର ସମ୍ପର୍କକୁ ଏକ ଉଚ୍ଚ ସ୍ଥାନ ଦେବି ।

୧୯୬୮ ମସିହାର ମଧ୍ୟଭାଗ । ମୁଁ ଜର୍ମାନୀରୁ ଫେରି ରାଉରକେଲାରେ କାମ ଆରମ୍ଭ କରିବାର ୨ବର୍ଷ ହୋଇ ନଥାଏ । କୌଣସି ଉଚ୍ଚ ପଦବୀ ନୁହେଁ, ଏକ ସାମାନ୍ୟ ପଦବୀରେ କାମ ଆରମ୍ଭ କରିଥାଏ । ଦିନେ ୮/୧୦ ଜଣ ଯୁବକ ମୋ ବସାରେ ପହଞ୍ଚିଲେ । ସେମାନେ ସମସ୍ତେ କାରିଗର ତାଲିମ ପ୍ରାପ୍ତ କର୍ମବୁସ୍ଥ । ରାଉରକେଲା ଇସ୍ପାତ କାରଖାନାରେ ଏବଂ ତା ଆଗରୁ ଜାମସେଦପୁରରେ ତାଲିମ ପ୍ରାପ୍ତ ଶେଷ କରି ଆସିଥାଆନ୍ତି । ସେମାନେ ନିଜକୁ ପ୍ରଗତି ଉତ୍କଳ ସଂଘର ସଭ୍ୟ ବୋଲି ପରିଚୟ ଦେଲେ ଏବଂ ମୋତେ ଅନୁରୋଧ କଲେ ଏ ଅନୁଷ୍ଠାନର ପଷ୍ଠପଠ ହେବା ପାଇଁ । ମୁଁ ଏ ଅନୁଷ୍ଠାନର ଉଦ୍ଦେଶ୍ୟ ପଚାରି ବୁଝିଲି ଏବଂ କିଛିଏ ଆଶ୍ଚର୍ଯ୍ୟ ହେଲି ମଧ୍ୟ, କାରଣ ସାଧାରଣତଃ ଏସବୁ ଦିଗରେ ଉତ୍ସାହୀ ହୋଇ ବାହାରନ୍ତି ଅଫିସରେ କାମ କରୁଥିବା ଲୋକେ । କାରଖାନରେ କାମ କରୁଥିବା ଲୋକେ ଏ ଦିଗରେ କମ୍ ଆଗ୍ରହ ଦେଖାନ୍ତି ।

ଆଉରି ଗୋଟିଏ କଥା ମୋତେ ଅଡୁଆ ଲାଗିଲା । ତା ହେଉଛି ଅନୁଷ୍ଠାନର ନାମ ଏବଂ ସେ କଥା ମୁଁ ଯୁବକ ମାନଙ୍କୁ କହିଲି ମଧ୍ୟ, ଆମେତ ରାଉରକେଲାରେ ଓଡ଼ିଶାରେ ରହୁଛୁ । ପ୍ରବାସରେ ନୁହେଁ, ସୁତରାଂ ସଂଘର ନାମ ମଧ୍ୟରେ 'ଉତ୍କଳ' ଶବ୍ଦ ଯୋଗ କରିବାର ତାତ୍ପର୍ଯ୍ୟ କଣ ? ତା'ର କାରଣ ସେମାନେ କହିଲେ, ବର୍ଷକ

ପୂର୍ବେ ସେମାନେ କାମ୍‌ସେଦପୁରରେ ଥିଲବେଳେ ସଂଘର ଜନ୍ମ ହୋଇଥିଲା । ମୁଁ କହିଲି, ବେଶ୍ । କିନ୍ତୁ ବର୍ତ୍ତମାନ ତ ସଂଘ ଭୁବନେଶ୍ୱରରେ କାମ କରିବ । ସୁତରାଂ ନାମ ବଦଳାଇବା ବିଷୟରେ ବିଚାର କରିଯାଉ, ସେମାନେ ରାଜିହେଲେ ଏ ବିଷୟ-ଏକ ବୈଠକ ଡାକି ଆଲୋଚନା କରିବା ପାଇଁ । ପରେ ଆଲୋଚନାରେ ମୁଁ ଦେଖିଲି ସଭ୍ୟମାନେ ଜାମସେଦ୍‌ପୁରରେ ଥିବା ବେଳୁ ଏ ନାମ ସହିତ ଏତେ ଭାବବିହ୍ୱଳ ଭାବରେ ଜଡ଼ିତ, ଯେ ନାମ ବଦଳାଇବାକୁ କୁଣ୍ଠିତ । କିନ୍ତୁ ସଂଘର ଉଦ୍ଦେଶ୍ୟ ଉପରେ କୌଣସି ସଂକୀର୍ଣ୍ଣତା ନାହିଁ । ତେଣୁ ମୁଁ ଆଉ ନାମ ବଦଳାଇବା ବିଷୟରେ ଜୋର ଦେଲି ନାହିଁ ଏବଂ ସଭାପତି ହେବାକୁ ରାଜି ହେଲି ।

କ୍ରମଶଃ ମୁଁ ଦେଖିଲି ଏ 'ପିଲାମାନେ' ଯେଉଁ କାମ ହାତକୁ ନେଉଛନ୍ତି, ନିଷ୍ଠାର ସହିତ ସେଥିରେ ଲାଗି ପଡ଼ୁଛନ୍ତି । ଉପରଠାଉରିଆ ସଦସ୍ୟ ସଂଖ୍ୟା ବହୁତ କମ । ତାଛଡ଼ା ଆଉ ପାଞ୍ଚଟା ଅନୁଷ୍ଠାନ ଭଳି ଏଠି ଗୋଷ୍ଠୀ ବିବାଦ ବା ବ୍ୟକ୍ତିବିଶେଷ ଜଣେ ବାହାଦୁରି ନେବାର ଚେଷ୍ଟା କରିବ, ଏସବୁ ନାହିଁ । ସବୁ ପ୍ରଚେଷ୍ଟା ଯେ ସଫଳ ହେଉଛି ତା ନୁହେଁ । କିନ୍ତୁ କୃତକାର୍ଯ୍ୟର ଆନନ୍ଦ ସମସ୍ତଙ୍କର ଏବଂ ବିଫଳତାର ନୈରାଶ୍ୟ ସମସ୍ତଙ୍କର । ନୈରାଶ୍ୟ ପରେ ଆଉ ଥରେ ଚେଷ୍ଟା କରିବାର ଧୈର୍ଯ୍ୟ ଏବଂ ସାହାସର ଅଭାବ ନାହିଁ ।

ମୁଁ ନିଜେ କର୍ମକ୍ଷେତ୍ରରେ ବ୍ୟକ୍ତିଗତ ଜୀବନରେ ଏବଂ ସାମାଜିକ କ୍ଷେତ୍ରରେ ଶୃଙ୍ଖଳାର ପକ୍ଷପାତୀ । ମୋର ଦୃଢ଼ ଧାରଣା କେତେ ଟୁଡ଼ିଏ ଛୋଟ ଛୋଟ ନିୟମ ପାଳନ ଶୃଙ୍ଖଳା ରକ୍ଷା ଦିଗରେ ବହୁତ ସାହାଯ୍ୟ କରେ ଏବଂ ଏ ସବୁର ଯଥେଷ୍ଟ ସାମାଜିକ ପ୍ରଭାବ ରହିଛି । ମୁଁ ଦେଖିଲି ମୋର ଏ ମତକୁ ସଂଘର ସଭ୍ୟମାନେ ଖୁବ୍ ସହଜରେ ଆଦରି ନେଲେ । ଗୋଟିଏ ସାମାନ୍ୟ କଥା ଧରି ନିଆଯାଉ, ସମୟାନୁ-ବର୍ତ୍ତିତା । ଏ ଦିଗରେ ସମଗ୍ର ଭୁବନେଶ୍ୱରରେ ଓଡ଼ିଆ, ଅଣଓଡ଼ିଆ ସମସ୍ତ ଅନୁଷ୍ଠାନ ମାନଙ୍କ ମଧ୍ୟରେ ପ୍ରଗତି ଉତ୍କଳ ସଂଘ ଏକ ଆଦର୍ଶ । ଅନେକ ଭାବିବେ ଏ ଆଉ ବଡ଼ କଥା କ'ଣ, ଚେଷ୍ଟା କଲେ ସମସ୍ତେ କରିପାରିବେ ନିଶ୍ଚୟ, କିନ୍ତୁ ଚେଷ୍ଟା କରନ୍ତି କେତେ ଜଣ ବା କେତୋଟି ଅନୁଷ୍ଠାନ, ବିଶେଷତଃ ଆମ ଦେଶରେ ? ଅନେକ ବିଶ୍ୱାସ କରନ୍ତି ଏ ସବୁ ବିଷୟକୁ ଏତେ ପ୍ରାଧାନ୍ୟ ଦେବାରେ କୌଣସି ଆବଶ୍ୟକତା ନାହିଁ ।

ଆଗରୁ ଯାହା କହିଲି, ସେଥିରୁ କେହି ଯେମିତି ନ ଭାବନ୍ତି ଯେ ପ୍ରଗତି ଉତ୍କଳ ସଂଘ ମଧ୍ୟରେ କେବେ କୌଣସି ମତଭେଦ ହୁଏ ନାହିଁ । ବହୁତ ହୁଏ ବାର୍ଷିକ ସଭାରେ, କାର୍ଯ୍ୟ ନିର୍ବାହୀ ସମିତି ବୈଠକରେ ବହୁ ନୀତିଗତ ବାଦବିବାଦ ହୁଏ ।

ଆଗରୁ ଯାହା କହିଲି, ସେଥିରୁ କେହି ଯେମିତି ନ ଭାବନ୍ତି ଯେ ପ୍ରଗତି ଉତ୍କଳ

ସଂଘ ମଧ୍ୟରେ କେବେ କୌଣସି ମତଭେଦ ହୁଏ ନାହିଁ । ବହୁତ ହୁଏ, ବାର୍ଷିକ ସଭାରେ, କାର୍ଯ୍ୟନିର୍ବାହୀ ସମିତି ବୈଠକରେ ବହୁ ମିଛିଗତ ବାଦବିବାଦ ହୁଏ ଏବଂ ଉଚିତ କଥାରେ କେହି ସମାଲୋଚନାରୁ ବାଦ ପଡ଼ନ୍ତି ନାହିଁ । କିନ୍ତୁ ଥରେ କୌଣସି ବିଷୟରେ ସିଦ୍ଧାନ୍ତ ଗ୍ରହଣ କରାଯିବା ପରେ ଆଉ କେହି ବାଦବିବାଦକୁ ବଢାନ୍ତି ନାହିଁ କିମ୍ବା ଅନ୍ୟମାନଙ୍କ ଆଗରେ ନିଜର ଅଭିଯୋଗ ଗାଇ ବୁଲନ୍ତି ନାହିଁ । ସମସ୍ତେ ପୂର୍ବର ବାଦାନୁବାଦ ଭୁଲିଯାଇ, ସଂଘର ସିଦ୍ଧାନ୍ତି ଅନୁସାରେ କାମରେ ଲଗି ଯାଆନ୍ତି । କେତେଟା ଅନୁଷ୍ଠାନରେ ଏଭଳି ପ୍ରଣାଳୀ ସମସ୍ତେ ମାନି ନେଇଛନ୍ତି ? ଇସ୍ପାତ କାରଖାନାରେ ମଧ୍ୟ ଯଦି ସବୁ କ୍ଷେତ୍ରରେ ଏହା କରାଯାଉଥାଆନ୍ତା, ତା'ହେଲେ କାରଖାନାର ଅଗ୍ରଗତି ଦ୍ରୁତତର ହୁଅନ୍ତା ।

ଯାହାହେଉ ସଂଘର ବାତାବରଣ ମୋତେ ଖୁବ୍ ଭଲ ଲାଗିଲା ଏବଂ କ୍ରମେ ମୁଁ ଯେ କେବଳ ଏହାର ଅନୁଷ୍ଠାନିକ ସଭାପତି ରହିଲି ତା' ନୁହେଁ । ଏହାର କାର୍ଯ୍ୟକଳାପ ସହିତ ଘନିଷ୍ଠ ଭାବରେ ଜଡ଼ିତ ହୋଇପଡ଼ିଲି । ସଂଘ ତରଫରୁ ରାଉରକେଲାର ତଥା ସମଗ୍ର ଓଡ଼ିଶାର ସାଂସ୍କୃତିକ ଓ ସାମାଜିକ କ୍ଷେତ୍ରରେ ଯାହା କାମ କରାଯାଇଛି, ତାର ବିବରଣୀ ଏଠାରେ ଦେବା ମୋର ଉଦ୍ଦେଶ୍ୟ ନୁହେଁ । ଏ ସ୍ମାରକୀରେ ଅନ୍ୟତ୍ର ତାର ବିବରଣୀ ନିଶ୍ଚୟ ଦିଆଯାଇଥିବ । ଏସବୁ କାମରେ କଠିନ ପରିଶ୍ରମ 'ପିଲାମାନେ' କରିଛନ୍ତି । ମୋର ଭୂମିକା ସାଧାରଣତଃ ନୈତିକ ବଳ ଯୋଗାଇବାରେ । ଥରେ 'ଅଶାନ୍ତଗ୍ରହ' ନାଟକରେ ଅଭିନୟ ମଧ୍ୟ କରିଥିଲି । ମନେଅଛି ତତ୍କାଳୀନ ଇସ୍ପାତ କାରଖାନାର ଜେନେରାଲ ମ୍ୟାନେଜର ଶ୍ରୀ ଅଶୋକନାଥ ବାନାର୍ଜି ଏବଂ ତାଙ୍କ ସ୍ତ୍ରୀ ରାତି ୧୧ଟା ପର୍ଯ୍ୟନ୍ତ ବସି ପୁରାନାଟକ ଦେଖିଲେ । ତାର ବହୁବର୍ଷ ପରେ ଶ୍ରୀ ବାନାର୍ଜି କର୍ଣ୍ଣାଟକର ରାଜ୍ୟପାଳ ଥିବା ସମୟରେ ମୁଁ ଓ ମୋର ସ୍ତ୍ରୀ ବାଙ୍ଗାଲୋରରେ ବାନାର୍ଜି ଦମ୍ପତିଙ୍କ ସହିତ ସାକ୍ଷାତ କରିଥିଲୁ । ଶ୍ରୀମତୀ ବାନାର୍ଜି ପଚାରିଲେ, 'ଆଜିକାଲି ଆପଣଙ୍କ କ୍ଲବର ନାଟକ ହେଉଛି ତ ?' 'ଅଶାନ୍ତଗ୍ରହ'ର ନିର୍ଦ୍ଦେଶକ ଜାମସେଦପୁରର ବିମଳ ଚୌଧୁରୀ ଆଉ ଇହଜଗତରେ ନାହାନ୍ତି । ତାଙ୍କର ଅମାୟିକ ବ୍ୟବହାର ଆମର ଚିରଦିନ ମନେ ରହିବ ।

କହିବା ବାହୁଲ୍ୟ, ପ୍ରଗତି ଉତ୍କଳ ସଂଘର ସଭାପତିଭାବେ କାର୍ଯ୍ୟକରି ବହୁ ଆନନ୍ଦ ଲାଭ କରିଛି । ବୋଧହୁଏ ସେଥିପାଇଁ ମୋର ଯେତେ ସମୟ ସଭାପତି ରହିବା ଉଚିତ ଥିଲା ତାଠାରୁ ବେଶୀଦିନ ସଭାପତି ଭାବରେ ରହିଗଲି । ଯେକୌଣସି ଅନୁଷ୍ଠାନର ନେତୃତ୍ୱ ସମୟ ଅନୁସାରେ ବଦଳିବା ଦରକାର । କିନ୍ତୁ ସଂଘର ସଭ୍ୟମାନେ ମୋତେ ଏତେ ସ୍ନେହ କରନ୍ତି ଯେ ସେମାନେ ମୋତେ ଛାଡ଼ିବାକୁ ରାଜି ହେଉନଥିଲେ । ବହୁତ ଥର କହିବା ପରେ ବହୁବର୍ଷ ସଭାପତି ରହିବା ପରେ ମୋତେ ସଭାପତି ପଦରୁ

ଅବ୍ୟାହତ ମିଳିଲା । ଅବଶ୍ୟ ସେତିକିବେଳୁ, ଏବେ ମଧ୍ୟ ଉପଦେଷ୍ଟା ଭାବରେ ସଂଘ ସହିତ ମୋର ସମ୍ପର୍କ ବଜାୟ ରହିଛି ଏବଂ ସେଥିପାଇଁ ମୁଁ ଗର୍ବିତ । ୨୫ ବର୍ଷ କାଳ ମୁଁ ରାଉରକେଲାର ବାହାରେ ଥିଲି, ଦୁର୍ଗାପୁରରେ । ତେଣୁ ୧୯୮୫ ଓ ୧୯୮୬ ଦୁଇ ବର୍ଷ ଉତ୍କଳ ଦିବସ ଓ ମଧୁସୂଦନ ଜୟନ୍ତୀ ଉତ୍ସବରେ ଉପସ୍ଥିତ ନଥିଲି । ୧୯୮୭ ମାର୍ଚ୍ଚ ୩୧ ତାରିଖ ଦିନ ଦୁର୍ଗାପୁରରୁ ଅବସର ଗ୍ରହଣ କରି ଏପ୍ରିଲ ପହିଲା ଦିନ ରାଉରକେଲାରେ ଆସି ପହଞ୍ଚିଲି ଅନ୍ୟ ଏକ କାର୍ଯ୍ୟଭାର ଗ୍ରହଣ କରିବା ପାଇଁ । ରେଳ ଷ୍ଟେସନରେ ଦେଖେ ପ୍ରଗତି ଉତ୍କଳ ସଂଘର ସଭ୍ୟମାନେ ମୋତେ ସ୍ୱାଗତ କରିବା ପାଇଁ ଠିଆହୋଇ ରହିଛନ୍ତି । ସେହିଦିନ ସନ୍ଧ୍ୟାର ଉତ୍କଳ ଦିବସ ଉତ୍ସବରୁ ପୁଣି ସଂଘ ସହିତ ସମ୍ପୃକ୍ତ ରହିବାର ସୌଭାଗ୍ୟ ଲାଭ କରିଛି ।

ଏ ଅନୁଷ୍ଠାନ ପ୍ରତି ମୋର ସଦିଚ୍ଛା ସବୁବେଳେ ରହିବ । ସେଦିନର 'ପିଲାମାନେ' ଆଜି ବୁଢ଼ା ହେବାକୁ ବସିଲେଣି । ଆଉ ସେମାନେ ଅନୁଭବ କରୁଛନ୍ତି ଯେତେ ସଂଖ୍ୟାରେ ଯୁବକମାନେ ସେମାନଙ୍କ କାମ ଆଦରି ନେବା ପାଇଁ ଆଗେଇ ଆସିବାର କଥା, ସେତେ ସଂଖ୍ୟାରେ ଆଗେଇ ଆସୁ ନାହାନ୍ତି । ମୁଁ କିନ୍ତୁ ଆଶାବାଦୀ । ଯେଉଁ କେତେ ଜଣ ଯୁବକ ଆଗେଇ ଆସିଛନ୍ତି, ସେମାନେ ଅନ୍ୟମାନଙ୍କୁ ନିଶ୍ଚୟ ଅନୁପ୍ରାଣିତ କରିବେ । ଆହୁରି ଗୋଟାଏ ଦୁଃଖ ସଭ୍ୟମାନଙ୍କର । ସଂଘର ନିଜର ଘର ଖଣ୍ଡେ ଏ ପର୍ଯ୍ୟନ୍ତ ହୋଇପାରିଲା ନାହିଁ । ମୋର ଆଶା ଏବଂ ଦୃଢ଼ ବିଶ୍ୱାସ ଖୁବ୍ ଶୀଘ୍ର ଏ ଆଶା ମଧ୍ୟ ସଫଳ ହେବ । ତା'ଛଡ଼ା ସମାଜ ଗଠନ କାମ କ'ଣ କେବଳ କୋଠା ତିଆରି କରିବା ଦ୍ୱାରା ସମ୍ଭବ ହୁଏ ? କୋଠା ତିଆରଠାରୁ ଅଧିକ ଦରକାର ମଣିଷ ତିଆରି କରିବା । ଏଇ ମଣିଷ ତିଆରି କରିବାରେ ପ୍ରଗତି ଉତ୍କଳ ସଂଘର ଅବଦାନ ରହିଛି ଏବଂ ଆଶା ଭବିଷ୍ୟତରେ ମଧ୍ୟ ରହିବ । ରାଉରକେଲାବାସୀ ଯେଉଁମାନେ ଏ ଅନୁଷ୍ଠାନ ସମ୍ପର୍କରେ ଆସୁଛନ୍ତି, ସେମାନଙ୍କୁ ସମସ୍ତଙ୍କୁ, ବିଶେଷତଃ ଯୁବସମାଜକୁ, ମୋର ନିବେଦନ ଯେ ଏ ଅନୁଷ୍ଠାନର ଗଠନ ମୂଳକ କାର୍ଯ୍ୟରେ ସହଯୋଗ କରନ୍ତୁ ।



## ପରିଶିଷ୍ଟ-୧

### ପ୍ରଗତି ଉତ୍କଳ ସଂଘର ପ୍ରାରମ୍ଭିକ ସଭ୍ୟବୃନ୍ଦ :

ସର୍ବଶ୍ରୀ ବୃନ୍ଦାବନ ନାୟକ, ଅଂଶୁମାନ ମହାନ୍ତି, ବିରୂପାକ୍ଷ ପାଢ଼ୀ, କୃଷ୍ଣପଦ ମହାନ୍ତି, ବିପିନ ବିହାରୀ ପ୍ରଧାନ, ଶ୍ୟାମଳେନ୍ଦୁ ଦତ୍ତ, ସୌରେନ୍ଦ୍ର ନାଥ ମହାନ୍ତି, ବିଦ୍ୟାଧର ଜେନା, ଜଗନ୍ନାଥ ମିଶ୍ର, ବିମ୍ବାଧର ମହାନ୍ତି, ପ୍ରଦ୍ୟୁମ୍ନ କୁମାର ଆଚାର୍ଯ୍ୟ, ରାଘବ ଚରଣ ମହାନ୍ତି, ବିଶ୍ୱନାଥ ଚକ୍ରବର୍ତ୍ତୀ, ସତ୍ୟନାରାୟଣ ମିଶ୍ର, ଶରତ ଚନ୍ଦ୍ର ମିଶ୍ର, ବିଜୟକୃଷ୍ଣ ମହାପାତ୍ର, କାହ୍ନୁଚରଣ ପଟ୍ଟନାୟକ, ବିପିନ ବିହାରୀ ସାହୁ, ଦିବାକର ମହାନ୍ତି, ବସନ୍ତ କୁମାର ନାୟକ, ହରିଶ୍ଚନ୍ଦ୍ର ପାତ୍ର, ରାମକୃଷ୍ଣ ରାଜଗୁରୁ, ଆଦିକନ୍ଦ ନାୟକ, କଣୋଜ ଚନ୍ଦ୍ର ମିଶ୍ର, ରାଧାକୃଷ୍ଣ ଦାସ, ବିଜୟ ବିହାରୀ ଗଡ଼ତ, ନିରଞ୍ଜନ ଚୌଧୁରୀ, ଦୁଃଖିଶ୍ୟାମ ସାହୁ, ଯଶୋଦାନନ୍ଦନ ସିଂହ, ରାଜେନ୍ଦ୍ର ନାଥ ନନ୍ଦ, ତରଣୀସେନ ସାହୁ, ବାସୁଦେବ ଦାସ, ସୁରେନ୍ଦ୍ର ମୋହନ ପଣ୍ଡା, କ୍ଷେତ୍ରବାସୀ ଜେନା, ସତ୍ୟନାରାୟଣ ମହାନ୍ତି, ନଟବର ସାହୁ, ନବକୁମାର ଜେନା, ହରିନାଥ ପଣ୍ଡା, ଯଦୁନାଥ ଦାସ, ସାଧୁଚରଣ ମିଶ୍ର, ରାମକୃଷ୍ଣ ପ୍ରଧାନ, ଅଟଳ ବିହାରୀ ସାମନ୍ତରାୟ ।

## ପରିଶିଷ୍ଟ-୨

### ପ୍ରଗତି ଉତ୍କଳ ସଂଘର ସଭାପତିବୃନ୍ଦ :

ଶ୍ରୀଯୁକ୍ତ ନରେଶ ଚନ୍ଦ୍ର ନାୟକ—୧୯୫୮-୫୯ରୁ ୧୯୭୮-୭୯
ଶ୍ରୀଯୁକ୍ତ ରମେଶ ଚନ୍ଦ୍ର ପାଢ଼ୀ—୧୯୭୯-୮୦ରୁ ୧୯୮୨-୮୩
ଶ୍ରୀଯୁକ୍ତ ନାରାୟଣ ଆଚାର୍ଯ୍ୟ—୧୯୮୩-୮୪ରୁ ୧୯୮୭-୮୮
ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ମିଶ୍ର - ୧୯୮୮-୮୯ ଓ ୧୯୮୯-୯୦

## ପରିଶିଷ୍ଟ-୩

### ପ୍ରଗତି ଉତ୍କଳ ସଂଘର ସାଧାରଣ ସମ୍ପାଦକବୃନ୍ଦ :

ସର୍ବଶ୍ରୀ ରାଘବ ଚରଣ ମହାନ୍ତି—୧୯୫୮-୫୯, ୧୯୫୯-୬୦ ଓ ୧୯୭୩-୭୪
ବିଦ୍ୟାଧର ଜେନା—୧୯୭୦-୭୧,
କାହ୍ନୁଚରଣ ପଟ୍ଟନାୟକ—୧୯୭୧-୭୨,
ଦେବେନ୍ଦ୍ର ଶତପଥୀ—୧୯୭୨-୭୩,

ସର୍ବଶ୍ରୀ ତରଣୀସେନ ସାହୁ—୧୯୬୪-୬୫, ୧୯୬୫-୬୬, ୧୯୬୬-୬୭
ହରିହର ମହାପାତ୍ର ୧୯୬୬-୬୭
ରାମକୃଷ୍ଣ ପ୍ରଧାନ ୧୯୬୭-୬୮ ଓ ୧୯୮୭-୮୮
ରାଧାନାଥ ରାଉତ—୧୯୬୮-୬୯ ୧୯୬୯-୭୦ ଓ ୧୯୮୫-୮୬
ରମେଶ ଚନ୍ଦ୍ର ମହାନ୍ତି—୧୯୭୦-୭୧, ୭୧-୭୨, ୭୨-୭୩, ୭୩-୭୪, ୭୪-୭୫, ୭୫-୭୬, ୭୯-୮୦ ଓ ୮୦-୮୧
ବନ୍ଧୁପାଣି ପାତ୍ରୀ—୧୯୭୭-୭୮, ୭୮-୭୯ ଓ ୧୯୮୩-୮୪
ବୃନ୍ଦାବନ ନାୟକ—୧୯୮୧-୮୨, ୮୨-୮୩, ୮୪-୮୫, ୮୮-୮୯ ଓ ୮୯-୯୦
କଣୋଇ ମୋହନ କର—୧୯୮୬-୮୭ ।

# ପରିଶିଷ୍ଟ-୪

## ପ୍ରଗତି ଉତ୍କଳ ସଂଘର ଉତ୍କଳ ଦିବସ :

୧୯୬୮—ସ୍ଥାନ : ସାତ ନମ୍ବର ସେକ୍ଟର, କମ୍ୟୁନିଟି ସେଣ୍ଟର ପଛ,
ଅତିଥି : ଡ଼କ୍ଟର ନବୀନ କୁମାର ସାହୁ,
ବକ୍ତା : ଡ଼କ୍ଟର ମନ୍ମଥନାଥ ଦାସ,
ନୃତ୍ୟ : କୁମାରୀ କୁମ୍‌କୁମ ଦାସ, ନୃତ୍ୟଗୁରୁ ଶ୍ରୀ କେଳୁଚରଣ ମହାପାତ୍ର
ସଙ୍ଗୀତ : ସର୍ବଶ୍ରୀ ଭୁବନେଶ୍ୱର ମିଶ୍ର, ଅକ୍ଷୟ ମହାନ୍ତି, ଗୋପାଳ ଚନ୍ଦ୍ର ମହାନ୍ତି ଓ ଶ୍ରୀବତ୍ସ ପଟ୍ଟନାୟକ ।

୧୯୬୯—ସ୍ଥାନ : ସାତ ନମ୍ବର ସେକ୍ଟର କମ୍ୟୁନିଟି ସେଣ୍ଟର ପଡ଼ିଆ
ସଭାନେତ୍ରୀ : ଶ୍ରୀମତୀ ରମାଦେବୀ
ଅତିଥି : ଡକ୍ଟର ନବୀନ କୁମାର ସାହୁ
ମୁଖ୍ୟବକ୍ତା : ଡଃ ଶ୍ରୀରାମଚନ୍ଦ୍ର ଦାଶ, ବକ୍ତା ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା
କଣ୍ଠଶିଳ୍ପୀ : ବାଣୀକଣ୍ଠ ନିମାଇ ଚରଣ ହରିଚନ୍ଦନ ।
ଏକକ ନାଟକ : ଜୟଦେବ, ପରିବେଷଣ—ଶ୍ରୀ ବାଞ୍ଛାନିଧି ଶତପଥୀ
ସମ୍ବର୍ଦ୍ଧନା : ଶ୍ରୀ ଦୋଳଗୋବିନ୍ଦ ଧଳ (କଣ୍ଠଶିଳ୍ପୀ)
ପ୍ରସ୍ତାବ : ମଧୁବାବୁଙ୍କ ଉପରେ ସ୍ମାରକୀ ଡ଼ାକଟିକେଟ ପାଇଁ ଦାବି ।

୧୯୭୦—ସ୍ଥାନ : ଭଞ୍ଜଭବନ, ଉତ୍କଳ ସମ୍ମିଳନୀର 'ନୀଳଚକ୍ର' ପତାକା ଉତ୍ତୋଳନ ଆରମ୍ଭ ।
ସଭାପତି : ଶ୍ରୀ ନୀଳମଣି ସେନାପତି (ଅବସରପ୍ରାପ୍ତ ଆଇ.ସି.ଏସ )
ଅତିଥି : ଡକ୍ଟର ନବୀନ କୁମାର ସାହୁ

ବକ୍ତା : ଡକ୍ଟର ସଦାଶିବ ମିଶ୍ର
ସମ୍ବର୍ଦ୍ଧନା : କୁମାରୀ ମଂଜୁଳା ସାମନ୍ତରାୟ (ଅଭିନୟ ପାଇଁ)
ନୃତ୍ୟ ନାଟିକା : 'କଳାକାରର ସ୍ୱପ୍ନ' ପରିବେଷଣ ' ଆର୍ଯ୍ୟ କଳାମନ୍ଦିର, କାମଦେବପୁର, ଗୁରୁ ବନବିହାରୀ ଆଚାର୍ଯ୍ୟ ଓ ଡକ୍ଟର ମୁକୁନ୍ଦ ପ୍ରଧାନ ।
ମଧୁସୂଦନ ସ୍ମୃତି ପୁରସ୍କାର — ଶ୍ରୀ ମାଥେର ପରିଇକ୍, ନୂଆଗାଁ ହାଇସ୍କୁଲ
ପ୍ରସ୍ତାବ : (କ) ଉତ୍କଳ ଦିବସକୁ ଛୁଟି ଦିବସ ଘୋଷଣା କରାଯାଉ,
(ଖ) ଓଡ଼ିଶାର ନାମ 'ଉତ୍କଳ ପ୍ରଦେଶ' ରଖାଯାଉ ।
ବିଶେଷ ଘଟଣା : ଆଜି ଆଦର୍ଶ ପାଠାଗାରର ସଭାପତି ଶ୍ରୀ କୃଷ୍ଣଚନ୍ଦ୍ର ରଥଙ୍କ ଅନୁରୋଧକ୍ରମେ କୁଳପତି ଡ଼ଃ ସଦାଶିବ ମିଶ୍ର ଭିତ୍ତିଭବନକୁ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କଲେ ।

୧୯୭୧— ଅତିଥି : ଡଃ ନବୀନ କୁମାର ସାହୁ
ବକ୍ତା : ଡଃ ଶ୍ରୀରାମଚନ୍ଦ୍ର ଦାଶ
ସଂଗୀତ : ଶ୍ରୀ ଧନଞ୍ଜୟ ଶତପଥୀ, ଶ୍ରୀ ଭିକାରୀ ବଳ, କୁମାରୀ ତୃପ୍ତି ଦାସ
ମଧୁସୂଦନ ସ୍ମୃତି ପୁରସ୍କାର— ଶ୍ରୀ ସୁରଞ୍ଜିତ କେରକେଟା, ହାତିବାଡ଼ି ହାଇସ୍କୁଲ
ପ୍ରସ୍ତାବ : (କ) ଓଡ଼ିଶାରେ ଦ୍ୱିତୀୟ ଇସ୍ପାତ କାରଖାନା ପ୍ରତିଷ୍ଠା କରାଯାଉ,
(ଖ) ଉତ୍କଳୀୟ ଏକତା ପ୍ରତିଷ୍ଠା ପାଇଁ ଉତ୍କଳ ସମ୍ମିଳନୀକୁ ଉଦ୍‌ଜୀବିତ କରାଯାଉ ।

୧୯୭୨— ସଭାପତି : ପ୍ରଫେସର ଭୁବନେଶ୍ୱର ବେହେରା
ଅତିଥି : ଡଃ ନବୀନ କୁମାର ସାହୁ
ବକ୍ତା : ଶ୍ରୀହର୍ଷ ମିଶ୍ର, ସଂପାଦକ— ପ୍ରଜାତନ୍ତ୍ର
ସମ୍ବର୍ଦ୍ଧନା : କଥାକାର ସୁରେନ୍ଦ୍ର ମହାନ୍ତି (ସାହିତ୍ୟ ପାଇଁ)
ମଧୁସୂଦନ ସ୍ମୃତି ପୁରସ୍କାର : ଶ୍ରୀ ଗାମିଆ ମୁଣ୍ଡା, ଲହୁଣୀପଡା ହାଇସ୍କୁଲ
ଵିଚିତ୍ରା କାର୍ଯ୍ୟକ୍ରମ : ଆର୍ଯ୍ୟ କଳାମନ୍ଦିର, କାମଦେବ ପୁର
ନୃତ୍ୟ : କଥକ ଶିଳ୍ପୀ - ମୋନା ବର

୧୯୭୩— ସଭାପତି : ଜଷ୍ଟିସ୍ ହରିହର ମହାପାତ୍ର
ଅତିଥି ଡଃ ନବୀନ କୁମାର ସାହୁ
ବକ୍ତା : ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ
ସମ୍ବର୍ଦ୍ଧନା : ଆଡ ଭୋକେଟ ବ୍ରଜବଂଧୁ ଦାସ (ସମାଜ ସେବା ପାଇଁ)

ମଧୁସୂଦନ ସ୍ମୃତି ପୁରସ୍କାର : ଶ୍ରୀ କାର୍ତ୍ତିକ ଚଂଦ୍ର ଅମାତ, ବାର୍ଙ୍ଗ ବଜାର
ଜନତା ହାଇସ୍କୁଲ
ସଂଗୀତ : ଶ୍ରୀ ପ୍ରଣବ କୁମାର ପଟ୍ଟନାୟକ
ନୃତ୍ୟ ନାଟିକା 'ଜାଗରଣ'— ରାଉରକେଲା କଳା ପରିଷଦ

୧୯୭୪— ସଭାପତି : ଶ୍ରୀ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ
ବକ୍ତା : ଡକ୍ଟର କୁଂଜ ବିହାରୀ ଦାଶ
ସମ୍ବର୍ଦ୍ଧନା : ଶ୍ରୀ ବିନୋଦ କାନୁନଗୋ (ଜ୍ଞାନମଣ୍ଡଳ ସଂକଳନ ପାଇଁ)
କୁମାରୀ ମିନତୀ ମହାପାତ୍ର (ଅର୍ଜ୍ଜୁନ ପୁରସ୍କାର ବିଜୟିନୀ)
ମଧୁସୂଦନ ସ୍ମୃତି ପୁରସ୍କାର— ଶ୍ରୀ ଭଗବାନ ସା, କେନାଭେଟା ହାଇସ୍କୁଲ
ସଂଗୀତ : ଶ୍ରୀ ଦେବାଶୀଷ ମହାପାତ୍ର, କୁମାରୀ ଇଂଦ୍ରାଣୀ ମିଶ୍ର
ନୃତ୍ୟ : ନୃତ୍ୟ ନାଟିକା 'ମାନସୀ'— କବିଚଂଦ୍ର କଳାକେନ୍ଦ୍ର
ପ୍ରସ୍ତାବ : ରାଉରକେଲାରେ ମଧୁବାବୁଙ୍କର ଏକ ପୂର୍ଣ୍ଣବୟବ ବ୍ରୋଞ୍ଜ ମୂର୍ତ୍ତି
ସ୍ଥାପନ କରାଯାଉ ।

୧୯୭୫—ସଭାପତି : ଅଧ୍ୟାପକ ପ୍ରାଣବନ୍ଧୁ କର
ବକ୍ତା : ଡଃ ପଠାଣି ପଟ୍ଟନାୟକ
ସମ୍ବର୍ଦ୍ଧନା : ଶ୍ରୀ ସାମୁଏଲ ସାହୁ (ବାବି) (ଅଭିନୟ ପାଇଁ)
ମଧୁସୂଦନ ସ୍ମୃତି ପୁରସ୍କାର— ଶ୍ରୀ ମହେନ୍ଦ୍ର ମୁଣ୍ଡାରୀ, ସିହୁଡ଼ିଆ ହାଇସ୍କୁଲ
ସାଂସ୍କୃତିକ କାର୍ଯ୍ୟକ୍ରମ—ନଟରାଜ କଳା ପରିଷଦ ଓ ରାଉରକେଲା କଳାପରିଷଦ
ପ୍ରସ୍ତାବ : ଦକ୍ଷିଣ ପୂର୍ବ ରେଳବାଇର ସଦର କାର୍ଯ୍ୟାଳୟକୁ ଓଡ଼ିଶାକୁ
ସ୍ଥାନାନ୍ତର କରାଯାଉ ।
(କ) ପାରଳା ମହାରାଜା ଓ ବୀର ସୁରେଂଦ୍ର ସାଏଙ୍କ ଉପରେ
ସ୍ମାରକୀ ଡାକ ଟିକେଟ ପ୍ରଚଳନ କରାଯାଉ ।
(ଖ) ପାରାଦ୍ୱୀପ ବଂଦର ସଂପ୍ରସାରଣ କରାଯାଉ ଓ ସେଠାରେ
ସାର କାରଖାନା ଏବଂ ଜାହାଜ ତିଆର କାରଖାନା
କରାଯାଉ ।

୧୯୭୬—ସଭାପତି : ଡକ୍ଟର ରାଧାନାଥ ରଥ, ସଂପାଦକ - ସମାଜ
ଅତିଥି : ଡକ୍ଟର ନବୀନ କୁମାର ସାହୁ
ବକ୍ତା : ଶ୍ରୀ ରାଜକିଶୋର ହୋତା

ସମ୍ବର୍ଦ୍ଧନା : ଶ୍ରୀ ଭଗବାନ ମେହେର (ସାହିତ୍ୟ ଓ ସମାଜ ସେବା ପାଇଁ)
କୁମାରୀ ଉଷାରାଣୀ ମିଶ୍ର (କ୍ରୀଡ଼ା ପାଇଁ)

ମଧୁସୂଦନ ସ୍ମୃତି ପୁରସ୍କାର : ଶ୍ରୀ ଗୋପାଳ ଗଜପତି, ବଣ୍ଡା ହାଇସ୍କୁଲ
ସଂଗୀତ : ଶ୍ରୀମତୀ ଆରତି ମିଶ୍ର, ଶ୍ରୀ ବାଳକୃଷ୍ଣ ଦାଶ
ନୃତ୍ୟ : 'ଶ୍ରୀଯୁକ୍ତା ଚଣ୍ଡାଳୁଣୀ' ନୃତ୍ୟ ନାଟିକା—ରାଉରକେଲା କଳାପରିଷଦ
ପ୍ରସ୍ତାବ : ବିମଳାଗଡ଼—ତାଳଚେର ରେଳପଥ ନିର୍ମାଣ କରାଯାଉ

୧୯୭୭— ସକାଳେ ମଧୁବାବୁଙ୍କ ମୂର୍ତ୍ତିରେ ମାଲ୍ୟାର୍ପଣ ଆରମ୍ଭ
ସଭାପତି : ଜଷ୍ଟିସ ନବକୁମାର ଦାସ
ଅତିଥି : ଡଃ ନବୀନ କୁମାର ସାହୁ
ବକ୍ତା : ଡଃ ମନ୍ମଥ ନାଥ ଦାସ
ସମ୍ବର୍ଦ୍ଧନା : ଶ୍ରୀ ତାରିଣୀ ଚରଣ ପାତ୍ର (ଓଡ଼ିଶୀ ସଂଗୀତ ପାଇଁ)
ଓ ଶ୍ରୀ ପୀତବାସ ପାଣିଗ୍ରାହୀ (ଶିକ୍ଷକତା ପାଇଁ)
ମଧୁସୂଦନ ସ୍ମୃତି ପୁରସ୍କାର— ଶ୍ରୀ ଜଗନ୍ନାଥ ମାହି, କଳୁଂଗା ହାଇସ୍କୁଲ
ରଚନା କାର୍ଯ୍ୟକ୍ରମ : 'ପାଇକ ନୃତ୍ୟ ଓ ରଣପା ନୃତ୍ୟ—ନରେନ୍ଦ୍ରପୁର
କଳାବିକାଶ କେନ୍ଦ୍ର ।
ପ୍ରସ୍ତାବ : ସମ୍ବଲପୁର - ତାଳଚେର ରେଲରାସ୍ତା ନିର୍ମାଣ କରାଯାଉ

୧୯୭୮— ସଭାପତି : ପ୍ରଫେସର ବାମାଚରଣ ଦାସ
ବକ୍ତା : ଡକ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକ
ସମ୍ବର୍ଦ୍ଧନା : ଶ୍ରୀ ସାଧୁ ମେହେର (ଚଳଚ୍ଚିତ୍ରରେ ଅଭିନୟ ପାଇଁ)
ଗୁରୁ ଶ୍ରୀ ବଂଶୀଧର ଦ୍ୱିବେଦୀ (ନୃତ୍ୟ ଶିକ୍ଷାଦାନ ପାଇଁ)
ମଧୁସୂଦନ ସ୍ମୃତି ପାଇଁ— ଶ୍ରୀ ବିନୋଦ ନାୟକ, ଯୋଡାକୁଦର ହାଇସ୍କୁଲ
ଗୋପବନ୍ଧୁ ସ୍ମୃତି ପୁରସ୍କାର : କୁମାରୀ ପ୍ରମିଳା କଣାଇ, ଖଣ୍ଡୁଗାଁ ହାଇସ୍କୁଲ
ସାଂସ୍କୃତିକ କାର୍ଯ୍ୟକ୍ରମ ସୌଖୀନ କଳାକାର ସଂଘ, ବରଗଡ଼
ପ୍ରସ୍ତାବ—(୧) ରାଉରକେଲାରେ ଆଉ ଗୋଟିଏ ସରକାରୀ କଲେଜ ପ୍ରତିଷ୍ଠା କରାଯାଉ ।
(୨) ଝାରସୁଗୁଡ଼ାଠାରେ ଏକ ରେଲବାଇ ଡିଭିଜନ ପ୍ରତିଷ୍ଠା ହେଉ
(୩) ପାରଳା ମହାରାଜା, ସୁରେନ୍ଦ୍ର ସାଏ, ବକ୍ସି ଜଗବନ୍ଧୁଙ୍କ ଉପରେ ସ୍ମାରକୀ ଡାକଟିକେଟ ଚଳାଯାଉ ।

ବିଶେଷ ଘଟଣା : ଚଳିତ ବର୍ଷଠାରୁ ମଧୁବାବୁଙ୍କ ଉପରେ ହାଇସ୍କୁଲ ଛାତ୍ରଛାତ୍ରୀଙ୍କ ମଧ୍ୟରେ ପ୍ରବନ୍ଧ ଓ ବକ୍ତୃତା ପ୍ରତିଯୋଗିତା ଆରମ୍ଭ କରାଗଲା । ଚଳିତ ବର୍ଷ ପଣ୍ଡିତ ଗୋପବନ୍ଧୁ ଜନ୍ମ ଶତବାର୍ଷିକୀ ଉପଲକ୍ଷେ ଏହି ବର୍ଷ ଠାରୁ ସୁନ୍ଦରଗଡ ଜିଲ୍ଲାରେ ମେଧାବୀ ଆଦିବାସୀ ଛାତ୍ରଛାତ୍ରୀଙ୍କୁ ଗୋପବନ୍ଧୁ ସ୍ମୃତି ପୁରସ୍କାର ପ୍ରଦାନର ବ୍ୟବସ୍ଥା କରାଗଲେ ।

୧୯୭୯—ଓଡ଼ିଶା ସରକାର ଓ ପ୍ରଗତି ଉତ୍କଳ ସଂଘର ମିଳିତ ସହଯୋଗରେ ଉତ୍ସବ ପାଳିତ ।

ପ୍ରଥମ ଦିନ—ସଭାପତି : ଡଃ ସଚ୍ଚି ରାଉତରାୟ
ବକ୍ତା : ଡଃ ସଦାନନ୍ଦ ଚୌଧୁରୀ
ମୁଖ୍ୟ ଅତିଥି : ଶ୍ରୀ ନୀଳମଣି ରାଉତରାୟ (ମୁଖ୍ୟମନ୍ତ୍ରୀ)
ଅତିଥି : ଶ୍ରୀ ଇଗ୍‌ନେସ ମାଝି (ମନ୍ତ୍ରୀ), ବ୍ରଜକିଶୋର ମହାନ୍ତି (ଏମ୍.ଏଲ୍.ଏ)
ପ୍ରେମସ୍ୱନ୍ଦ ଭଗତ (ଏମ୍.ଏଲ୍.ଏ), ବେଦପ୍ରକାଶ ଅଗ୍ରୱାଲ (ଏମ୍.ଏଲ୍.ଏ)
ନୃତ୍ୟ : ସଂଗୀତା ମହାପାତ୍ର
ସଂଗୀତ : ଶ୍ରୀ ଅକ୍ଷୟ ମହାନ୍ତି ଓ ସାଥୀ

ଦ୍ୱିତୀୟ ଦିନ—ସଭାପତି : ହରମୋହନ ପଟ୍ଟନାୟକ (ଅତିରିକ୍ତ ଜିଲ୍ଲାପାଳ)
ବକ୍ତା : ଡଃ ସଦାନନ୍ଦ ଚୌଧୁରୀ
ସାଂସ୍କୃତିକ କାର୍ଯ୍ୟକ୍ରମ– ଘୋଡା ନାଚ, ଚୌଦ୍ୱାର ଓ ସମ୍ବଲପୁରୀ ନାଚ, କରଗତ

ମଧୁସୂଦନ ଜୟନ୍ତୀ—ଅପ୍ରେଲ ୨୮, :
ସଭାପତି : ଶ୍ରୀଯୁକ୍ତ ହିରଣ୍ୟ କୁମାର ମହାନ୍ତି
ମୁଖ୍ୟବକ୍ତା : ଅଧ୍ୟାପକ ଶ୍ରୀ ନିତ୍ୟାନନ୍ଦ ନାୟକ
ସମ୍ବର୍ଦ୍ଧନା : ଶ୍ରୀ ପଞ୍ଚାନନ ଗନ୍ତାୟତ (କ୍ରୀଡାବିତ୍)
ମଧୁସୂଦନ ସ୍ମୃତି ପୁରସ୍କାର—ଶ୍ରୀ ଜୋନ ଗୋରେଙ୍ଗ, ପି.ଏସ୍. ହାଇସ୍କୁଲ ଗୁରୁଣ୍ଡିଆ
ସାଂସ୍କୃତିକ କାର୍ଯ୍ୟକ୍ରମ : ଅନୁଗୁଳ (ଖିଣ୍ଡା)ର ଦଣ୍ଡନୃତ୍ୟ

୧୯୮୦—ସଭାପତି : ଡଃ ନବୀନ କୁମାର ସାହୁ
ବକ୍ତା : ଡଃ ଖଗେଶ୍ୱର ମହାପାତ୍ର
ସମ୍ବର୍ଦ୍ଧନା : ଶ୍ରୀଯୁକ୍ତ କାର୍ତ୍ତିକ ମୁଣ୍ଡା (ସମାଜ ସେବା ପାଇଁ)
ଶ୍ରୀଯୁକ୍ତ ପବିତ୍ର ମୋହନ ମହାନ୍ତି (ଚେସ୍‌ଖେଳ)
ମଧୁସୂଦନ ସ୍ମୃତି ପୁରସ୍କାର- ଶ୍ରୀ ସନାତନ ବରୁଆ, ବଡଗାଁ ହାଇସ୍କୁଲ

ଗୋପବନ୍ଧୁ ସ୍ମୃତି ପୁରସ୍କାର ଶ୍ରୀ ମିହିର କସାନ, କୁରୁମ କେଲା
ପି.ଏସ୍. ମି ଇ ସ୍କୁଲ, ଲେଫ୍ରିପଡା

ସାଂସ୍କୃତିକ କାର୍ଯ୍ୟକ୍ରମ - ଢେଙ୍କାନାଳର ଦଣ୍ଡ ନୃତ୍ୟ

ପ୍ରସ୍ତାବ : (୧) ଓଡ଼ିଆ ଭାଷାକୁ ସରକାରୀ ଭାଷା କରାଯାଉ ଓ ବିଶ୍ୱବିଦ୍ୟାଳୟ ଶିକ୍ଷାଦାନର ମାଧ୍ୟମ ଓଡ଼ିଆ ହେଉ ।

(୨) ରାଉରକେଲାରେ ଏକ ମେଡ଼ିକାଲ କଲେଜ ବସାଯାଉ ।

୧୯୮୧—ସଭାପତି : ଡ଼ଃ ନବୀନ କୁମାର ସାହୁ, କୁଳପତି

ମୁଖ୍ୟବକ୍ତା : ଡ଼ଃ କୃଷ୍ଣ ପ୍ରସାଦ ମିଶ୍ର

ବକ୍ତା : ଡ଼ଃ ପ୍ରବୋଧ କୁମାର ମିଶ୍ର

ସମ୍ବର୍ଦ୍ଧନା : ଡ଼ଃ ମୁରଲୀଧର ଝାଲ (ଚିତ୍ରଶିଳ୍ପୀ)

ମଧୁସୂଦନ ସ୍ମୃତି ପୁରସ୍କାର-ଶ୍ରୀ ଜୟ ଶଙ୍କର ଜେନ୍ଦ୍ରାର, ବିରପାଣି ହାଇସ୍କୁଲ

ଗୋପବନ୍ଧୁ ସ୍ମୃତି ପୁରସ୍କାର - ଶ୍ରୀ ସନ୍ତୋଷ କଷାନ,
ଗଣ୍ୟ ପରିବହନ ବିଦ୍ୟାଳୟ, ରାଉରକେଲା

ସାଂସ୍କୃତିକ କାର୍ଯ୍ୟକ୍ରମ : 'ବର୍ଣ୍ଣିନୃତ୍ୟ' ଆଦିବାସୀ ସାଂସ୍କୃତିକ ଅନୁଷ୍ଠାନ, କୁଚିଣ୍ଡା

ପ୍ରସ୍ତାବ : (୧) ଯଶପୁର—ବାଂଶପାଣି ରେଳପଥକୁ ପୂର୍ଣ୍ଣାଙ୍ଗ କରାଯାଉ ।

(୨) ବନ୍ଦର ଭିତ୍ତିକ ପାରାଦ୍ୱୀପ ଇସ୍ପାତ କାରଖାନାକୁ କାର୍ଯ୍ୟକାରୀ କରାଯାଉ ।

୧୯୮୨ - ସଭାପତି ମାନ୍ୟବର ପ୍ରଧାନ ବିଚାରପତି ଶ୍ରୀ ରଙ୍ଗନାଥ ମିଶ୍ର

ମୁଖ୍ୟ ବକ୍ତା : ଡ଼ଃ ଶ୍ରୀରାମଚନ୍ଦ୍ର ଦାଶ

ବକ୍ତା : ଡ଼ଃ ପ୍ରବୋଧ କୁମାର ମିଶ୍ର

ଅତିଥି : ଶ୍ରୀ ହରମୋହନ ପଟ୍ଟନାୟକ (ଜିଲ୍ଲାପାଳ)

ସମ୍ବର୍ଦ୍ଧନା : ଡ଼ଃ ନବୀନ କୁମାର ସାହୁ

ମଧୁସୂଦନ ସ୍ମୃତି ପୁରସ୍କାର— ଶ୍ରୀ ସାର କେରକେଟା, ବନ୍ଧମୁଣ୍ଡା ହାଇସ୍କୁଲ

ଗୋପବନ୍ଧୁ ସ୍ମୃତି ପୁରସ୍କାର - ଶ୍ରୀ ଚନ୍ଦ୍ରମୋହନ ମାଝି,
ନୟାବଜାର ମି.ଇ. ସ୍କୁଲ

ସାଂସ୍କୃତିକ କାର୍ଯ୍ୟକ୍ରମ—ଘୁମୁରା ନାଚ, କଳାହାଣ୍ଡି

ସଙ୍ଗୀତ : ଜନ୍ମୁପମ ପୁହାଣ ଓ ତାଙ୍କ ଦଳ ।

ପ୍ରସ୍ତାବ - (୧) ରାଉରକେଲା ସରକାରୀ କଲେଜରେ ଏମ୍.ଏ. ଶ୍ରେଣୀ ଖୋଲୁ

(୨) ଓଡ଼ିଶାରେ ଆଉ ଟିଗୋଟିଏ ଇଞ୍ଜିନିୟରିଂ କଲେଜ ଓ ଅଧିକ ଟେକ୍‌ନିକାଲ ସ୍କୁଲ ଖୋଲୁ ।

(୩) ଝାରସୁଗୁଡ଼ାଠାରେ ରେଳ ଡ଼ିଭିଜନ ପ୍ରତିଷ୍ଠା ହେଉ ।

୧୯୮୩—ସଭାପତି : ଡଃ ଶ୍ରୀନିବାସ ସାହୁ (କୁଳପତି)
ବକ୍ତା : ଶ୍ରୀ ସୁରେନ୍ଦ୍ର ମହାନ୍ତି
ସମ୍ବର୍ଦ୍ଧନା : ଶ୍ରୀ ପଞ୍ଚାନନ ଶତପଥୀ (କ୍ରୀଡ଼ା)
ମଧୁସୂଦନ ସ୍ମୃତି ପୁରସ୍କାର : ଶ୍ରୀ ଚିତ୍ତରଞ୍ଜନ ବେହେରା, ଗୋବିନ୍ଦପୁର ପଞ୍ଚାୟତ ହାଇସ୍କୁଲ ।
ଗୋପବନ୍ଧୁ ସ୍ମୃତି ପୁରସ୍କାର : ନବୀନ ଚନ୍ଦ୍ର ଆଧା, ରାଉରକେଲା ରେସିଡେନ୍‌ସିଆଲ ସେବାଶ୍ରମ
ପ୍ରସ୍ତାବ : (୧) ବିମଳାଗଡ଼— ତାଳଚେର ରେଳପଥ ନିର୍ମାଣ କରାଯାଉ,
(୧) ରାଉରକେଲାରେ ମେଡ଼ିକାଲ କଲେଜ ପ୍ରତିଷ୍ଠା କରାଯାଉ ।
ରଜତ ଜୟନ୍ତୀ — ସଭାପତି : ଶ୍ରୀ ନରେଶ ଚନ୍ଦ୍ର ନାୟକ,
ଅତିଥି : ଶ୍ରୀ ଅରବିନ୍ଦ ବେହେରା, ଅତିରିକ୍ତ ଜିଲ୍ଲାପାଳ,
ସଂଗୀତ : କୃଷ୍ଣା ପଟେଲ, ଜିତେନ୍ଦ୍ର ହରପାଲ, ଭାନ୍‌ସେନ୍ ସିଂହ, ନିରୁପମ ପ୍ରଧାନ ।

୧୯୮୪—ସକାଳ କାର୍ଯ୍ୟକ୍ରମରେ ମଧୁବାବୁଙ୍କ ପ୍ରତିମୂର୍ତ୍ତି ସହିତ ଗୋପବନ୍ଧୁଙ୍କ ପ୍ରତିମୂର୍ତ୍ତିରେ ମାଲ୍ୟାର୍ପଣ,
ସଭାପତି : ଡଃ ଖଗେଶ୍ୱର ମହାପାତ୍ର
ମୁଖ୍ୟବକ୍ତା : ଡଃ ଗୋପାଳ ଚନ୍ଦ୍ର ମିଶ୍ର
ବକ୍ତା : ଅଧ୍ୟାପକ ଶ୍ରୀଚରଣ ମହାନ୍ତି
ସମ୍ବର୍ଦ୍ଧନା : ଶ୍ରୀ ଲକ୍ଷ୍ମଣ ମିଶ୍ର (ସମାଜ ସେବା ଓ ଲୋକପ୍ରିୟ ଆୟୁର୍ବେଦ ଗ୍ରନ୍ଥ ପ୍ରକାଶ ପାଇଁ)
ଶ୍ରୀ ଦାଶରଥି ପଟ୍ଟନାୟକ (ସମାଜ ସେବା ଓ ପାଠାଗାର ପ୍ରତିଷ୍ଠା, ସଂଗ୍ରହ କାର୍ଯ୍ୟ)
ମଧୁସୂଦନ ସ୍ମୃତି ପୁରସ୍କାର : ଶ୍ରୀ ଅନାମ ଅମାତ, କୁଆଁରମୁଣ୍ଡା ହରିହର ହାଇସ୍କୁଲ
ଗୋପବନ୍ଧୁ ସ୍ମୃତି ପୁରସ୍କାର : କୁମାରୀ କବିତା ବେହେରା, ବେନ୍ଦ୍ରିକେଲା ସି. ଏସ୍. ସି. ଇ. ସ୍କୁଲ
ସାଂସ୍କୃତିକ କାର୍ଯ୍ୟକ୍ରମ : କବିଚନ୍ଦ୍ର କଳାକେନ୍ଦ୍ର
ପ୍ରସ୍ତାବ—ଗୋପବନ୍ଧୁ ଓ ମଧୁସୂଦନଙ୍କ ଉପରେ ପ୍ରାମାଣିକ ଚଳଚ୍ଚିତ୍ର ପ୍ରସ୍ତୁତ ହେଉ, ରାଉରକେଲାରେ ମେଡ଼ିକାଲ କଲେଜ ପ୍ରତିଷ୍ଠା କରାଯାଉ

୧୯୮୫ — ସଭାପତି : ଡଃ ରାମଚନ୍ଦ୍ର ମିଶ୍ର (ଫଡୁରାକନ୍ଦ)
ମୁଖ୍ୟ ଅତିଥି : ଶ୍ରୀ କ୍ଷେତ୍ରବାସୀ କର, ଅତିରିକ୍ତ ଜିଲ୍ଲାପାଳ

ମୁଖ୍ୟ ବକ୍ତା : ଡ଼ଃ ନିତ୍ୟାନନ୍ଦ ଶତପଥୀ

ବକ୍ତା : ଅଧ୍ୟାପକ ଶ୍ରୀଚରଣ ମହାନ୍ତି

ସମ୍ବର୍ଦ୍ଧନା : ଶ୍ରୀ ବାବୁଲାଲ ଦୋଶୀ (କଳାର ବିକାଶ ପାଇଁ ଓ ସମାଜ ସେବା ପାଇଁ)

ଶ୍ରୀ ଫତୁରାନନ୍ଦ (ବ୍ୟଂଗ ସାହିତ୍ୟ ପାଇଁ)

ଶ୍ରୀ ହେମନ୍ତ ପଟେଲ (କ୍ରୀଡ଼ା ପାଇଁ)

ମଧୁସୂଦନ ସ୍ମୃତି ପୁରସ୍କାର : ଶ୍ରୀ ହୀରାଲାଲ ହାତି ଦେଓଗାଁ ଉତ୍କଳମଣି ହାଇସ୍କୁଲ

ଗୋପବନ୍ଧୁ ସ୍ମୃତି ପୁରସ୍କାର : ଶ୍ରୀ ନାରାୟଣ ସିଂହ ମୁଣ୍ଡାରୀ, ଦେଓକରଣ ସରକାରୀ ଟି.ଆର.ଡବ୍ଲ୍ୟୁ ହାଇସ୍କୁଲ

ସାଂସ୍କୃତିକ କାର୍ଯ୍ୟକ୍ରମ—'ଭାରତଲୀଳା' ବଟେଶ୍ୱର କଳା ସଂସଦ, ଗଞ୍ଜାମ

ବିଶେଷ ଘଟଣା—ସ୍ମାରକୀ 'ଉତ୍କଳ ଗୌରବ' ନାମରେ ଡ଼ିମାଇ $\frac{1}{8}$ ଆକାର ହେଲା । ପଣ୍ଡିତ ନୀଳକଣ୍ଠ ବକ୍ତୃତା ଓ ପ୍ରବନ୍ଧ ପ୍ରତିଯୋଗିତା ଆରମ୍ଭ ।

୧୯୮୬—ସଭାପତି : ଶ୍ରୀ ନିତ୍ୟାନନ୍ଦ ମହାପାତ୍ର

ମୁଖ୍ୟବକ୍ତା : ଡଃ ନୀଳାଦ୍ରି ଭୂଷଣ ହରିଚନ୍ଦନ

ବକ୍ତା : ଅଧ୍ୟାପକ ଶ୍ରୀଚରଣ ମହାନ୍ତି

ସମ୍ବର୍ଦ୍ଧନା : ଡଃ ସତ୍ୟନାରାୟଣ ରାଜଗୁରୁ (ଐତିହାସିକ)

ମଧୁସୂଦନ ସ୍ମୃତି ପୁରସ୍କାର—ଶ୍ରୀ ବଳଭଦ୍ର ଓରାମ, ଲଠିକଟା ଦେଓକରଣ ବିଦ୍ୟାପୀଠ

ଗୋପବନ୍ଧୁ ସ୍ମୃତି ପୁରସ୍କାର—ଶ୍ରୀ ଗୀରାମ ପୁର୍ତ୍ତି, କାଲଟା ପି. ଏସ୍. ମି. ଇ ସ୍କୁଲ

ସାଂସ୍କୃତିକ କାର୍ଯ୍ୟକ୍ରମ ମିଲ୍ଲକ ସର୍କଲ, ରାଉରକେଲା ।

୧୯୮୭—ସଭାପତି : ଶ୍ରୀ ବିପିନ୍ ବିହାରୀ ମିଶ୍ର, ଡ଼ି.ଆଇ.ଜି. ସି.ଆଇ.ଏସ୍.ଏଫ୍

ମୁଖ୍ୟବକ୍ତା : ଶ୍ରୀ ଚନ୍ଦ୍ରଶେଖର ରଥ

ବକ୍ତା : ଡଃ ପ୍ରବୋଧ କୁମାର ମିଶ୍ର

ବକ୍ତା : ଅଧ୍ୟାପକ ଶ୍ରୀଚରଣ ମହାନ୍ତି ।

ସମ୍ବର୍ଦ୍ଧନା : ଶ୍ରୀ ବିପ୍ରଚରଣ ମହାନ୍ତି (ଶିଳ୍ପୀ ସ୍ଥପତି)

ମଧୁସୂଦନ ସ୍ମୃତି ପୁରସ୍କାର – ସୁଶୀଳା କୁମାରୀ ବାଖଲା, ଲୁହାକେରା ହାଇସ୍କୁଲ

ଗୋପବନ୍ଧୁ ସ୍ମୃତି ପୁରସ୍କାର— ଶ୍ରୀ ଭୀମସେନ ହୁଡୁ, କୋହ୍ନଟୋଲି ଉଚ୍ଚ
ପ୍ରାଥମିକ ବିଦ୍ୟାଳୟ, ନୂଆଗାଁ

ସାଂସ୍କୃତିକ କାର୍ଯ୍ୟକ୍ରମ—'ସୁବର୍ଣ୍ଣଚ୍ଛାୟା' ନାଟ୍ୟ ସଂସଦ, ଖମାର, ପାଲଲହଡ଼ା

୧୯୮୮—ସଭାପତି : ଶ୍ରୀ ନରେଶ ଚନ୍ଦ୍ର ନାୟକ

ବକ୍ତା : ମହାପାତ୍ର ନୀଳମଣି ସାହୁ, ସଭାପତି, ଓଡ଼ିଶା ସାହିତ୍ୟ ଏକାଡ଼େମୀ

ଅତିଥି : ଏମ୍. ସି. ଦେ. ଭଣ୍ଡାର, ଏମ୍. ଡି. ରାଉରକେଲା ଷ୍ଟିଲପ୍ଲାଣ୍ଟ

ସମ୍ବର୍ଦ୍ଧନା : କବି ଶ୍ରୀ କ୍ଷେତ୍ରବର ନାୟକ, ସୁନ୍ଦରଗଡ଼

ମଧୁସୂଦନ ସ୍ମୃତି ପୁରସ୍କାର- ସୁଶୀଳ କୁମାର ମାରଣ୍ଡି, ହାତିବନ୍ଧ ଯୁକ୍ତ ଏମ୍.ଇ
ସ୍କୁଲ, ରାଉରକେଲା

ଗୋପବନ୍ଧୁ ସ୍ମୃତି ପୁରସ୍କାର—ଶ୍ରୀ ରୋମାଲ ଶ୍ରଦ୍ଧା ତିର୍କି, ମହନମୁସ
ଏମ୍.ଇ ସ୍କୁଲ

ସାଂସ୍କୃତିକ କାର୍ଯ୍ୟକ୍ରମ—'ଛଉନୃତ୍ୟ' ମୟୂରଭଞ୍ଜ

୧୯୮୯—ସଭାପତି : ଶ୍ରୀ ଗଣେଶ୍ୱର ଦାସ, ଅଧ୍ୟକ୍ଷ, ରାଉରକେଲା ସରକାରୀ ମହାବିଦ୍ୟାଳୟ

ମୁଖ୍ୟବକ୍ତା : ଡଃ ପବିତ୍ର ମୋହନ ନାୟକ

ସମ୍ବର୍ଦ୍ଧନା : ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ର (ସାହିତ୍ୟ ଓ ସଂସ୍କୃତି ପାଇଁ)

ମଧୁସୂଦନ ସ୍ମୃତି ପୁରସ୍କାର : ଛନ୍ଦା କେରକେଟା, ଲୁହାକେରା ହାଇସ୍କୁଲ

ଗୋପବନ୍ଧୁ ପୁରସ୍କାର : କୁମାରୀ ନନ୍ଦ ମୁଣ୍ଡା, ପିଏସ ଏମଇ ସ୍କୁଲ, ଲହୁଣୀପଡ଼ା

ସାଂସ୍କୃତିକ କାର୍ଯ୍ୟକ୍ରମ — 'ଚନ୍ଦ୍ରଭାଗାର ସ୍ୱପ୍ନ' (ପ୍ରଗତି ଉତ୍କଳ ସଂଘ ଦ୍ୱାରା
ପ୍ରସ୍ତୁତ ନାଟକ)

୧୯୯୦—ସଭାପତି : ଶ୍ରୀ ନରେଶ ଚନ୍ଦ୍ର ନାୟକ

ମୁଖ୍ୟ ଅତିଥି : ପ୍ରଫେସର ରାମଚନ୍ଦ୍ର ରାଉତ

ମୁଖ୍ୟ ବକ୍ତା : ମହାପାତ୍ର ଯତୀନ୍ଦ୍ର କୁମାର

ବକ୍ତା : ଡକ୍ଟର ଶ୍ରୀଚରଣ ମହାନ୍ତି

ସମ୍ବର୍ଦ୍ଧନା : ଶିଳ୍ପ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଦିଲ୍ଲୀପ ରାୟଙ୍କ ନାଗରିକ ସମ୍ବର୍ଦ୍ଧନା

ସାଂସ୍କୃତିକ କାର୍ଯ୍ୟକ୍ରମ – 'କୁତପ' ଗୁରୁ ଶ୍ରୀ ରବୀନ୍ଦ୍ର ନାଥ ସ୍ୱାଇଁ

ମଧୁସୂଦନ ସ୍ମୃତି ପୁରସ୍କାର   କୁମାରୀ ତନୁଜା କିସ୍କୁ,
ଆର୍. ଏଲ୍. ସି ସ୍କୁଲ, ସେକ୍ଟର-୧

ଗୋପବନ୍ଧୁ ସ୍ମୃତି ପୁରସ୍କାର-- କୁମାରୀ ଫିଡା ଡୁଙ୍ଗଡୁଙ୍ଗ୍,
ହମିରପୁର ବାଳିକା ଉଚ୍ଚ ବିଦ୍ୟାଳୟ

# ପରିଶିଷ୍ଟ-୫

## ଉତ୍କଳ ଦିବସ ଓ ଉତ୍କଳ ଗୌରବ ମଧୁସୂଦନ ସ୍ମାରକୀ

୧-୪-୧୯୬୮

**ପ୍ରଥମ ଅର୍ଘ୍ୟ** - ସମ୍ପାଦକ - ଡକ୍ଟର ନବୀନ କୁମାର ସାହୁ, ଏମ୍.ଏ., ପିଏଚ୍.ଡି., ଡି.ଲିଟ୍., ରେଜିଷ୍ଟ୍ରାର, ସମ୍ବଲପୁର ବିଶ୍ୱବିଦ୍ୟାଳୟ

ସହ-ସମ୍ପାଦକ—ଅଧ୍ୟାପକ ପୂର୍ଣ୍ଣଚନ୍ଦ୍ର ମହାପାତ୍ର, ଏମ୍ ଏ. ଗଙ୍ଗାଧର ମେହେର ସାଂଧ ମହାବିଦ୍ୟାଳୟ, ସମ୍ବଲପୁର

ପ୍ରକାଶକ—ସଖିପଡା, ପ୍ରଗତି ଉତ୍କଳ ସଂଘ, ବି/୨, ଫକୀରମୋହନ ନଗର, ଗ୍ରହରକେଲ୍ଲା-୩

ମୁଦ୍ରକ - କଳିଙ୍ଗ ମୁଦ୍ରଣୀ, ୫ ଏ, ନୁର୍ ମହମ୍ମଦ ଲେନ୍, କଲିକତା-୯, ମୂଲ୍ୟ-୨ଟଙ୍କା

ପତ୍ରିକା ସାଇଜ - ଡିମାଇ ୧/୪

### ସୂଚୀପତ୍ର -

ଭାଷା—ଓଡ଼ିଆ ଓ ଇଂରାଜୀ



ଇଂରାଜୀ ସୂଚୀପତ୍ର ଅନ୍ୟତ୍ର—

**ଦ୍ୱିତୀୟ ଅର୍ଘ୍ୟ**—୧-୪-୧୯୬୯, ମୂଲ୍ୟ ଦୁଇଟଙ୍କା

ସମ୍ପାଦକ – ଡକ୍ଟର ନବୀନ କୁମାର ସାହୁ, ରେଜିଷ୍ଟ୍ରାର, ସମ୍ବଲପୁର ବିଶ୍ୱବିଦ୍ୟାଳୟ

ସହ ସମ୍ପାଦକ—ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାପାତ୍ର, ଅଧ୍ୟାପକ ଗଙ୍ଗାଧର ମେହେର କଲେଜ,

ମୁଦ୍ରଣ—କୋଣାର୍କ ପ୍ରିଣ୍ଟିଂ ୱାର୍କସ୍, ଉଦିତନଗର, ରାଉରକେଲା-୧
ପ୍ରଚ୍ଛଦ ଚିତ୍ର—କେନ୍ଦୁଝର ସୀତାବିଂଝିର ରାବଣଛାୟାର ପ୍ରାକ୍ଐତିହାସିକ ପ୍ରସ୍ତରଯୁଗର ଚିତ୍ର
ପତ୍ରିକା ସାଇଜ—ଡିମାଇ ୧/୪, ଭାଷା—ଇଂରାଜୀ ଓ ଓଡ଼ିଆ
ସମ୍ପାଦକଦ୍ୱୟ—ନବୀନ କୁମାର ସାହୁ



ଇଂରାଜୀ ଲେଖାର ସୂଚୀ ଅନ୍ୟତ୍ର—

**ତୃତୀୟ ଅର୍ଘ୍ୟ**—୧-୪-୧୯୭୦ ମୂଲ୍ୟ ଦୁଇଟଙ୍କା, ପତ୍ରିକା ସାଇଜ—ଡିମାଇ ୧/୪
ଭାଷା—ଇଂରାଜୀ ଓ ଓଡ଼ିଆ
ସମ୍ପାଦକ—ଡକ୍ଟର ନବୀନ କୁମାର ସାହୁ, ଇତିହାସ ବିଭାଗର ପ୍ରଫେସର ଓ ମୁଖ୍ୟ
ସମ୍ବଲପୁର ବିଶ୍ୱବିଦ୍ୟାଳୟ

ସହ ସମ୍ପାଦକ- ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାପାତ୍ର, ଅଧ୍ୟକ୍ଷ ଲକ୍ଷ୍ମୀନାରାୟଣ କଲେଜ, ଝାରସୁଗୁଡ଼ା
ମୁଦ୍ରଣ—ଜନତା ପ୍ରେସ, ବଣ୍ଡା ରୋଡ, ରାଉରକେଲା-୧



## ଚତୁର୍ଥ ଅର୍ଘ୍ୟ


୧-୪-୧୯୭୧, ମୂଲ୍ୟ ଦୁଇଟଙ୍କା, ପତ୍ରିକା ସାଇଜ ଡ଼ିମାଇ ୧/୪
ସମ୍ପାଦକ—ଡ଼କ୍ଟର ନବୀନ କୁମାର ସାହୁ, ଇତିହାସ ବିଭାଗ ପ୍ରଫେସର ଓ ମୁଖ୍ୟ ସମ୍ବଲପୁର ବିଶ୍ୱବିଦ୍ୟାଳୟ
ମୁଦ୍ରଣ—ଜନତା ପ୍ରେସ, ବଣ୍ଡା ରୋଡ, ରାଉରକେଲା-୧
ପ୍ରଚ୍ଛଦପଟ—ପଦ୍ମସମ୍ଭବଙ୍କ ପ୍ରତିମୂର୍ତ୍ତିର ଆଲୋକ ଚିତ୍ର

ଇଂରାଜୀ ରଚନାର ସୂଚୀ ଅନାବଶ୍ୟକ—

ପଞ୍ଚମ ଅର୍ଘ୍ୟ—୧-୪-୧୯୭୨, ମୂଲ୍ୟ ଦୁଇଟଙ୍କା, ପତ୍ରିକା ସାଇଜ ଡିମାଇ ୧/୪
ଭାଷା—ଓଡ଼ିଆ ଓ ଇଂରାଜୀ
ସମ୍ପାଦକ— ଡଃ ନବୀନ କୁମାର ସାହୁ, ଇତିହାସ ବିଭାଗର ପ୍ରଫେସର ଓ ମୁଖ୍ୟ
ସମ୍ବଲପୁର ବିଶ୍ୱବିଦ୍ୟାଳୟ
ମୁଦ୍ରଣ—କଳିଙ୍ଗ ମୁଦ୍ରଣୀ, ୭୭/ବି ଅଖିଳ ମିସ୍ତ୍ରୀ ଲେନ, କଲିକତା-୯
ପ୍ରଚ୍ଛଦ—ଗୁଡ଼ହାଣ୍ଡି ପର୍ବତ ଗାତ୍ରର ଶିକାର ଚିତ୍ର

## ଷଷ୍ଠ ଅର୍ଘ୍ୟ

୧ । ୪ । ୧୯୭୩ ମୂଲ୍ୟ—ଦୁଇ ଟଙ୍କା ମାତ୍ର, ପତ୍ରିକା ସାଇଜ୍ - କ୍ରାଉନ୍ ¼
ସଂପାଦକ — ଡଃ ନବୀନ କୁମାର ସାହୁ, ମୁଖ୍ୟ ଅଧ୍ୟାପକ,
ଇତିହାସ ବିଭାଗ ସମ୍ବଲପୁର ବିଶ୍ୱବିଦ୍ୟାଳୟ,
ମୁଦ୍ରଣ— ପୂର୍ଣ୍ଣିମା ପ୍ରିଣ୍ଟର୍ସ, ସମ୍ବଲପୁର ଭାଷା— ଓଡ଼ିଆ ଓ ଇଂରାଜୀ
ପ୍ରଚ୍ଛଦପଟ୍ଟ – ନୃସିଂହନାଥ ମନ୍ଦିର

# ସପ୍ତମ ଅର୍ଘ୍ୟ

୧ । ୪ । ୭୪ ମୂଲ୍ୟ—ଦେଢ଼ ଟଙ୍କା, ସାଇଜ — ଡ଼ିମାଇ $\frac{1}{4}$ ପତ୍ରିକା
ସଂପାଦକ—ଡଃ ନବୀନ କୁମାର ସାହୁ, ମୁଖ୍ୟ ଅଧ୍ୟାପକ,
ଇତିହାସ ବିଭାଗ ସମ୍ବଲପୁର ବିଶ୍ୱବିଦ୍ୟାଳୟ ।
ମୁଦ୍ରଣ — କୋଣାର୍କ ପ୍ରିଣ୍ଟିଂ ୱାର୍କସ, ଉଦିତ ନଗର
ରାଉରକେଲା-୧ ଭାଷା  ଓଡ଼ିଆ ଓ ଇଂରାଜୀ
ପ୍ରଚ୍ଛଦପଟ୍ଟ— ଅସୁରଗଡ଼ର ଏକ ପ୍ରାଚୀନ ମନ୍ଦିରର ଭଗ୍ନାବଶେଷ



# ଅଷ୍ଟମ ଅର୍ଘ୍ୟ

୧ । ୪ । ୭୫, ମୂଲ୍ୟ—ଦେଢ଼ ଟଙ୍କା, ପତ୍ରିକା ସାଇଜ—ଡ଼ିମାଇ $\frac{1}{4}$
ସଂପାଦକ—ଡଃ ନବୀନ କୁମାର ସାହୁ, ମୁଖ୍ୟ ଅଧ୍ୟାପକ
ଇତିହାସ ବିଭାଗ, ସମ୍ବଲପୁର ବିଶ୍ୱବିଦ୍ୟାଳୟ
ମୁଦ୍ରଣ — କୋଣାର୍କ ପ୍ରିଣ୍ଟିଂ ୱାର୍କସ, ଉଦିତ ନଗର, ରାଉରକେଲା-୧୨
ପ୍ରଚ୍ଛଦପଟ୍ଟ—ରାଜରାଣୀ ମନ୍ଦିରରେ ଥିବା କନ୍ଦୁକ ଓ କ୍ଷେପଣ
ଯଷ୍ଟି ସହ କ୍ରୀଡ଼ାରତ ରମଣୀର ପ୍ରତିଛବି ।
ଭାଷା — ଇଂରାଜୀ ଓ ଓଡ଼ିଆ

৩] ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ପ୍ରାଚୀନ ଇତିହାସ [ପ୍ରବନ୍ଧ]
ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ୫-୯

୪] ଉତ୍କଳ ସମ୍ମିଳନୀର ଅନ୍ତରାଳେ [ବ୍ରହ୍ମପୁର-ଡ଼ିସେମ୍ବର ୨୭,୨୭-୧୯୦୨]
ସଭାପତି କନିକା ରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ଭଞ୍ଜଦେବଙ୍କ
ଅଭିଭାଷଣ ୧୧-୨୯

୫] ଅମର ଗୌରବ [ପ୍ରବନ୍ଧ] ରାଧାନାଥ ରଥ ୩୧-୩୬

୬] କୁଟିଆ କନ୍ଧଙ୍କ ପ୍ରିୟ ସଂଗୀତ [ସଂଗୀତ ଓ ତାହାର ଇଂରାଜୀ
ଅନୁବାଦ] ୩୯-୪୦

## ନବମ ଅର୍ଘ୍ୟ

୧ । ୪ । ୭୭, ମୂଲ୍ୟ—ଦେଢ଼ ଟଙ୍କା, ପତ୍ରିକା ସାଇଜ-ଡ଼ିମାଇ ¼
ସଂପାଦକ — ଡଃ ନବୀନ କୁମାର ସାହୁ, ମୁଖ୍ୟ ଅଧ୍ୟାପକ,
ଇତିହାସ ବିଭାଗ, ସମ୍ବଲପୁର ବିଶ୍ୱବିଦ୍ୟାଳୟ
ମୁଦ୍ରଣ—କୋଣାର୍କ ପ୍ରିଣ୍ଟିଂ ଓ୍ୱାର୍କସ, ଉଦିତ ନଗର,
ରାଉରକେଲା-୧୨ ଭାଷା – ଓଡ଼ିଆ ଓ ଇଂରାଜୀ
ପ୍ରଚ୍ଛଦପଟ—ମୟୂରଭଞ୍ଜର ଖିଚିଂର ଖିଞ୍ଚିଂକେଶ୍ୱରୀ ମନ୍ଦିର

୧] ସଂପାଦକୀୟ—ଡଃ ନ. କୁ. ସାହୁ

୨] ଓଡ଼ିଆ ସାହିତ୍ୟର ଜନପ୍ରିୟ ଉପନ୍ୟାସ— ମାଟିର ମଣିଷ [ଆଲୋଚନା]
ଅଧ୍ୟାପକ ବାଳକୃଷ୍ଣ ଶତପଥୀ ୧-୧୫

୩] ଓଡ଼ିଶାର ଇତିହାସରେ ଶବରଦେବଙ୍କ ଭୂମିକା [ପ୍ରବନ୍ଧ]
ଡଃ ଯଜ୍ଞକୁମାର ସାହୁ ୧୬-୨୯

୪] ମଧୁସୂଦନଙ୍କ ସୌନ୍ଦର୍ଯ୍ୟ ଧାରଣା—ଏକ ଅଧ୍ୟୟନ [ପ୍ରବନ୍ଧ]
ଅଧ୍ୟାପକ ବୈଷ୍ଣବୀ ଚରଣ ଜେନା ୩୧-୪୬

## ଦଶମ ଅର୍ଘ୍ୟ

୧ । ୪ । ୧୯୭୭, ମୂଲ୍ୟ –ଦେଢ଼ଟଙ୍କା, ପତ୍ରିକା ସାଇଜ— ଡ଼ିମାଇ ¼
ସଂପାଦକ— ଡ଼ଃ ନବୀନ କୁମାର ସାହୁ, ମୁଖ୍ୟ ଅଧ୍ୟାପକ,
ଇତିହାସ ବିଭାଗ, ସମ୍ବଲପୁର ବିଶ୍ୱବିଦ୍ୟାଳୟ
ପ୍ରଚ୍ଛଦ ପଟ ଭୁବନେଶ୍ୱରର ବୋଇତାଳ ମନ୍ଦିରର ପ୍ରତିଛବି,
ପତ୍ରିକା ଭାଷା ଓଡ଼ିଆ ଓ ଇଂରାଜୀ
ମୁଦ୍ରଣ—କୋଣାର୍କ ପ୍ରିଣ୍ଟିଂ ଓ୍ୱାର୍କସ, ଉଦିତନଗର, ରାଉରକେଲା-୧୨

## ଏକାଦଶ ଅର୍ଘ୍ୟ-

୧-୪-୧୯୭୮, ମୂଲ୍ୟ ଦେଢ଼ଟଙ୍କା, ପତ୍ରିକା ସାଇଜ ଡ଼ିମାଇ ୧/୪
ସମ୍ପାଦକ—ଡଃ ନବୀନ କୁମାର ସାହୁ, ମୁଖ୍ୟ ଅଧ୍ୟାପକ, ଇତିହାସ ବିଭାଗ,
ସମ୍ବଲପୁର ବିଶ୍ୱବିଦ୍ୟାଳୟ,
ପ୍ରଚ୍ଛଦପଟ—ପ୍ରାଚୀ ଉପତ୍ୟକାର କେନ୍ଦୁଲୀର ବିଷ୍ଣୁ ପ୍ରତିମା, ଭାଷା-ଓଡ଼ିଆ ଓ ଇଂରାଜୀ
ମୁଦ୍ରଣ—କୋଣାର୍କ ପ୍ରିଣ୍ଟିଂ ଓ୍ୱାର୍କସ, ଉଦିତନଗର, ରାଉରକେଲା-୧୨



## ଦ୍ୱାଦଶ ଅର୍ଘ୍ୟ-

୨୮-୪-୭୯, ମୂଲ୍ୟ ଦେଢଟଙ୍କା, ପତ୍ରିକା ସାଇଜ ଡ଼ିମାଇ ୧/୪
ସମ୍ପାଦକ—ଡଃ ନବୀନ କୁମାର ସାହୁ, ମୁଖ୍ୟ ଅଧ୍ୟାପକ, ଇତିହାସ ବିଭାଗ,
ସମ୍ବଲପୁର ବିଶ୍ୱବିଦ୍ୟାଳୟ
ମୁଦ୍ରଣ—କୋଣାର୍କ ପ୍ରିଣ୍ଟିଂ ଓ୍ୱାର୍କସ୍, ଉଦିତନଗର, ରାଉରକେଲା-୧୨
ପ୍ରଚ୍ଛଦପଟ—ଐତିହାସିକ ମାରଗୁଡା ଉପତ୍ୟକାର ରମଣୀୟ ଦୃଶ୍ୟ

## ତ୍ରୟୋଦଶ ଅର୍ଘ୍ୟ–

୧-୪-୮୦, ମୂଲ୍ୟ ଦୁଇଟଙ୍କା, ପତ୍ରିକା ସାଇଜ ଡ଼ିମାଇ ୧/୪
ସମ୍ପାଦକ – ଡଃ ନବୀନ କୁମାର ସାହୁ, କୁଳପତି, ସମ୍ବଲପୁର ବିଶ୍ୱବିଦ୍ୟାଳୟ
ମୁଦ୍ରଣ—କୋଣାର୍କ ପ୍ରିଣ୍ଟିଂ ଓ୍ୱାର୍କସ, ଉଦିତନଗର, ରାଉରକେଲା-୧୨
ଭାଷା – ଓଡ଼ିଆ ଓ ଇଂରାଜୀ
ପ୍ରଚ୍ଛଦପଟ—ତେଲ ଓ ମହାନଦୀର ସଙ୍ଗମ ସ୍ଥଳରେ ଅବସ୍ଥିତ ଲଙ୍କାଗଡର ପ୍ରାଚୀର



## ଚତୁର୍ଦ୍ଦଶ ଅର୍ଘ୍ୟ–

ମୂଲ୍ୟ ଦୁଇଟଙ୍କା ମାତ୍ର, ପତ୍ରିକା ସାଇଜ ଡ଼ିମାଇ ୧/୪
ସମ୍ପାଦକ – ଡଃ ନବୀନ କୁମାର ସାହୁ, କୁଳପତି, ସମ୍ବଲପୁର ବିଶ୍ୱବିଦ୍ୟାଳୟ
ମୁଦ୍ରଣ—କୋଣାର୍କ ପ୍ରିଣ୍ଟିଂ ଓ୍ୱାର୍କସ, ରାଉରକେଲା-୧୨, ଭାଷା-ଓଡ଼ିଆ ଓ ଇଂରାଜୀ
ପ୍ରଚ୍ଛଦପଟ—ରାଣୀପୁର ଝରିଆଲର ଇନ୍ଦ୍ରଲାଟ ନାମକ ଇଟା ଦେଉଳର ପ୍ରତିଛବି ।

୩) ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ମଧୁସୂଦନଙ୍କ ଭୂମିକା (ପ୍ରବନ୍ଧ)
ଡଃ. ପି. କେ ମିଶ୍ର ୪-୬
୪) ମେଟଫ୍ଲର ସାହିତ୍ୟରେ ନାରୀ (ଆଲୋଚନା) କେଶବ ଚନ୍ଦ୍ର ବେହେରା ୮-୧୦
୫) ଓଡ଼ିଆ ସାହିତ୍ୟକୁ ଖଡ଼ିଆଳର ଦାନ (ମାରକ ସାଧକ ସ୍ୱର୍ଗତ ଲଲ୍ ରୁଦ୍ରମାଧବ ଦେବ) (ଆଲୋଚନା) ଶ୍ରୀ କିଶୋର ଚନ୍ଦ୍ର ମହାପାତ୍ର ୧୧-୧୮
୬) ଉତ୍କଳ ସ୍ମରଣେ (କବିତା) ଶ୍ରୀ କମଳ ଦାସ ୧୯-୨୦

## ପଞ୍ଚଦଶ ଅର୍ଘ୍ୟ-

୧-୪-୧୯୮୨, ମୂଲ୍ୟ ଦୁଇଟଙ୍କା, ପତ୍ରିକା ସାଇଜ ଡିମାଇ ୧/୪

ସମ୍ପାଦକ — ଡକ୍ଟର ପ୍ରବୋଧ କୁମାର ମିଶ୍ର, ଇତିହାସ ପ୍ରାଧ୍ୟାପକ, ସମ୍ବଲପୁର ବିଶ୍ୱବିଦ୍ୟାଳୟ

ମୁଦ୍ରଣ — କୋଣାର୍କ ପ୍ରିଣ୍ଟିଂ ୱାର୍କସ, ଉଦିତନଗର, ରାଉରକେଲା-୧୨

ପ୍ରଚ୍ଛଦପଟ-ଗନ୍ଧମାର୍ଦ୍ଦନ ପର୍ବତର ନୃସିଂହଙ୍କର ମନ୍ଦିର, ପତ୍ରିକା ଭାଷା -ଇଂରାଜୀ ଓ ଓଡ଼ିଆ

୧) ସମ୍ପାଦକୀୟ—ଡଃ ପ୍ରବୋଧ କୁମାର ମିଶ୍ର
୨) ପଶ୍ଚିମ ଓଡ଼ିଶାର ଦେବୀ ଉପାସନା ପରମ୍ପରା (ପ୍ରବନ୍ଧ) ଡଃ ଦଧିବାମନ ମିଶ୍ର ୧-୩
୩) ଗଙ୍ଗାଧର କାବ୍ୟ ମାନସ (ଆଲୋଚନା) ଡଃ ବୈରାଗୀ ଚରଣ ଜେନା ୪-୯
୪) ଶିଳ୍ପ ସଭ୍ୟତା ଓ ସାହିତ୍ୟ (ପ୍ରବନ୍ଧ) ଡଃ ଅର୍ଜୁନ ଶତପଥୀ ୧୦-୧୨

## ଷୋଡ଼ଶ ଅର୍ଘ୍ୟ-

୧-୪ ୮୩, ପ୍ରଗତି ଉତ୍କଳ ସଂଘର ରଜତ ଜୟନ୍ତୀ ଉପଲକ୍ଷେ, ଡିମାଇ ୧/୪ ସାଇଜ

ସମ୍ପାଦକ—ଡକ୍ଟର ନବୀନ କୁମାର ସାହୁ, ଉପଦେଷ୍ଟା ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗ

ସହସମ୍ପାଦକ – ଶ୍ରୀ ଶ୍ରୀଚରଣ ମହାନ୍ତି ଅଧ୍ୟାପକ, ରାଉରକେଲା ସରକାରୀ ମହାବିଦ୍ୟାଳୟ

ମୁଦ୍ରଣ – କୋଣାର୍କ ପ୍ରିଣ୍ଟିଂ ୱାର୍କସ, ଉଦିତନଗର ରାଉରକେଲା-୧୨, ମୂଲ୍ୟ ୩ଟଙ୍କା

ପ୍ରଚ୍ଛଦପଟ—ରାଜରାଣୀ ମନ୍ଦିରର ପ୍ରତିଛବି ।

୧) ସମ୍ପାଦକୀୟ - ଡଃ ନବୀନ କୁମାର ସାହୁ
୨) ଉତ୍କଳ ଗୌରବ କହିଥିଲେ (ମଧୁବାବୁଙ୍କ ସମ୍ପର୍କରେ) ମୀରା କୁମାରୀ ଶାସ୍ତ୍ରୀ ୧-୨
୩) ରାଜନୈତିକ ପୃଷ୍ଠଭୂମିରେ ଓଡ଼ିଶା (ପ୍ରବନ୍ଧ) ଶ୍ରୀ କୃଷ୍ଣଚନ୍ଦ୍ର ମହାନ୍ତି ୩-୫
୪) ମଲ୍ଲି ଓ ମୋକେଜ୍ ମଧୁସୂଦନ (ପ୍ରବନ୍ଧ) ସ୍ୱର୍ଗତ ମାୟାଧର ମାନସିଂହ ୬-୮
୫) ପ୍ରଗତି ଉତ୍କଳ ସଂଘ ୧୯୫୮-୮୩, (ପ୍ରବନ୍ଧ) ଶ୍ରୀ କମଳ ଦାସ ୯-୧୦
୬) ଓଡ଼ିଆ ପତ୍ରପତ୍ରିକା କ୍ଷତିଗ୍ରସ୍ତ ହେଉଛନ୍ତି କାହିଁକି ? (ପ୍ରବନ୍ଧ) ଅଧ୍ୟାପକ ଶ୍ରୀଚରଣ ମହାନ୍ତି ୧୧-୧୬

## ସପ୍ତଦଶ ଅର୍ଘ୍ୟ-

୧-୪-୧୯୮୪, ମୂଲ୍ୟ ତିନଟଙ୍କା, ପତ୍ରିକା ସାଇଜ ଡ଼ିମାଇ ୧/୮
ସମ୍ପାଦକ - ଡଃ ନବୀନ କୁମାର ସାହୁ, ଉପଦେଷ୍ଟା ସରକାରଙ୍କ ପ୍ରତ୍ନତାତ୍ତ୍ୱିକ ବିଭାଗ
ସହ ସମ୍ପାଦକ - ଶ୍ରୀ ଶ୍ରୀଚରଣ ମହାନ୍ତି, ଅଧ୍ୟାପକ ସରକାରୀ ମହାବିଦ୍ୟାଳୟ, ରାଉରକେଲା
ମୁଦ୍ରଣ—କୋଣାର୍କ ପ୍ରିଣ୍ଟିଂ ଓ୍ୱାର୍କସ, ରାଉରକେଲା ୧୨
ପ୍ରଚ୍ଛଦପଟ—କାକଟପୁରର ପ୍ରସିଦ୍ଧ ମଙ୍ଗଳା, ପତ୍ରିକାର ଭାଷା—ଓଡ଼ିଆ ଓ ଇଂରାଜୀ



## ଅଷ୍ଟାଦଶ ଅର୍ଘ୍ୟ-

୧-୪-୧୯୮୫, ମୂଲ୍ୟ ଆଠଟଙ୍କା, ପତ୍ରିକା ସାଇଜ ଡ଼ିମାଇ ୧/୮
ସମ୍ପାଦକ—ଡଃ ନବୀନ କୁମାର ସାହୁ, ଉପଦେଷ୍ଟା, ଓଡ଼ିଶା ସରକାରଙ୍କ ପ୍ରତ୍ନତାତ୍ତ୍ୱିକ ବିଭାଗ

ସହ ସମ୍ପାଦକ—ଶ୍ରୀ ଶ୍ରୀଚରଣ ମହାନ୍ତି, ଅଧ୍ୟାପକ, ସରକାରୀ ମହାବିଦ୍ୟାଳୟ, ରାଉରକେଲା

ମୁଦ୍ରଣ –କୋଣାର୍କ ପ୍ରିଣ୍ଟିଂ ୱାର୍କସ, ରାଉରକେଲା-୧୨, ଭାଷା—ଓଡ଼ିଆ ଓ ଇଂରାଜୀ



## ଊନବିଂଶ ଅର୍ଘ୍ୟ-

୧-୪-୮୭, ମୂଲ୍ୟ ଆଠଟଙ୍କା, ପତ୍ରିକା ସାଇଜ ଡ଼ିମାଇ ୧/୮

ମୁଖ୍ୟ ସମ୍ପାଦକ—ଡକ୍ଟର ପ୍ରବୋଧ କୁମାର ମିଶ୍ର, ପ୍ରଫେସର ଇତିହାସ ବିଭାଗ, ସମ୍ବଲପୁର ବିଶ୍ୱବିଦ୍ୟାଳୟ

ସମ୍ପାଦକ—ଅଧ୍ୟାପକ ଶ୍ରୀଚରଣ ମହାନ୍ତି, ରାଉରକେଲା ସରକାରୀ ମହାବିଦ୍ୟାଳୟ

ମୁଦ୍ରଣ—କୋଣାର୍କ ପ୍ରିଣ୍ଟିଂ ୱାର୍କସ, ଉଦିତନଗର, ରାଉରକେଲା-୧୨

ଭାଷା—ଓଡ଼ିଆ ଓ ଇଂରାଜୀ

ପ୍ରଚ୍ଛଦପଟ—କୋଣାର୍କ ସୂର୍ଯ୍ୟ ମନ୍ଦିରରେ ନରସିଂହ ଦେବ ଧନୁର୍ବିଦ୍ୟା ଅଭ୍ୟାସ ରତ

୬- ମାନସିଂହଙ୍କ କାବ୍ୟ କବିତାରେ ଉପମା [ଆଲୋଚନା]
ଡଃ କିଶୋର ଚନ୍ଦ୍ର ମିଶ୍ର ୧୬-୩୪

## ବଂଶ ଅର୍ଘ୍ୟ-

ଚଳିତ ସଂଖ୍ୟାଠାରୁ ପତ୍ରିକାର ନାମ 'ଉତ୍କଳ ଗୌରବ' ରଖାଯାଇଛି,
୧-୪-୧୯୮୭

ପ୍ରଚ୍ଛଦ ପଟରେ—ଓଡ଼ିଶା ମାନଚିତ୍ରର ପୃଷ୍ଠ ପଟରୁ ଉତ୍କଳ ଗୌରବ ମଧୁସୂଦନଙ୍କର
'ଛବି ପରିଦୃଷ୍ଟ

ମୁଖ୍ୟ ସମ୍ପାଦକ-ଡକ୍ଟର ପ୍ରବୋଧ କୁମାର ମିଶ୍ର, ପ୍ରଫେସର, ସମ୍ବଲପୁର ବିଶ୍ୱବିଦ୍ୟାଳୟ

ସମ୍ପାଦକ—ଅଧ୍ୟାପକ ଶ୍ରୀଚରଣ ମହାନ୍ତ, ରାଉରକେଲା ସରକାରୀ ମହାବିଦ୍ୟାଳୟ,

ମୁଦ୍ରଣ—କୋଣାର୍କ ପ୍ରିଣ୍ଟିଂ ଓ୍ୱାର୍କସ, ଉଦିତନଗର, ରାଉରକେଲା-୧୨

ଭାଷା—ଓଡ଼ିଆ ଓ ଇଂରାଜୀ

## ଏକବିଂଶ ଅର୍ଘ୍ୟ

ଉତ୍କଳ ଗୌରବ, ଗଙ୍ଗାଧର ବିଶେଷାଙ୍କ, ୧।୪।୧୯୮୮,
ମୂଲ୍ୟ—ଆଠ ଟଙ୍କା

ମୁଖ୍ୟ ସଂପାଦକ – ପ୍ରଫେସର ଡଃ ପ୍ରବୋଧ କୁମାର ମିଶ୍ର,
ସମ୍ବଲପୁର ବିଶ୍ୱବିଦ୍ୟାଳୟ

ସଂପାଦକ—ଅଧ୍ୟାପକ ଶ୍ରୀଚରଣ ମହାନ୍ତି,
ରାଉରକେଲା ସରକାରୀ ମହାବିଦ୍ୟାଳୟ

ମୁଦ୍ରଣ—କୋଣାର୍କ ପ୍ରିଣ୍ଟିଂ ୱାର୍କସ, ଉଦିତ ନଗର, ରାଉରକେଲା-୧୨

ଭାଷା—ଇଂରାଜୀ ଓ ଓଡ଼ିଆ

## ଦ୍ୱାବିଂଶ ଅର୍ଘ୍ୟ

ପ୍ରଥମ ଓଡ଼ିଆ ଉପନ୍ୟାସ ଓ ଔପନ୍ୟାସିକ ବିଶେଷାଙ୍କ

ମୂଲ୍ୟ—ଆଠ ଟଙ୍କା

ସଂପାଦକ—ଡ଼କ୍ଟର ଶ୍ରୀଚରଣ ମହାନ୍ତି, ରାଉରକେଲା ସରକାରୀ ମହାବିଦ୍ୟାଳୟ



## ତ୍ରୟୋବିଂଶ ସଂଖ୍ୟା

୨୮ । ୪ । ୧୯୯୦

ବିଷୟ—ରାଉରକେଲାର ସାଂସ୍କୃତିକ ବିକାଶଧାରା ଓ ପ୍ରଗତି ଉତ୍କଳ ସଂଘ

## ENGLISH SECTION

### Vol. 1 1-4 1968—

## Vol. II. 1-4-1969—



## Vol. III. 1-4-1970—

## Vol. VII- 1-4-1974—



## Vol. VIII- 1-4-1975—

## Vol. IX- 1-4-1976—



## Vol. X- 1-4-1977—



## Vol. XI- 1-4-78—

## Vol. XVI- 1-4-1983—



## Vol. XVII- 1-4 84



## Vol. XVIII 1-4-85

# ସେ ଦିନର ରାଉରକେଲା ଓ ରାଉରକେଲାର ସାଂସ୍କୃତିକ ନବବିକାଶ

● ଶ୍ରୀ ଧନଂଜୟ ମହାନ୍ତି

ରାଉରକେଲା ରେଲ ଷ୍ଟେସନଟି ମହୁଲପାଲି ଗ୍ରାମ ମଧ୍ୟରେ ଅବସ୍ଥିତ । ତହିଁର ପୂର୍ବ-ଦକ୍ଷିଣରେ ପ୍ରାୟ ଦୁଇ ମାଇଲ ଦୂରରେ ରାଉରକେଲା ନାମକ ଯେଉଁ କ୍ଷୁଦ୍ର ଗ୍ରାମଟି ଥିଲା, ସେହି ନାମରେ ଷ୍ଟେସନର ନାମକରଣ କରାଯାଇଥିଲା ଊନବିଂଶ ଶତାବ୍ଦୀର ଶେଷ ଚରଣରେ, ଯେତେବେଳେ ବେଙ୍ଗଲ-ନାଗପୁର ରେଲ କମ୍ପାନୀ ହାଓଡ଼ା-ନାଗପୁର ରେଲପଥ ନିର୍ମାଣ କରନ୍ତି । ସେହି ସମୟରେ ନଗଣ୍ୟ କେତେଜଣ ବ୍ୟବସାୟୀ ଏହି ଷ୍ଟେସନ ସମ୍ମୁଖରେ ବସବାସ କରି ବ୍ୟବସାୟ ଆରମ୍ଭ କଲେ । ଏହି ଗ୍ରେଟିଆ ବଜାରଟିର ନାମ ଆପେ ଆପେ ରାଉରକେଲା ହୋଇଗଲା ଏବଂ ପ୍ରକୃତ ରାଉରକେଲା ଗ୍ରାମଟିକୁ ଲୋକେ ପୁରୁଣା ରାଉରକେଲା ବୋଲିବାକୁ ଲାଗିଲେ । ସନ ୧୯୨୧ ଜନ ଗଣନା ଅନୁସାରେ ରାଉରକେଲାର ଜନସଂଖ୍ୟା ଥିଲା ମାତ୍ର ୩୮୨. । ସନ ୧୯୩୧ ଜନସୁମାରି ବେଳକୁ ଗାଙ୍ଗପୁର ଷ୍ଟେଟ ସରକାର ଏହି ଷ୍ଟେସନ ଅଞ୍ଚଳଟିକୁ ନଜୁଲ ଏରିଆ ତଥା ରାଉରକେଲା ଟାଉନ୍ ବୋଲି ଘୋଷଣା କରିସାରିଥିବାରୁ ୧୯୩୬ରେ ଶେଷ ହୋଇଥିବା ବନ୍ଦୋବସ୍ତରେ ଏହାକୁ ରାଉରକେଲା ଟାଉନ୍ ରୂପେ ରେକର୍ଡ କରାଯାଇଥିଲା । ସେତେବେଳେ ଏଠାକାର ଜନସଂଖ୍ୟା ଥିଲା ୪୯୩ । ରେଲ ଷ୍ଟେସନରୁ ବଣେଇଗଡ଼ ପର୍ଯ୍ୟନ୍ତ ଚାଲୁଥିବା ଗ୍ରେଟିଆ ହାଫ୍‌ଟନ୍ ବସ୍‌ଟି ଷ୍ଟେସନ ପାଖରେ ବଣେଇ ରଜାଙ୍କ ଡିପୋ ଅଫିସ୍‌ଠାରେ ରହେ । ସେଠାରେ ରଜାଙ୍କ ନିଜସ୍ୱ ଘରୋଇ ଟେଲିଫୋନ୍‌ଟିଏ ବି ଥାଏ । ସରକାରୀ ସଂସ୍ଥା ଥିଲା ଏକମାତ୍ର ନିମ୍ନ ପ୍ରାଇମେରୀ ସ୍କୁଲ ଓ ଜଣେ ଫରେଷ୍ଟରଙ୍କ ଅଫିସ୍ । ଏହାଛଡ଼ା ଗୋଟିଏ ବ୍ରାଞ୍ଚ ପୋଷ୍ଟ ଅଫିସ୍, ଦୁଇ ତିନୋଟି ଗ୍ରେଟ ଗ୍ରେଟ ଦୋକାନ, ଗୋଟିଏ ଲୁ ଜଳଖିଆ ଦୋକାନ ଓ ମଦ ଓ ମଦଭାଟି ସହିତ ଅଫିମ ଗଞ୍ଜେଇ ଦୋକାନ । ଖ୍ରୀ: ୧୯୨୦ରେ ବି.ଏନ୍.ଆର୍. କମ୍ପାନୀ ବୀରମିତ୍ରପୁରରୁ ଚୂନପଥର ଆମଦାନି କରିବା ଆରମ୍ଭ କରିବାରୁ ରାଉରକେଲାରୁ ବୀରମିତ୍ରପୁର ପର୍ଯ୍ୟନ୍ତ ଟ୍ରେନ୍ ଚଳାଚଳ ହେଲା ଓ ରାଉରକେଲାକୁ ଜଂସନ୍

ଷ୍ଟେସନ କରାଯାଇ ପୂର୍ବ ନିର୍ଦ୍ଧାରିତ ଦୁଇ ମିନଟ୍ ପାସେଞ୍ଜର ଟ୍ରେନ୍ ରହଣୀକୁ ପାଞ୍ଚ ମିନଟ୍ କରାଗଲା । ଲୋକୋସେଡ୍‌ଟିଏ ନିର୍ମାଣ କରାଯିବା ହେତୁ ରେଳ କର୍ମଚାରୀ ସଂଖ୍ୟା ମଧ୍ୟ ବୃଦ୍ଧି ପାଇଲା । ଷ୍ଟେସନରେ ଚା ଦୋକାନଟିଏ, ସେଠାରେ ସୋଡ଼ାପାଣି ଓ ସାମୟିକ ଫଳ ଆଦି ମିଳୁଥାଏ ।

ରାଉରକେଲାରେ ଓଡ଼ିଶା ବାହାରୁ ଆସିଥିବା ଲୋକେ ରହୁଥିବାରୁ ଏଠାକାର ଅଧିକାଂଶ ଲୋକ ହିନ୍ଦୀଭାଷୀ ଥିଲେ । ପଶ୍ଚିମରେ ପାନପୋଷ ଷ୍ଟେସନଟି ମଧ୍ୟ ରଘୁନାଥପାଲି ମୌଜା ଅନ୍ତର୍ଗତ କିନ୍ତୁ ପ୍ରାୟ ଦଶ ମାଇଲ ଦୂର ପୂର୍ବ ଦିଗରେ ଥିବା ପାନ୍‌ପୋଷ ମୌଜାର ନାମାନୁସାରେ ଏହି ଷ୍ଟେସନ ଓ ଏଠାରେ ଥିବା ପୋଷ୍ଟ ଅଫିସ୍ ନାମିତ ହୋଇଥାଏ । ହରକରାଙ୍କ ଦ୍ୱାରା ରାଉରକେଲା ପାନପୋଷ ପୋଷ୍ଟ ଅଫିସ୍‌କୁ ଡାକ ନିଆ-ଅଣା କରାଯାଉଥାଏ । ଷ୍ଟେସନକୁ ଲାଗି ଉତ୍ତରକୁ ଛେଣ୍ଡ ମୌଜା ମଧ୍ୟରେ, ରେଳ ଚାଲିବା ପରେ ଏଠାକୁ ଆସିଥିବା ଲୋକଙ୍କର ବସ୍ତି ପାନପୋଷ ନାମରେ ନାମିତ । ଖ୍ରୀ: ୧୯୩୧ ଜନଗଣନାନୁଯାୟୀ ଏଠାକାର ଜନସଂଖ୍ୟା ଥିଲା ୨୨୫୨, ସେମାନଙ୍କ ମଧ୍ୟରୁ ଅନେକ ହିନ୍ଦୀଭାଷୀ । ଏଠାରେ ଗୋଟିଏ ପ୍ରାଥମିକ ଓଡ଼ିଆ ସ୍କୁଲ, ଗୋଟିଏ ବାଇଶଶଯ୍ୟା ବିଶିଷ୍ଟ ଡାକ୍ତରଖାନା, ଗ୍ରେଟ ସବ୍‌ଜେଲ୍‌ଟିଏ, ଗୋଟିଏ ଥାନା, ଗୋଟିଏ ଫରେଷ୍ଟ ଅଫିସ୍, ଗୋଟିଏ ମଦଭାଟି, ଗୋଟିଏ ଅଫିମ ଗଞ୍ଜେଇ ଦୋକାନ ଓ ଗ୍ରେଟବଡ଼ ଦୋକାନ କେତୋଟି ଥାଏ । ବେଙ୍ଗଲ ଟିମ୍ବର ଟ୍ରେଡିଂ/ କମ୍ପାନୀଙ୍କ ହେଡ ଅଫିସ୍ ଥିବାଯୋଗୁଁ କେତେଜଣ ବଙ୍ଗାଳି ବାବୁ ଓ ଅନ୍ୟ କେତେଜଣ କର୍ମଚାରୀ ରଘୁନାଥପାଲି ମୌଜାରେ ରହୁଥା'ନ୍ତି । କମ୍ପାନୀଙ୍କ ମେନେଜର ଗ୍ରିଫିନ୍ ସାହେବ ଓ ତାଙ୍କ ଉତ୍ତରାଧିକାରୀ ଡବ୍‌ସନ୍ ସାହେବଙ୍କୁ ରାଜ ଦରବାର ଅନରାରୀ ମାଜିଷ୍ଟ୍ରେଟ ପଦରେ ଅଳଂକୃତ କରିଥାନ୍ତି ।

ଖ୍ରୀ: ୧୯୪୫ରେ ପାନପୋଷକୁ ଅସ୍ଥାୟୀରୂପେ ନାଗରା ସବ୍‌ଡିଭିଜନାଲ ହେଡ୍‌କ୍ୱାର୍ଟର୍ସ କରାଯାଇ ପାନପୋଷ ଓ ରାଉରକେଲାର ମଧ୍ୟସ୍ଥଳ ଦୁର୍ଗାପୁର ମୌଜାରେ ସ୍ଥାୟୀ କଚେରୀଘର ନିର୍ମାଣ ଆରମ୍ଭ କରାଗଲା । ଖ୍ରୀ: ୧୯୫୧ରେ ରାଜାଙ୍କ ନାମରେ ଦୁର୍ଗାପୁର ମୌଜାର ଉଦିତନଗରକୁ କଚେରୀ ସ୍ଥାୟୀଭାବେ ଉଠିଆସିବା ପରେ ରାଉରକେଲା ଓ ପାନପୋଷ ଉଭୟ ସ୍ଥାନର ଗୁରୁତ୍ୱ ବଢିବାକୁ ଲାଗିଲା ।

ଭାରତ ସରକାର ୧୯୫୨ର ସାଧାରଣ ନିର୍ବାଚନ ପରେ ସରକାରୀ କର୍ତ୍ତୃତ୍ୱରେ ଗୋଟିଏ ବୃହତ ଲୌହ ଶିଳ୍ପ ପ୍ରତିଷ୍ଠା କରିବାର ସଂକଳ୍ପ ଗ୍ରହଣ କରିବାରୁ, ବଙ୍ଗ, ବିହାର, ଓଡ଼ିଶା ଓ ମଧ୍ୟ-ପ୍ରଦେଶ ସରକାର ନିଜ ରାଜ୍ୟ ମଧ୍ୟରେ ତାହା ସ୍ଥାପନ କରାଇବା ପାଇଁ ଦାବି କଲେ । ପ୍ରତିଯୋଗିତାରେ ଓଡ଼ିଶାର ରାଉରକେଲା ସର୍ବୋତ୍କୃଷ୍ଟ ସ୍ଥାନ

ବୋଲି ବିବେଚିତ ହେବାରୁ ତା ୧୭।୨।୧୯୫୪ ରିଖରେ ଓଡ଼ିଶା ସରକାରଙ୍କ ଗେଜେଟ ବିଜ୍ଞପ୍ତି ପ୍ରକାଶିତ ହେଲା । ତଦନୁଯାୟୀ ରାଉରକେଲାକୁ କେନ୍ଦ୍ର କରି ୮୦ ବର୍ଗମାଇଲ ଭୂମି ଅର୍ଜନ କରିବା ପାଇଁ ଆବଶ୍ୟକ ପଦକ୍ଷେପ ଗ୍ରହଣ କରାଗଲା । ଜନୁ ଜର୍ମାନର କ୍ରୁପ୍ସ ଏଣ୍ଡ ଡିମାଗ୍ କୋମ୍ପାନୀଙ୍କ ବିଶେଷଜ୍ଞମାନଙ୍କ ପରାମର୍ଶ କ୍ରମେ କ୍ରମେ ୩୧ଟି ମୌଜାର ୩୨ ବର୍ଗମାଇଲ ଜମି ଆକ୍ୱାୟାର କରାଗଲା ଏହି ପ୍ରକ୍ରିୟାରେ ୨୪୨୪ଟି ପରିବାରର ପ୍ରାୟ ୧୬,୦୦୦ ଲୋକ ବାସଚ୍ୟୁତ ହେଲେ । ପରବର୍ତ୍ତୀ ପର୍ଯ୍ୟାୟରେ ମନ୍ଦିରା ଜଳଭଣ୍ଡାର ପାଇଁ ୩୧ଟି ଗ୍ରାମର ୧୧୦୦୦ ଏକର ଓ ହାଟିଆ ତଥା ବାରସୁଆଁ ରେଳପଥ ଦୁଇଟି ପାଇଁ ଓ ପରବର୍ତ୍ତୀ ପର୍ଯ୍ୟାୟରେ ବଣ୍ଡାମୁଣ୍ଡା ଜଙ୍କସନ୍ ପାଇଁ ବିସ୍ତୃତ ପରିମାଣ ଜମି ଆକ୍ୱାୟାର କରାଯିବା ହେତୁ ସର୍ବମୋଟ ପ୍ରାୟ ୨୦୦୦୦ ଲୋକଙ୍କୁ ବାସହରା ହେବାକୁ ପଡ଼ିଲା । ରାଉରକେଲାରୁ ଉଦିତ ନଗର ଓ ପାନପୋଷ ଅଞ୍ଚଳକୁ ବାଦ ଦିଆଯାଇଥିଲା । ଏହି ଅଞ୍ଚଳ ସହିତ କାରଖାନା ପାଇଁ ଆକ୍ୱାୟାର ହୋଇଥିବା ଜମି ବିସ୍ତୃତ ଭୂଖଣ୍ଡ ଉପରେ ବଣ୍ଡାମୁଣ୍ଡା ମାର୍ସାଲିଂ ୟାର୍ଡ, ରାଉରକେଲା ଇସ୍ପାତ କାରଖାନା, ସାରକାରଖାନା, ସାର ନଗର, ଷ୍ଟିଲ୍ ଟାଉନ ଓ ସିଭିଲ ଟାଉନକୁ ନେଇ ଗଢି ଉଠିଛି ଆଜିର ବିରାଟ ଶିଳ୍ପ ନଗରୀ ରାଉରକେଲା ।

ଏହି ପରିପ୍ରେକ୍ଷୀରେ ୧୯୫୪ ପୂର୍ବର ରାଉରକେଲା ସହିତ ପୂର୍ବୋକ୍ତ ଗ୍ରାମାଞ୍ଚଳକୁ ମିଶାଇ 'ସେ ଦିନର ରାଉରକେଲା' କହିବା ପ୍ରାସଙ୍ଗିକ ହେବ । ପ୍ରାୟ ୨୦,୦୦୦ ଲୋକଙ୍କର ଏହି ଆଦିମଜାତି ବହୁଳ ଗ୍ରାମାଞ୍ଚଳଟି ସେତେବେଳେ ଥିଲା ଏକ ନିରକ୍ଷର ଅନୁନ୍ନତ ଓ ବିକାଶମୁଖୀ ହେଲେ ହେଁ ଦରିଦ୍ର ଅଞ୍ଚଳ । ଏଠାରେ ମୁଖ୍ୟତଃ ଭୂୟାଁ, ଓରାମ୍, ମୁଣ୍ଡା, ଖଡ଼ିଆ, କିସାନ, ଭୂମିଜ, ଧୂରାନ୍, ବିଂଝିଆ ଓ ଗଣ୍ଡ ଜାତିର ଆଦିବାସୀମାନେ ବାସ କରୁଥିଲେ । ତାଙ୍କ ମଧ୍ୟରେ କେତେକ ରାଉତିଆ ଓ ମାହାନ୍ତ ଜାତିର ଏବଂ ଅଳ୍ପ କେତେକ ବ୍ରାହ୍ମଣ,କ୍ଷତ୍ରିୟ ଓ ଛତିଶ ପାଟକ ଯଥା — ବାରିକ, କୁମ୍ଭାର, ଘଟ, କମାର, କଂସାରି, ବଣିଆ, ବଢ଼େଇ, ଶୁଣ୍ଢୀ, ତେଲି, ଗଉଡ଼, କେଉଟ, ଖଣ୍ଡିଆ ଥୋଡ଼ିଆ ଜାତିର ଏବଂ ତନ୍ତି, ପାଣ, ଘାସି, ହମ ଓ ଧୋବା ଆଦି ହରିଜନ କେତେ ଘର ମଧ୍ୟ ଥିଲେ । ରାଉରକେଲା ଓ ପାନପୋଷରେ ଅଳ୍ପ ସଂଖ୍ୟାରେ ଥିଲେ କେତେକ ମୁସଲମାନ । ଶିଖ ପରିବାର ମାତ୍ର ଦୁଇଟି ଥିଲେ । ଓରାମ୍, ମୁଣ୍ଡା ଓ କିସାନଙ୍କ ମଧ୍ୟରୁ ଶତକଡ଼ା ପ୍ରାୟ ୧୭ ଜଣ ରୋମାନ କାଥଲିକ୍, ଲୁଥରାନ ଓ ଅନ୍ୟଗୋଷ୍ଠୀର ଖ୍ରୀଷ୍ଟିଆନ ଥିଲେ । ଖ୍ରୀ: ୧୯୩୬ ସେଟଲମେଣ୍ଟ ରିପୋର୍ଟ ଅନୁସାରେ ସେତେବେଳେ ଗାଙ୍ଗପୁର ରାଜ୍ୟରେ ହିନ୍ଦୁଙ୍କ ସଂଖ୍ୟା ୭୦ ଭାଗ ଥିଲାବେଳେ ମୁସଲମାନ ଏକ (୧) ଭାଗ ଖ୍ରୀଷ୍ଟିଆନ ୧୭ ଭାଗ ଓ ପ୍ରକୃତି ଉପାସକ ଆଦିବାସୀ ୨୨ ଭାଗ ଥିଲେ । ମୁଣ୍ଡାମାନେ

ମୁଣ୍ଡାରୀ ଭାଷା, ଓରାମ୍‌ମାନେ ଓରାମ ଭାଷା କହୁଥିଲେ । ହିନ୍ଦୀ ଭାଷାଭାଷୀ କେତେକଙ୍କୁ ଛାଡ଼ି ଅନ୍ୟ ସମ୍ପ୍ରଦାୟଙ୍କର ଭାଷା ଥିଲା ଓଡ଼ିଆ । ଏଠାରେ ଉଲ୍ଲେଖଯୋଗ୍ୟ ଏହା ଯେ ବଙ୍ଗ ବିହାର ଓ ଓଡ଼ିଶା ମିଶି ଗୋଟିଏ ପ୍ରଦେଶ ଥିଲାବେଳେ ଗାଙ୍ଗପୁର ରାଜ୍ୟକୁ ଛୋଟ ନାଗପୁର କମିଶନରଙ୍କ ଅଧୀନରେ ରଖାଯାଇଥିଲା ଓ ହିନ୍ଦୀ ରାଜଭାଷା (କୋର୍ଟର ଭାଷା) ଥିଲା । ସନ ୧୯୦୫ରେ ବିହାର ଓ ଓଡ଼ିଶା ବଂଗ ପ୍ରଦେଶରୁ ପୃଥକ ହେଲାପରେ ଗାଙ୍ଗପୁରରେ ଓଡ଼ିଆ ଭାଷା ରାଜଭାଷା ରୂପେ ପୁନଃ ପ୍ରଚଳିତ ହୋଇଥିଲା ।

ରାଞ୍ଚିଆଡ଼ୁ ଖ୍ରୀଷ୍ଟିଆନ ମିଶନାରୀମାନେ ଆସି ଗାଙ୍ଗପୁର ମଧ୍ୟରେ ଖ୍ରୀଷ୍ଟାନ ଧର୍ମ ପ୍ରଚାର ସଂଗେ ସଙ୍ଗେ ହିନ୍ଦୀ ମାଧ୍ୟମ ସ୍କୁଲମାନ ସ୍ଥାପନ କରି ପିଲାମାନଙ୍କୁ ହିନ୍ଦୀ ଭାଷାରେ ପାଠ ପଢ଼ାଉଥିଲେ । ସନ ୧୯୨୯ ମସିହାରେ ସୁନ୍ଦରଗଡ଼ ହାଇସ୍କୁଲର ପୂର୍ବତନ ହେଡମାଷ୍ଟର ଶ୍ରୀ ବୈରାଗୀ ମିଶ୍ର ବି. ଏ., ବି. ଇଡ଼., ଗାଙ୍ଗପୁର ଶିକ୍ଷାବିଭାଗର ଡେପୁଟି ଇନ୍‌ସ୍ପେକ୍ଟର ପଦକୁ ଉନ୍ନୀତ ହେଲାପରେ ତତ୍କାଳୀନ ଶିକ୍ଷାପ୍ରେମୀ ରାଜା ଭବାନୀ ଶଙ୍କର ଶେଖର ଦେଓ ଏବଂ ଏଜେନ୍‌ସି ଇନ୍‌ସ୍ପେକ୍ଟର ଏଚ୍ ଡର୍ଫିଂକ ଉପରେ ଚାପ ପକାଇ ଓଡ଼ିଆ ଭାଷାରେ ଶିକ୍ଷାଦାନ ପଦ୍ଧତିକୁ ବାଧ୍ୟତାମୂଳକ କରାଇଥିଲେ । କାଥଲିକ୍ ମିଶନ ତାହା ସ୍ୱୀକାର କରିଥିଲେ ହେଁ, ଲୁଥରାନ୍ ଧର୍ମ ଯାଜକମାନେ ପୂର୍ବଭଳି ହିନ୍ଦୀ ଶିକ୍ଷାକୁ ଜାରି ରଖି ତାଂକ ସ୍କୁଲ ଛାତ୍ରଛାତ୍ରୀଂକର ପରୀକ୍ଷା ରାଞ୍ଚିରେ କରାଇବାର ବ୍ୟବସ୍ଥା କରିଥିଲେ । ବୈରାଗୀ ବାବୁଂକର ଏକନିଷ୍ଠ ମାତୃଭାଷା ପ୍ରେମ ବିନା ଏଠାରେ ଓଡ଼ିଆ ଭାଷାର କି ଶୋଚନୀୟ ପରିଣତି ହୋଇଥା'ନ୍ତା ତାହା ସମସ୍ତଂକର ଅନୁଧ୍ୟାନ ଯୋଗ୍ୟ । ବୈରାଗୀବାବୁଂକ ଠାରେ ଓଡ଼ିଆ ଜାତି ସେଥିପାଇଁ କୃତଜ୍ଞ ।

ସ୍ୱାଧୀନ ଭାରତଖାନା ହେବାର ଅବ୍ୟବହିତ ପୂର୍ବରୁ ରାଉରକେଲା, ତରକେରା, ପାନପୋଷ ଓ ଜୁମକେଲା ଗ୍ରାମରେ ଗୋଟିଏ ଲେଖାଏଁ ପ୍ରାଥମିକ ସ୍କୁଲ ଥିଲା । କେବଳ ହମିରପୁର ଠାରେ ମିଶନ୍ ହାଇସ୍କୁଲଟିଏ ଥିଲା । ଶିକ୍ଷା କ୍ଷେତ୍ରରେ ଏ ଅଞ୍ଚଳକୁ ଅକ୍ଷମଣୀୟ ଭାବେ ଅବହେଳା କରାଯାଇଥିଲା ।

ଏଠାକାର ସଂସ୍କୃତି ଏକ ମିଶ୍ରିତ ସଂସ୍କୃତି ଥିଲା । ଆଦିବାସୀଂକ ଶରଣା ଧର୍ମ ଓ ଅନୁଷ୍ଠାନ ସଂସ୍କୃତି ସାଙ୍ଗକୁ ଆର୍ଯ୍ୟ ସଂସ୍କୃତି ତାଳ ଦେଇ ଚାଲୁଥାଏ । ଆଦିବାସୀଂକ ସଂସ୍କୃତି ଅନ୍ୟନ୍ୟ ଯାହା ଏଠାରେ ତହିଁରୁ ଭିନ୍ନ ନଥିଲା । ବୈଚିତ୍ର୍ୟ ଏତିକି ଯେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିବା ଆଦିବାସୀମାନେ ତାଂକ ପୂର୍ବ ଜାତି ଗୋଷ୍ଠୀଂକର ରୀତିନୀତିକୁ ବର୍ଜନ କରିନାହାନ୍ତି । ଖ୍ରୀଷ୍ଟଧର୍ମ ଜାତିଭେଦକୁ ସ୍ୱୀକାର

ନ କରୁଥିବେ ହେଁ ଉଦ୍ଦେଶ୍ୟ ମୂଳକଭାବେ ମିଶନାରୀ ମାନେ ଏଠାରେ ଏଭଳି ବ୍ୟତିକ୍ରମ ଘଟାଇଥିବା ସୁସ୍ପଷ୍ଟ । ସ୍ଥୂଳତଃ କହିବାକୁ ଗଲେ ଏଠାକାର ଆଦିବାସୀମାନେ ସରଳ ଓ ନିରୀହ । ସେମାନେ ଉଭୟ ସ୍ତ୍ରୀ ଓ ପୁରୁଷ କୃଷି ଓ ଶ୍ରମଜୀବୀ । ଛୁଆଁ ଅଛୁଆଁ ବାରଣ ନଥିଲେ ହେଁ ସେମାନଙ୍କ ମଧ୍ୟରେ ଜାତିଆଣ ଭାବ ପ୍ରବଳଥିଲା । ଅନ୍ୟ ଜାତିର କୌଣସି ଘରେ ଅନ୍ନ ଭୋଜନ କଲେ ପ୍ରାୟଶ୍ଚିତ କରିବାକୁ ପଡୁଥିଲା । ଜାଲ ଫିସାଦକୁ ସେମାନେ ଦୂରେଇ ରହିଥାନ୍ତି । ମାଲି ମୋକଦ୍ଦମା ଅର୍ଥାତ ଅପରାଧ କରିବାକୁ ସେମାନେ ଭୟ କରିଥାନ୍ତି । ସ୍ତ୍ରୀ ପ୍ରତି ଅସଦାଚରଣ ତଥା ନିଜ ଜମିରେ ଅପରର ହସ୍ତକ୍ଷେପକୁ ସେମାନେ ଆଦୌ ବର୍ଦ୍ଦାସ୍ତ ନକରି ନରହତ୍ୟା କରିବା ପାଇଁ ମଧ୍ୟ ଉଦ୍ୟତ ହୁଅନ୍ତି । ସେମାନେ ପରିଶ୍ରମୀ ଓ କଷ୍ଟ ସହିଷ୍ଣୁ । ତାଙ୍କର ପର୍ଦ୍ଦା ପ୍ରଥା ନାହିଁ । କନ୍ୟା-ମୂଲ୍ୟ ଦାବି କରିବା ଛଡ଼ା, ସେମାନଙ୍କର ବିବାହ ଯୌତୁକ ବିହୀନ । କେହି ଭିକ୍ଷାବୃତ୍ତି କରନ୍ତି ନାହିଁ । ଅତ୍ୟନ୍ତ ସରଳ ଆହାର, ପରିଧାନ ଓ ପ୍ରସାଧାନରେ ସେମାନେ ସନ୍ତୁଷ୍ଟ ଥା'ନ୍ତି । ସେମାନେ ଅବଶ୍ୟ ମାଛ ମାଂସ ପ୍ରିୟ । ଗଂଜେଇ ଅଫିମ ସେବନ କରନ୍ତି ନାହିଁ, କିନ୍ତୁ ଧୂଆଁପତ୍ର (ଦୋକତା ଓ ବିଡ଼ି), ହାଣ୍ଡିଆ ଓ ମହୁଲି ମଦ ସେମାନଙ୍କର ଜନ୍ମଗତ ଅଭ୍ୟାସ । ମାଦଳ ବାଦ୍ୟ ସହ ତାଳ ମିଳାଇ ସ୍ତ୍ରୀ ପୁରୁଷଙ୍କର ଲୋକ-ନୃତ୍ୟ ଓ ଗୀତ, ବେଶ୍ ଚିତ୍ତାକର୍ଷକ । ଘୋର କ୍ଳାନ୍ତି ମଧ୍ୟରେ ସ୍ମିତହାସ୍ୟ ଏବଂ ପରସ୍ପରକୁ ସାହାଯ୍ୟ କରିବାର ମନୋବୃତ୍ତି ତାଙ୍କ ସାମାଜିକ ଜୀବନର ବୈଶିଷ୍ଟ୍ୟ । କୁକୁଡ଼ା ଲଢ଼େଇ ଛଡ଼ା ଅନ୍ୟ କୌଣସି ଜୁଆ ଖେଳ ପ୍ରତି ସେମାନେ ଆସକ୍ତ ହୁଅନ୍ତି ନାହିଁ । ଏ ଅଞ୍ଚଳରେ ସେମାନେ କୃଷିଜୀବୀ ଅନୁନ୍ନତ ଚାଷ ପ୍ରଣାଳୀ ଓ ବୃଷ୍ଟିର ଅନିଶ୍ଚିତତା ଯୋଗୁ ସେମାନଙ୍କୁ ବଣ ଜଂଗଲର ଫଳମୂଳ ଉପରେ ନିର୍ଭର କରିବାକୁ ପଡେ । ଚାଷ ଋତୁ ପରେ କେହି କେହି ଖଣି ଖାଦାନରେ ବା ଅନ୍ୟତ୍ର ଜୀବିକା ଅର୍ଜନ କରିବାକୁ ଯାଆନ୍ତି । ଘୁଷୁରି, ଗୋରୁ, ଛେଳି, ମେଣ୍ଢା, ପାରା, କୁକୁଡ଼ା ଆଦି ପଶୁପକ୍ଷୀ ପାଳନ ତାଙ୍କର ଅନ୍ୟତମ ଜୀବିକା ଥିଲା । ଏଠାରେ ଗୋତି ପ୍ରଥାମଧ୍ୟ ଥିଲା ।

ଜ୍ୟେଷ୍ଠ ମାସରେ ଧାନଯାତ୍ରା, ଶ୍ରାବଣରେ ଧାନରୁଆ ପୂର୍ବରୁ ଶରଣା ପୂଜା ରାନ୍ଧା ପର୍ବ, ଭାଦ୍ରବରେ ନବାନ୍ନ ଓ କରମା ପୂଜା ଆଶ୍ୱିନରେ ଇଂଦ୍ରଯାତ୍ରା (ଇନ୍ଦ୍ର ପୂଜା), କାର୍ତ୍ତିକରେ ଦେଓ୍ୱାଲି (ଗୋବର୍ଦ୍ଧନ ପୂଜା) ଓ ଚୈତ୍ରରେ ଶରୁଲ୍ ପର୍ବ ସେମାନଙ୍କର ପ୍ରଧାନ ସାଂସ୍କୃତିକ ଉତ୍ସବ ଥିଲା । ତାଙ୍କର ବିବାହ ଅତ୍ୟନ୍ତ ନିରାଡ଼ମ୍ବର ଭାବେ କେବଳ ନୂଆ ବସ୍ତ୍ର, ଗୀତ, ବାଦ୍ୟ, ନୃତ୍ୟ ଓ ଭୋଜିରେ ସମାପନ ହୋଇଥାଏ । ସେମାନେ ଅଳଙ୍କାର ପ୍ରିୟ ନୁହନ୍ତି । ତଥାପି କଂସା ପିତଳ ରୁପା ତଥା ଲାଖର ଚୁଡ଼ି, ବଳା, ଝୁଣ୍ଟିଆ ଓ ମୁଦି ଏବଂ ପୋହଳା ତଥା କାଚ କଣ୍ଠି ମାଳା ପିନ୍ଧନ୍ତି । କାଳକ୍ରମେ ସେମାନଂକର ରୁଚି ଓ ଅଭ୍ୟାସରେ ପରିବର୍ତ୍ତନ ଘଟି ଚାଲିଥିବାର ଲକ୍ଷ୍ୟ କରାଯାଉଥାଏ । ମୁସଲମାନମାନେ ରାଉରକେଲା ଓ ପାନ୍‌ପୋଷ ଠାରେ ଇଦ୍, ବକ୍ରୀଦ୍ ଆଦି ପର୍ବ ଓ

ଉତ୍ସବ ପାଳନ କରୁଥିଲେ ଏବଂ ମିଲାଦ ଆଦି ସାମାଜିକ ଅନୁଷ୍ଠାନରେ ମିଳିତ ହେଉଥିଲେ । ପାନପୋଷ ଓ ରାଉରକେଲାରେ ଗୋଟିଏ ଲେଖା ମସ୍‌ଜିଦ୍ ଥିଲା । ଏବେ ରାଉରକେଲା ମଧ୍ୟରେ ଆଉ ଦୁଇଟି ମସ୍‌ଜିଦ୍ ସ୍ଥାପନ କରାଯାଇଛି । ଖ୍ରୀଷ୍ଟାନ୍ ମାନେ ହମିରପୁର ଗିର୍ଜା, ପ୍ରଧାନପାଲି ଓ ପୁରୁଣାପାଣି ଠାରେ ବଡ଼ଦିନ ପର୍ବ ପାଳନ କରୁଥାନ୍ତି । ଅନ୍ୟମାନେ ମଧ୍ୟ ସମସ୍ତ ପର୍ବପର୍ବାଣି ବିଧିମତେ ପାଳନ କରୁଥିଲେ । ରାଉରକେଲାରେ ରାଧାକୃଷ୍ଣ ମନ୍ଦିର, ଶିବ ମନ୍ଦିର ଓ ହନୁମାନ ମନ୍ଦିରଥିଲା । ପ୍ରତିବର୍ଷ ଏଠାରେ ଜଗଦ୍ଧାତ୍ରୀ ପୂଜା ମହା ସମାରୋହରେ ହେଉଥାଏ ଏବଂ ସେହି ଉପଲକ୍ଷେ ଓଡ଼ିଆ ବଂଗଳା ଓ ହିନ୍ଦି ଯାତ୍ରା ତଥା ନାଟକ ଅଭିନୟ ହେଉଥାଏ । ପାନପୋଷ୍‌ରେ ରାମଜୀ ମନ୍ଦିର ଓ କାଳୀ ମନ୍ଦିର, ଜୁମକେଲା ଓ ଅଦିରାବଂଧରେ ଜଗନ୍ନାଥ ମନ୍ଦିର ଏବଂ ଦେଓଗାଁରେ ଶିବ ମନ୍ଦିରରେ ପୂଜା ନାମ-ଯଜ୍ଞ ଆଦି ଅନୁଷ୍ଠିତ ହେଉଥାଏ ଏବଂ ସେହି ଉପଲକ୍ଷେ ଏ ଅଂଚଳର ସାଂସ୍କୃତିକ କେନ୍ଦ୍ର ବେଦବ୍ୟାସରେ ଶିବରାତ୍ରୀ ମେଳା ପକ୍ଷାଧିକ କାଳ ଅନୁଷ୍ଠିତ ହୁଏ । ସେଠାରେ ମଧ୍ୟ ରଥଯାତ୍ରା, ମକରଧ୍ୱଜ ରଥଯାତ୍ରା ଓ ଅନ୍ୟାନ୍ୟ ହିନ୍ଦୁ ପର୍ବ ପର୍ବାଣି ପାଳିତ ହୁଏ ।

ହ୍ୱାଇଟ ହାଉସ୍, ପାନପୋଷ, ଓ ଉଦିତନଗରରେ କ୍ଲବ ଓ ପାଠାଗାର ତଥା ଫୁଟବଲ୍, ଭଲିବଲ, ବ୍ୟାଡ୍‌ମିଣ୍ଟନ୍, ଟେନିସ୍ ଆଦି ଖେଳ ପ୍ରତିଯୋଗିତା ଚାଲିଥାଏ । ଆଦିବାସିମାନେ ହକି ଖେଳୁଥିଲେ । ହମିରପୁରରେ ହକି ପ୍ରତିଯୋଗିତା ମଧ୍ୟ ହେଉଥାଏ । ହ୍ୱାଇଟ ହାଉସ୍ ନିକଟରେ ଟାଟା କଂପାନୀଂକର ଗ୍ରେଡ଼ିଆ ଉଡ଼ାଜାହାଜ ଘାଟିଟିଏ ଥିଲା । ଏଠାକାର ସବୁ ଶ୍ରେଣୀ ଓ ସଂପ୍ରଦାୟ ମଧ୍ୟରେ ଶାନ୍ତି, ଶୃଂଖଳା ଓ ସଦ୍‌ଭାବ ସର୍ବଦା ରହି ଆସିଥିଲା ।

ଇସ୍ପାତ କାରଖାନା ନିର୍ମାଣ କାର୍ଯ୍ୟ ଆରମ୍ଭହେବା ପୂର୍ବରୁ ଏଠାରେ ଜଳ ଯୋଗାଣ, ବିଜୁଳି ସରବରାହ ଅଥବା ଟେଲିଫୋନ ପ୍ରତିଷ୍ଠାନ ନଥିଲା । ପାନପୋଷରେ ଟେଲିଗ୍ରାଫ ଅଫିସ୍‌ଟିଏ ଥାଏ । ପାନପୋଷ ଓ ରାଉରକେଲାରେ ଗୋଟିଏ ଲେଖାଏ ଗ୍ରାମ ପଞ୍ଚାୟତ ଥିଲା । ପଞ୍ଚାୟତ,ଗ୍ରାମ ସଫେଇ, ପାନୀୟ ଜଳ ଯୋଗାଣ, ରାସ୍ତା ଘାଟର ରକ୍ଷଣାବେକ୍ଷଣ, ମୁଖ୍ୟ ରାସ୍ତା ଗୁଡ଼ିକରେ ଆଲୋକ ବ୍ୟବସ୍ଥା ଆଦି ସେବା କାର୍ଯ୍ୟ ସଂପାଦନ କରୁଥିଲେ । ମ୍ୟୁନିସିପାଲିଟି ବା ଏନ୍. ଏ. ସି. ଭଳି ସଂସ୍ଥା ନଥାଇ ସୁଦ୍ଧା ସେତେବେଳେ ଏଠାକାର ପରିବେଶ ବଡ଼ ଶାନ୍ତ, ନିର୍ମଳ, ସୁସ୍ଥ ଓ ରମଣୀୟ ଥିଲା । ଚତୁର୍ଦ୍ଦିଗରେ ବୃକ୍ଷ ଲତା ମଣ୍ଡିତ ସୁନ୍ଦର ବଣ ଜଂଗଲ । ଜଂଗଲ ପାହାଡ଼ରେ ଗ୍ରେଟ ବାଘ, ଭାଲୁ, ହେଟା, ବଲୁଆ, କଟାସ୍, ନେଉଳ, ଗୁଣ୍ଡୁଚିମୁସା, ଠେକୁଆ ଓ ମାଂକଡ଼ ରହୁଥିଲେ ଏବଂ ନାନା ପ୍ରକାର ପକ୍ଷୀ- ଶୁଆ, ମୟୂର, ମଇନା, ବଣ କୁକୁଡ଼ା, ଘଘୁଆ, ଚଂପ୍ୟା କୋଇଲି କଜଳପାତି, ହଳଦୀ ବସନ୍ତ, କୁମ୍ଭାଟୁଆ, କାକ, ବକ, ଚଢ଼େଇ,ଛଞ୍ଚାଣ, ବାଦୁଡ଼ି, କୋଚିଲାଖାଇ ଆଦି ବହୁ ସଂଖ୍ୟାରେ ଦେଖାଯାଉଥିଲେ ।

ସେତେବେଳେ ଏ ସମଗ୍ର ଅଂଚଳରେ ମୋଟର ଚାଲିବା ଯୋଗ୍ୟ କେବଳ କଚ୍ଚା ରାସ୍ତା ଥିଲା ସର୍ବମୋଟ ୭୦ ମାଇଲ ମଧ୍ୟରେ । କେତେଖଣ୍ଡ ବଳଦ ଗାଡ଼ି, ସାଇକେଲ ଓ ଗ୍ରେଟଗ୍ରେଟ ଘୋଡ଼ା ଓ ବଣେଇ ବସ୍ ବ୍ୟତୀତ ଗାଡ଼ି ମୋଟର ଇତ୍ୟାଦି ଆଉ ଯାନ ବାହାନ ନଥିଲା । ସରକାରଙ୍କ ଜିପ୍ ଖଣ୍ଡେ, ବିଟିଟି ଓ ଟାଟା କଂପାନୀଂକର ଦୁଇଟି ଟ୍ରକ, ଗୋଟିଏ ଭ୍ୟାନ୍, ଦୁଇଖଣ୍ଡ କାର, ଖଣ୍ଡେ ଜେଲ ଭ୍ୟାନ ବ୍ୟତୀତ ରାଉରକେଲାରେ ଦୁଇଟି କାର ଓ ଦୁଇ ତିନୋଟି ଟ୍ରକ ଥିଲା । ସୁନ୍ଦରଗଡ଼, ବଣେଇ ଓ ବୀରମିତ୍ରପୁର ଅଥବା ରାଂଚି ପର୍ଯ୍ୟନ୍ତ କଚ୍ଚା ଖରାଦିନିଆ ରାସ୍ତାଥିଲା । କୌଣସି ହୋଟେଲ ସିନେମା ବା ଥିଏଟର ନଥିଲା । ଏହି ରାଜ୍ୟଟି ୧୯୪୮ ମସିହା ପର୍ଯ୍ୟନ୍ତ ରାଜାଙ୍କ ଅଧୀନରେ ଥିବାରୁ ଏହାର ବିକାଶ ସମ୍ଭବ ହୋଇ ନଥିଲା । ମୋଟ ଉପରେ ରାଉରକେଲା ଅଂଚଳର ଲୋକଙ୍କର ଆର୍ଥିକ ଅବସ୍ଥା ଉନ୍ନତ ନଥିଲା । ରାଉରକେଲା ଷ୍ଟେସନ ଦେଇ କାଠ, କୋଇଲା, ଟସର, ମହୁଲ, ଲାଖ, କେନ୍ଦୁପତ୍ର, ସବାଇଘାସ ଆଦି ବହୁ ପରିମାଣରେ ରପ୍ତାନୀ ହେଉଥିଲେ ହେଁ ଏବଂ ରାଉରକେଲା ଗାଙ୍ଗପୁର ତଥା ବଣେଇ ରାଜ୍ୟର ଗୋଟିଏ ବ୍ୟବସାୟ କେନ୍ଦ୍ର ହୋଇଥିଲେ ହେଁ ଏଠାକାର ଦୁଇଜଣ ମାତ୍ର ଆୟକର ଦାତା ଥିଲେ ।

କାରଖାନା ହେଲାପରେ—

କାରଖାନା ପାଇଁ ଜମି ଦଖଲ ହେବା ସଂଗେ ସଂଗେ ସ୍ଥାନୀୟ ଲୋକଙ୍କୁ ନାମ ମାତ୍ର କ୍ଷତିପୂରଣ ଓ ମନ ଭୁଲାଣିଆ ପ୍ରତିଶ୍ରୁତି ଦେଇ ଦୂର ଦୂରାନ୍ତକୁ ସ୍ଥାନାନ୍ତରିତ କରାଗଲା ପରେ ସେମାନଙ୍କ ସଂସ୍କୃତି ଓ ଜୀବିକାର ଆଧାର ବଣ ଜଙ୍ଗଲ ଓ ଗ୍ରାମ ମଧ୍ୟରେ ଥିବା ଗଛ ବୃକ୍ଷ ଉପରେ ନିର୍ମମ ଆକ୍ରମଣ ହେଲା । ସେଗୁଡ଼ିକୁ ହାତୀ ଡୋଜର ସାହାଯ୍ୟରେ ମୂଳୋତ୍ପାଟନ କରାଯାଇ କୃଷି ପାଇଁ ଭୂମି କର୍ଷଣ ଓ ଶୋଧନ କଲାଭଳି ଜମିକୁ ଯଥାସମ୍ଭବ ସମତଳ କରି କାରଖାନା ନିର୍ମାଣ ଆରମ୍ଭ ହେଲା । ଜର୍ମାନରୁ ହଜାର ସଂଖ୍ୟାରେ କାରିଗର ଆସି କାମରେ ଲାଗିଗଲେ, ଦେଶର ଚାରିଆଡ଼ୁ ବଡ଼ବଡ଼ କଂପାନୀ କଣ୍ଟ୍ରାକ୍ଟର ଓ ଶ୍ରମିକ ମଧ୍ୟ ଆସି ଯୋଗ ଦେଲେ । ଚାକିରି ଓ ବ୍ୟବସାୟ ପାଇଁ ତଦ୍ରୂପ ଜନ ସମାଗମ ବଢ଼ିବାକୁ ଲାଗିଲା । ବାସଚ୍ୟୁତ ତଥା ସ୍ଥାନୀୟ ଲୋକ (ଓଡ଼ିଆ)ଙ୍କର ଆଶାନୁରୂପ କର୍ମ ଯୋଗାଣ ହୋଇ ନ ପାରିବାରୁ ସେମାନଙ୍କର ଅନ୍ତର୍ଦାହ ବୃଦ୍ଧି ପାଇ ଏକ ଉଚ୍ଛୃଙ୍ଖଳ ଓ ଅଶାନ୍ତ ବାତାବରଣ ସୃଷ୍ଟି ହେଲା । ଭାଷାଗତ, ଜାତିଗତ, ଆଞ୍ଚଳିକ ତଥା ବୃତ୍ତିଗତ ବିବାଦ ତେଜି ଉଠିଲା । ଏଥିରେ ବିବ୍ରତ ହୋଇ କର୍ତ୍ତୃପକ୍ଷ କେତେ ଜଣ ଓଡ଼ିଆ ଅଫିସରଙ୍କୁ ନିଯୁକ୍ତ କଲେ । ଶ୍ରୀ ନରସିଂହ ରଥ, ଆଇ ପି. ଏସ୍.ଙ୍କୁ ସିକ୍ୟୁରିଟି ଅଫିସର ଓ ଓଡ଼ିଶା ସରକାରଙ୍କର ଆଉ ଜଣେ ଅଫିସରଙ୍କୁ ଡେପୁଟି ଜେନେରାଲ ମ୍ୟାନେଜର କରାଗଲା । ଜଣେ

ପ୍ରଶାସନିକ ଅଫିସର, ଜଣେ ଡାକ୍ତର, କେତେଜଣ ଇଂଜିନିୟର ଓ ଆଉ କେତେଜଣଙ୍କୁ କିରାଣୀ ଆଦି କର୍ମଚାରୀ ରୂପେ ନିଯୁକ୍ତ କରାଯାଇ ପରିସ୍ଥିତିକୁ ଆୟତ୍ତ କରିବାର ଉଦ୍ୟମ ଫଳରେ ସ୍ଥାନୀୟ କେତେକ ଲୋକଙ୍କୁ ଚାକିରି ମିଳିଲା । ଅନ୍ୟ କେତେକଙ୍କୁ ଛୋଟ ଛୋଟ ବ୍ୟବସାୟ ଧନ୍ଦା ମିଳି ପାରିଲା କ୍ରମେ କ୍ରମେ ସ୍ଥାନୀୟ ଏବଂ ନବାଗତଙ୍କ ମଧ୍ୟରେ ଭଲ ବୁଝାମଣା ହେବାକୁ ଲାଗିଲା । ତତ୍ପରବର୍ତ୍ତୀ ପର୍ଯ୍ୟାୟରେ ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କର ସହାନୁଭୂତିଶୀଳ ବଳିଷ୍ଠ ପଦକ୍ଷେପ ଯୋଗୁ ମାସିକ ପାଞ୍ଚଶହ ଟଙ୍କା ବେତନ ମଧ୍ୟରେ କାରଖାନାର ସମସ୍ତ ଚାକିରି ସ୍ଥାନୀୟ ଲୋକଙ୍କୁ ଦିଆଯିବାର ନୀତି ଧାର୍ଯ୍ୟ କରାଯିବାରୁ ଅଧିକ ଓଡ଼ିଆ ଲୋକ ଚାକିରି ପାଇବା ସମ୍ଭବ ହୋଇଥିଲା । ଏବେ ସେହି ପାଞ୍ଚଶହ ଟଙ୍କାର ସ୍ତରକୁ ୮୦୦ ଟଙ୍କା କରାଯାଇଛି କିନ୍ତୁ କିନ୍ତୁ କର୍ମଚାରୀ ସଂଖ୍ୟା ଅଧିକ ହୋଇଯାଇଥିବାରୁ ନୂଆ ଚାକିରି ମିଳୁନାହିଁ ।

କାରଖାନା ସଙ୍ଗେ ସଙ୍ଗେ ସହର ନିର୍ମାଣ କାର୍ଯ୍ୟ ଚାଲିଲା । ପ୍ରଥମରୁ ୨୦ଟି ସେକ୍ଟର ପାଇଁ ଯୋଜନା ଥିଲା । ଏବେ ତାହା ୨୧କୁ ବୃଦ୍ଧି ପାଇଥିଲେ ହେଁ ୪ ଟିର ନିର୍ମାଣ ଆରମ୍ଭ ହୋଇନାହିଁ । ଏହି କାରଖାନା ଓ ସହର ଯୋଜନାରେ ସହର ଓ କାରଖାନାର ନର୍ଦ୍ଦମା ପାଣି ଦ୍ୱାରା କୋଇଲ ଓ ବ୍ରାହ୍ମଣୀ ନଦୀ ଜଳର ପବିତ୍ରତା ନଷ୍ଟ ହୋଇଛି । ପ୍ରବଳ ଜନମତ ସତ୍ତ୍ୱେ ପ୍ରଦୂଷଣ ଅବାରିତ ରହିଛି । ଗଙ୍ଗା ଗୋଦାବରୀ ଦୂଷିତ ହେଉଥିବା ସ୍ଥଳେ ବ୍ରାହ୍ମଣୀ ଅବା ବୈତରଣୀ କଥା ଅପ୍ରାସଂଗିକ ହେବା ଏକ ସାଧାରଣ ବିଷୟ । ଯାହାହେଉ କାରଖାନା ହେଲା ଓ ବିଳମ୍ବରେ ହେଲେ ମଧ୍ୟ ଏବେ ତାହା ଯଥେଷ୍ଟ ଲାଭଅର୍ଜନକ୍ଷମ ହୋଇପାରିଛି ଏବଂ ପ୍ରସାରଣ ନହେଲେ ବି ଆଧୁନିକ କରଣ ପ୍ରକ୍ରିୟା ଆରମ୍ଭ ହୋଇଛି ।

ବିଗତ ୩୫ବର୍ଷ ମଧ୍ୟରେ ରାଉରକେଲା ଏକ ସର୍ବଭାରତୀୟ ସହର ରୂପେ ଗଢ଼ି ଉଠିଛି । ଏଠାରେ ସବୁ ଭାଷାଭାଷୀ ଓ ଧର୍ମାବଲମ୍ବୀ ଲୋକ ବସବାସ କରନ୍ତି ଏବଂ ପ୍ରାୟ ସମସ୍ତ ପୂଜାପର୍ବ ଓ ସଂସ୍କୃତିକ ଉତ୍ସବରେ ଲୋକେ ମିଳିତ ହୋଇଥାନ୍ତି । ବର୍ତ୍ତମାନ ଏଠାକାର ଜନସଂଖ୍ୟା ପାଞ୍ଚ ଲକ୍ଷକୁ ବୃଦ୍ଧି ପାଇଲାଣି । ସ୍କୁଲ, କଲେଜ, ଚିକିତ୍ସା କେନ୍ଦ୍ର, ରାସ୍ତା, ବଜାର, ହୋଟେଲ, ଅତିଥି ଭବନ, ପ୍ରେକ୍ଷାଳୟ, କ୍ଲବ, କମ୍ୟୁନିଟି ସେଣ୍ଟର, ଟେଲିଭିଜନ, ଟେଲିଯୋଗାଯୋଗ ତଥା ଡାକଘର, ବ୍ୟାଙ୍କ, ବୀମା ସଂସ୍ଥା, ବିସ୍ତ୍ରାଣ୍ଡ, ପାର୍କ, ଚିଡ଼ିଆଖାନା, ଷ୍ଟାଡିୟମ, ଜଳ ଓ ବିଦ୍ୟୁତ ଯୋଗାଣ ବ୍ୟବସ୍ଥା ହୋଇ ଆଧୁନିକ ନାଗରିକ ଜୀବନର ସୁଖ ସ୍ୱାଚ୍ଛନ୍ଦ୍ୟ ଦିଗରେ ଯଥେଷ୍ଟ ଅଗ୍ରଗତି ହୋଇ ପାରିଛି । ପ୍ରଶସ୍ତ ରେଲଷ୍ଟେସନ, ଉଡ଼ାଜାହାଜ ଘାଟି, ବସ୍ ଟ୍ୟାକ୍ସୀ, ଟ୍ରକ ଆଦି ପରିବହନ ବ୍ୟବସ୍ଥା ହୋଇପାରିଛି । ଅଗଣିତ ସାଇକେଲ, ସ୍କୁଟର, ଟେମ୍ପୋ, ରିକ୍ସା ତଥା ପର୍ଯ୍ୟଟନ ସୁବିଧା ପାଇଁ ପାନ୍ଥ ନିବାସ ଆଦି ମଧ୍ୟ ଉପଲବ୍ଧ । ବୈଚିତ୍ର୍ୟିକ

କ୍ଷେତ୍ରରେ ମଧ୍ୟ ବ୍ୟାପାର ବଣିଜ ଅବସ୍ଥା ସମୁନ୍ନତ । କର୍ମଚାରୀଙ୍କ ଦରମା ସହିତ ଶିଳ୍ପ ବାଣିଜ୍ୟ ଲବ୍ଧ କୋଟି କୋଟି ଟଙ୍କାର ଆୟ ବ୍ୟୟ ଏଠାରେ ହୋଇଥାଏ । ଲୋକେ କହନ୍ତି-ରାଉରକେଲାରେ ଟଙ୍କା ଉଡୁଛି । କିଏ ଧରି ପାରୁଛି ତାହା ପ୍ରଣିଧାନର ବିଷୟ । ଏଠାରେ କିନ୍ତୁ ଭିକାରୀ, ଦରିଦ୍ର, ରୋଗାକ୍ରାନ୍ତ ଏବଂ ଅସହାୟ ପ୍ରାଣୀଙ୍କର ପରିସଂଖ୍ୟାନ ପାଇଁ ସରକାରୀ ଅଥବା ବେସରକାରୀ କୌଣସି ସଂସ୍ଥା ଥିଲାଭଳି ମନେ ହୁଏ ନାହିଁ । ସହରକୁ ଦୁଇଭାଗ କରାଯାଇ ଗୋଟିଏ ମ୍ୟୁନିସିପାଲିଟି ଓ ଅନ୍ୟଟି ବିଜ୍ଞାପିତ ଅଞ୍ଚଳ ପରିଷଦ ଅଧୀନରେ ରଖାଯାଇଛି । ହୋଲଡିଂ ଟିକସ ଓ ପଣ୍ୟକର ଭାବେ ଏ ସଂସ୍ଥା ଦୁଇଟିର ପ୍ରଚୁର ଆୟର ସୂତ୍ର ରହିଛି । ପରିବେଶ ସୁରକ୍ଷା ପାଇଁ ମଧ୍ୟ ବିଶେଷ ବ୍ୟୟ ବରାଦ ରହିଛି । କିନ୍ତୁ ଜଳ ଓ ବିଦ୍ୟୁତ ଯୋଗାଣ ତଥା ଜନ ସ୍ୱାସ୍ଥ୍ୟ ସେବା ଆଦୌ ସନ୍ତୋଷ ଜନକ ହୋଇପାରି ନାହିଁ । ମଶା ମାଛିଙ୍କ ଦାଉରେ ଧନୀ ଗରିବ ସମସ୍ତଙ୍କ ଜୀବନ ଅସ୍ତବ୍ୟସ୍ତ ହେଉଛି । ବସ୍ତି ବାସିନ୍ଦାଙ୍କ ଦୁର୍ଗତି ଅକଥନୀୟ ତଥାପି ଦୁନିଆର ମନେହୁଏ । ଅନ୍ୟପକ୍ଷେ ସହରକୁ ସୁନ୍ଦର କରିବା ପାଇଁ ମଧ୍ୟ ବ୍ୟୟ ବହୁଳ ଯୋଜନା ରହିଛି ।

ଏଠାକାର ପ୍ରଶାସନିକ ବ୍ୟବସ୍ଥା ବିଚିତ୍ର । କଂପାନୀ ଅଥବା ସରକାର ଯାହାର ବି ହେଉ, ପ୍ରଶାସନ ଅଂଧ ନୁହେଁ କିନ୍ତୁ ଜଲକା, ବଧିର ନୁହେଁ କିନ୍ତୁ ବଡବୋଲା, ଦୁର୍ବଳ ନୁହେଁ କିନ୍ତୁ କ୍ଲୀବ । ଏହାର ବିଶ୍ଳେଷଣ ଆବଶ୍ୟକ କିନ୍ତୁ ଏଠାରେ ନୁହେଁ ।

ସାମାଜିକ ଓ ସାଂସ୍କୃତିକ ଅବସ୍ଥା ସୂକ୍ଷ୍ମରେ କହିବାକୁ ହେଲେ-ପ୍ରାଚୁର୍ଯ୍ୟ ମଧ୍ୟରେ ଦୈନ୍ୟ । ଏହି ଦୈନ୍ୟର ପରିମାପକ ଟଂକା କିମ୍ବା ସୁନା ନୁହେଁ । କେବଳ ମାନବିକତାର ମୂଲ୍ୟରେ ଏହାର ମୂଲ୍ୟାୟନ ହୋଇପାରେ । ଏଠାରେ ଶତାଧିକ ସାମାଜିକ ତଥା ସାଂସ୍କୃତିକ ଅନୁଷ୍ଠାନ ସ୍ଥାପିତ ହୋଇଥିବା ଉତ୍ସାହପ୍ରଦ କିନ୍ତୁ ସମସ୍ତଙ୍କର ବୁଝିବା ଦରକାରଯେ ସମାଜର ଅର୍ଥ ମୁଁ ତୁମେ କିମ୍ବା ସେ ନୁହେଁ । ସେ ତୁମେ ଓ ମୁଁ ମିଶି ସମାଜ । ସଂସ୍କୃତିର ଅର୍ଥ ଆଞ୍ଚଳିକତା କିମ୍ବା ସାମ୍ପ୍ରଦାୟିକତା ନୁହେଁ । ଏହାକୁ ସାଧନା ଓ ଜ୍ଞାନର ନିର୍ଯ୍ୟାସ କୁହାଯାଇପାରେ । ଏହା ପାରଂପରିକ ଭାବେ ଆଚରିତ ହୋଇ ଆସିଥିବା ଏକ କଲ୍ୟାଣକର ରୀତି । ଏହା ପରିହାର୍ଯ୍ୟ ନୁହେଁ ବରଂ ବୌଦ୍ଧିକ ଓ ଆଧ୍ୟାତ୍ମିକ ବିକାଶ ଦ୍ୱାରା ପରିମାର୍ଜନୀୟ । ଆମର ସଂସ୍କୃତି ଆର୍ଯ୍ୟ ସଂସ୍କୃତି ଅଟେ । ଏହା କେହି ଅସ୍ୱୀକାର କରିବେ ନାହିଁ । କିନ୍ତୁ ଆଜିର ସମାଜ ତାହା ରକ୍ଷା କରିବାରେ କେତେଦୂର ସମର୍ଥ ତାହା ଅବଧାରଣା କରିବା ପାଇଁ ଆତ୍ମ ନିରୀକ୍ଷଣ ଆବଶ୍ୟକ ।

ଏଠାରେ ୧୯୫୬ରେ ରାଉରକେଲା ସାଂସ୍କୃତିକ ପରିଷଦ ନାମରେ ପ୍ରଥମ ଅନୁଷ୍ଠାନ ଗଠିତ ହୋଇ, ଭାଷା କଳା ଓ ସଂସ୍କୃତିର ବିକାଶପାଇଁ କେତେକ ପଦକ୍ଷେପ

ଗ୍ରହଣ କରାଯାଇଥିଲା । ସେହି ସମୟରେ ସୁପରିଚିତ ଓଡ଼ିଆ ଲେଖକ ଶ୍ରୀ ଲକ୍ଷ୍ମୀଧର ନାୟକ ଏଠାରେ ସର୍ବପ୍ରଥମେ ମୁଦ୍ରାଣାଳୟ ସ୍ଥାପନ କଲେ ଓ ସେଠାରୁ ଗୋଟିଏ ଓଡ଼ିଆ ସାପ୍ତାହିକ ପତ୍ରିକା ପ୍ରକାଶିତ ହେଉଥିଲା । ଶ୍ରୀ ରଜନୀକାନ୍ତ ଦାସ (ସାମ୍ବାଦିକ) ୧୯୫୫ରେ ସୀମା ପୁନର୍ଗଠନ ଆନ୍ଦୋଳନ ସମୟରେ ଏଠାକୁ ଆସି ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ସେ ଅନୁଷ୍ଠାନ ତିଷ୍ଠି ପାରିନାହିଁ, କେତେକ ପ୍ରତିକୂଳ ପରିସ୍ଥିତି ଯୋଗୁ । ସେଥିପାଇଁ କ୍ଷୋଭ ନାହିଁ ଯେହେତୁ ଖଡ଼ରବେଲ୍‌ରେ ଆଜି "ପ୍ରଗତି ଉତ୍କଳ ସଂଘ", ଆଦର୍ଶ ପାଠାଗାର, କଳିଙ୍ଗ ଏକାଡେମୀ, କୋଣାର୍କ ସାଂସ୍କୃତିକ ପରିଷଦ, ଦକ୍ଷିଣ ଭାରତୀୟ ସମାଜ, ପ୍ରବାସୀ କ୍ଲବ, କେରଳ ସାଂସ୍କୃତିକ ସମିତି, ବିହାର ଆସୋସିଏସନ, କବିଚନ୍ଦ୍ର କଳାକେନ୍ଦ୍ର, ଭଂଜ ଭବନ ଓ ଭଂଜ କଳାକେନ୍ଦ୍ର, ବାସନ୍ତୀ ପାଠାଗାର, ବେଦ ଭବନ, ବୈଦିକ ଆଶ୍ରମ, ମହିମା ଆଶ୍ରମ, ଜଗନ୍ନାଥ ସାଂସ୍କୃତିକ ପରିଷଦ, ପଞ୍ଚଦେବ ସାଂସ୍କୃତିକ ପରିଷଦ, ପଶ୍ଚିମ ଓଡ଼ିଶା ଆସୋସିଏସନ, ସିଂହଭୂମି ଆସୋସିଏସନ, ହରିୟାନା ଭବନ, ଅମର ଭବନ, ଗୁର୍ଜର ସମାଜ, ଜୈନ ଭବନ, ଆଦିବାସୀ (ଓରାମ) ସାଂସ୍କୃତିକ ସମିତି, ବସ୍ତିଆ ସ୍ମୃତି ସଦନ, ଇସ୍ପାତ ସାହିତ୍ୟ ସଂସଦ ଓଡ଼ିଆ ସାହିତ୍ୟ ପାଠଚକ୍ର, ଲାୟନ୍‌ସ କ୍ଲବ, ରୋଟାରୀ କ୍ଲବ, ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନ, ଉତ୍କଳ ନବଜୀବନ ମଣ୍ଡଳ ଆଦି ଅନେକ ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ ଏଠାରେ ସକ୍ରିୟ । ଆଜି ଏଠାରେ ଅନେକ ଛାପାଖାନା ଓ ଏଠାରୁ ବିଭିନ୍ନ ଭାଷାରେ ଦୈନିକ, ସାପ୍ତାହିକ, ପାକ୍ଷିକ ଏବଂ ମାସିକ ପତ୍ର ପ୍ରକାଶିତ । ଏତଦ୍‌ବ୍ୟତୀତ ସମ୍ପ୍ରଦାୟ ଓ ଶ୍ରମିକ ସଂଗଠନ ତଥା ଧାର୍ମିକ ଅନୁଷ୍ଠାନ ମଧ୍ୟ ଅନେକ ରହିଛି । ମାତ୍ର ଘୋର ପରିତାପର ବିଷୟ ଏହା ଯେ ସମସ୍ତଙ୍କ ଆଖି ଆଗରେ ଭାଷା ଓ ସଂସ୍କୃତିର ଶୋଚନୀୟ ଅବକ୍ଷୟ ଘଟିଚାଲିଛି । ଇଂରାଜୀମାଧ୍ୟମ ଶିକ୍ଷା ପଦ୍ଧତି ଯୋଗୁ ଶାନ୍ତ୍ୟେଷଣ ପରେ ମଧ୍ୟ ଗ୍ରାମଗ୍ରାହୀ ନିଜ ମାତୃଭାଷାରେ ଅଜ୍ଞ । ବିଶେଷତଃ ଏଠାରେ ଓଡ଼ିଆ ଲୋକେ ମଧ୍ୟ ହିନ୍ଦି ଓ ଇଂରାଜୀରେ କଥାବାର୍ତ୍ତା କରିବାକୁ ଆଗ୍ରହୀ ହେଉଥିବା ପରିଲକ୍ଷିତ ହୁଏ । ଇଂରାଜୀ ହିନ୍ଦି ଓ ଅନ୍ୟ ଯେ କୌଣସି ଭାରତୀୟ ତଥା ବୈଦେଶୀୟ ଭାଷା ଶିଖିବା ବା ଆବଶ୍ୟକ ସ୍ଥଳେ କହିବା ଦୋଷାବହ ନୁହେଁ କିନ୍ତୁ ନିଜ ମାତୃଭାଷା ପ୍ରତି ଅବହେଳା ପ୍ରଦର୍ଶନ ପ୍ରମାଦ ପୂର୍ଣ୍ଣ ଓ ଅମାର୍ଜନୀୟ । କେବଳ ଏତିକି ନୁହେଁ, ପାନ ଭୋଜନ, ପରିଧାନ, ପ୍ରସାଧାନ, ଆଦିରେ ମଧ୍ୟ ଅବାଂଛିତ ଓ ଅହିତକର ତଥା ଭାରତୀୟ ରୁଚିହୀନ ଅନୁକରଣ ବଢିଚାଲିଥିବା ଦେଖାଯାଏ । ମଦ୍ୟପାନର ମାତ୍ରା ମାରାତ୍ମକ ହୋଇ ଉଠିଲାଣି ।

ଭାରତବର୍ଷ ଏକ ପ୍ରାଚୀନ ଓ ଉନ୍ନତ ସଂସ୍କୃତିର ଅଧିକାରୀ । ସେହି ସଂସ୍କୃତିର ସୁରକ୍ଷା ଓ ବିକାଶ ନିମନ୍ତେ ଅସାମାଜିକ ଓ ଅଶୌଜନ୍ୟ ଆଚରଣ, ନାରୀ-ନିର୍ଯ୍ୟାତନା, ଯୌତୁକ ପ୍ରଥା, ଅସ୍ପୃଶ୍ୟତା ଓ ସର୍ବୋପରି ମାଦକ ସେବନ ବିରୁଦ୍ଧରେ କ୍ରାନ୍ତିକାରୀ ଅଭିଯାନ ସମସ୍ତଙ୍କର ଆଭିମୁଖ୍ୟ ହେଉ । ତା ନ ହେଲେ ସଂସ୍କୃତିର ବିକାଶ ପରିବର୍ତ୍ତେ ବିନାଶର ଆଶଂକା ଉତ୍ତରୋତ୍ତର ହୋଇ ଉଠିବ ।

# ମୋ' ସମୟର ରାଉରକେଲା

● ମହେଶ୍ୱର ପଣ୍ଡା, ଏମ୍.ଏ
ସହକାରୀ ମ୍ୟାନେଜର

" ହରଦ୍ୱାର ନୁହେଁ ଏହା........ କୋଣାର୍କ ନୁହେଁ ଏ ।
ମେହେନତୀ ମଣିଷର ମାଙ୍ଗଳିକ ଗାଇ
ଶିଳ୍ପ-ସଭ୍ୟତାର ଶିଖେ ସ୍ୱର୍ଣ୍ଣଶିଖା ଥୁଇ
ପ୍ରଗତିର ପ୍ରବାହରେ ପଣ୍ୟତସ୍ତ ମେଲି
ବିଶ୍ୱ-ବିପଣୀରେ ଜାତି-ଗୌରବ ଗାଏ ଏ ।
ମୋ ଦେଶର ଶିଳ୍ପତୀର୍ଥ ସମୃଦ୍ଧି ଥୁଏ ଏ ।" (ଶିଳ୍ପତୀର୍ଥ-ରାଉରକେଲା)

ରାଉରକେଲାକୁ ଆସି ତାର କାର୍ଯ୍ୟକଳାପ ଦେଖି ମୋର "ଶିଳ୍ପତୀର୍ଥ-ରାଉରକେଲା" କବିତାରେ ମୁଁ ଯାହା ଉଲ୍ଲେଖ କରିଥିଲି, ତାହାର ଏକ ଅଂଶର ଉଦ୍ଧୃତି ଉପରେ ଦିଆଯାଇଛି । ଏ ରାଉରକେଲା ଏକ ଆଦିବାସୀ ବହୁଳ ଅଞ୍ଚଳ ଥିଲା । ଏଠି ଇସ୍ପାତ କାରଖାନା ଗଢି ଉଠିବା ସଂଗେ ସଂଗେ ଏହାର ସ୍ୱରୂପ କ୍ରମେ କ୍ରମେ ବଦଳିଗଲା । ତେଣୁ ରାଉରକେଲା ହେଲା-

" ସୁପ୍ତ ବନଭୂମି ଆଜି ଜାଗ୍ରତ ଚଞ୍ଚଳ............
ଜନତାର ଶୋଭାଯାତ୍ରା ଚଳେ ନବରୂପେ,
ଅନାମୀ ଯୁବକେ ଶୋହେ ବିଚର୍ଚ୍ଚିତ ଚୂଡ଼ା
ଚଳନ୍ତି ଲଳନାକୁଳ ଆଦିବାସୀ ଗ୍ରାମୁ
ଦେଖ ଦେଖ ଝରଣାର ଝିରଝିର ଗାନେ ।
ତୀର୍ଥବେଣୀ କର୍ମବୀର ସମୁଦ୍ର ବା ମାତେ,
ଅକଳନ୍ତ ଅଗ୍ନିଶିଖା ରକ୍ତରେଣୁ ଝାଡେ ।" (ଶିଳ୍ପତୀର୍ଥ-ରାଉରକେଲା)

ରାଉରକେଲା ଇସ୍ପାତ କାରଖାନା ଗଢି ଉଠିବା ଫଳରେ ଏଠି ଦେଶ ବିଦେଶର ବହୁ ବୈଜ୍ଞାନିକର ସ୍ଥାନ ପାଇଲେ । ଓଡ଼ିଶା ଓ ଭାରତର ବିଭିନ୍ନ ପ୍ରଦେଶରୁ ବହୁଲୋକଙ୍କୁ ଏଠି କର୍ମସଂସ୍ଥାନର ସୁଯୋଗ ମିଳିଲା । ଝିରପାଣି ଓ ଜଳଦାରେ ବାସ୍ତୁହରାଙ୍କ ପାଇଁ 'ରି-ସେଟଲ୍‌ମେଣ୍ଟ' କଲୋନୀ ତିଆରି ହେଲା । ଏହି କାରଖାନା ଗଢାଯିବା ଫଳରେ ଏକ ସୁନ୍ଦର ଅତ୍ୟାଧୁନିକ ଇସ୍ପାତ ସହର ମଧ୍ୟ ଗଢି ଉଠିଲା ।

କାରଖାନାରେ କାମକରି ଇସ୍ପାତ ସହରରେ ରହୁଥିବା ଲୋକମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ଲାଗି ନାନା ଅନୁଷ୍ଠାନ ମାନ ଏଠି ରହିଛି । ଶିକ୍ଷାର ଉନ୍ନତି ପାଇଁ

ବିଭିନ୍ନ ସେକ୍ଟରରେ ଲେସ୍ପୁର ସେକେଣ୍ଡାରୀ ସ୍କୁଲଠାରୁ ଆରମ୍ଭ କରି ହାଇସ୍କୁଲ ତେଭି କଂପାନୀର ଏକ (+୨) ଜୁନିୟର କଲେଜ (ଇସ୍ପାତ ବିଦ୍ୟାମନ୍ଦିର) ରହିଛି । ଏହାଛଡା ଡି.ଏ.ଭି. ସ୍କୁଲ କଲେଜ, ସରକାରୀ ଓ ବେସରକାରୀ କଲେଜ, ଏନ୍.ଏ.ସି ସ୍କୁଲ ଏବଂ ବହୁ ଇଂରାଜୀ ମାଧ୍ୟମ ସ୍କୁଲ ମଧ୍ୟ ପରିଚାଳିତ ହେଉଛି ।

ଏଠାରେ ସ୍ୱାସ୍ଥ୍ୟରକ୍ଷା ଦିଗରେ ସବୁଠାରୁ ବଡ ଡାକ୍ତରଖାନା ହେଉଛି ଇସ୍ପାତ ଜେନେରାଲ ହସ୍ପିଟାଲ । ଏଠି ଆଉଟ୍ ଡୋର୍‌ରେ ସକାଳେ ଓ ସନ୍ଧ୍ୟାରେ ଦିଓଲି ଔଷଧପତ୍ର ଦିଆଯାଇ ଚିକିତ୍ସା କରାଯାଏ । ତାଛଡା ବିଭିନ୍ନ ରୋଗୀଙ୍କ ସୁନିୟନ୍ତ୍ରିତ ଚିକିତ୍ସା ପାଇଁ ଉକ୍ତ ହାସପାତାଳରେ ରହିବାର ବ୍ୟବସ୍ଥା ଓ ସୁବିଧା ମଧ୍ୟ ରହିଛି । ଏହାର ଏକ ସ୍ୱତନ୍ତ୍ର ଅଫିସ୍ ଓ କାର୍ଯ୍ୟକାରୀ ଷ୍ଟାଫ୍ ଅଛନ୍ତି । ଏହାଛଡ଼ା ହେନ୍ସା, ବରସୁଆଁ, ଖାଲ୍ଡା, ପୁରୁଣାପାଣି ଓ ବାରଦ୍ୱାର ଆଦି ଖଣି ଅଂଚଳ ମାନଙ୍କରେ ଏହିସବୁ ବ୍ୟବସ୍ଥାମାନ ମଧ୍ୟ ରହିଛି ।

କଳା-ସଂସ୍କୃତିର ବିକାଶ ଦିଗରେ ରାଉରକେଲା ଇସ୍ପାତ କାରଖାନାର ଅବଦାନ ଅନସ୍ୱୀକାର୍ଯ୍ୟ । ଇସ୍ପାତ ସହର ଛଡା ଆଦିବାସୀ କଲୋନୀ ଓ ଖଣି ଅଞ୍ଚଳ ମାନଙ୍କରେ ଲୋକ ମାନଙ୍କର କଳା-ସଂସ୍କୃତିର ଉନ୍ନତି ପାଇଁ ନାନା ବ୍ୟବସ୍ଥାମାନ ମଧ୍ୟ ଯୋଗାଇ ଦିଆଯାଇଥାଏ ।

ଇସ୍ପାତ ସହରରେ ଏଥିପାଇଁ ବିଭିନ୍ନ ଭାଷାଭାଷୀ ବ୍ୟକ୍ତି ମାନଙ୍କର ବହୁ ଅନୁଷ୍ଠାନ ରହିଛି । ସେଗୁଡିକ ହେଲା-ମୁଖ୍ୟତଃ କଲଚରାଲ ଏକାଡେମୀ, ସଂଘମ୍, ଆଦର୍ଶ ପାଠାଗାର, ପ୍ରଗତି ଉତ୍କଳ ସଂଘ, ମ୍ୟୁଜିକ ସର୍କଲ, ସଂକେତ, ନଟରାଜ ନୃତ୍ୟ ପରିଷଦ, କବିଚନ୍ଦ୍ର କଳାକେନ୍ଦ୍ର, କୋଣାର୍କ ସଂସ୍କୃତିକ ପରିଷଦ, ଇସ୍ପାତ ସାହିତ୍ୟ ସଂସଦ, ଭଂଜ କଳାକେନ୍ଦ୍ର, ସ୍ପୃତି, କଳିଙ୍ଗ କଳା ପରିଷଦ, ମଧୁମାଛି, କସ୍ତୁରୀ, ଦୀପିକା ଲେଡିଜ୍ କ୍ଲବ, ସିଂହାସୀ କଲାନିକେତନ, ସିଂହଭୂମ ସାଂସ୍କୃତିକ ପରିଷଦ, ରାଉରକେଲା କଲ୍‌ଚରାଲ୍ ଆସୋସିଏସନ୍, ପ୍ରବାସୀ କ୍ଲବ, ରାଇମା, ବ୍ୟାୟାମାଗାର, ଦିସାରୀ, ମାନସ ପରିଷଦ, ଦେବନାଗରୀ ସଂଗମ୍ ବିହାର ସାଂସ୍କୃତିକ ପରିଷଦ, ଇସ୍ପାତ କଲାମନ୍ଦିର, ଯୁଗବାଣୀ, ଦକ୍ଷିଣ ଭାରତ ସମାଜ ଓ କେରଳ ସାଂସ୍କୃତିକ ପରିଷଦ ଇତ୍ୟାଦି । ଏହାଛଡା ଚଳଚିତ୍ର ପ୍ରଦର୍ଶନ ପାଇଁ ସିନେ କ୍ଲବ୍ ଭଳି ସାଂସ୍କୃତିକ ଅନୁଷ୍ଠାନ ମଧ୍ୟ ରହିଛି । ତେବେ ଏସବୁ ଅନୁଷ୍ଠାନ ଗୁଡିକ ମଧ୍ୟରେ କଲ୍‌ଚରାଲ୍ ଏକାଡେମୀ ବିଶେଷ ଦୃଷ୍ଟି ଆକର୍ଷଣ କରେ ।

ଏହି କଲଚରାଲ ଏକାଡେମୀର ଆରମ୍ଭ ଦିନୁ ଏହାର ଏକ ହାତଲେଖା ପତ୍ରିକା ବାହାରୁଥିଲା । ୧୯୬୨ରୁ ଏହାର ଏକ ଛପା ମୁଖପତ୍ର 'ନବପତ୍ର' ପ୍ରକାଶ ପାଇ ଆସୁଛି । ଏହି ଅନୁଷ୍ଠାନ ଏକ ଶିଳ୍ପାଞ୍ଚଳ ସାହିତ୍ୟ-ସମ୍ମିଳନୀ ଭଳି ବିରାଟ ସାହିତ୍ୟ-ସମ୍ମିଳନୀର ଆୟୋଜନ କରିପାରିଛି ଏବଂ କେନ୍ଦ୍ର ସାହିତ୍ୟ-ଏକାଡେମୀ ପୁରସ୍କାର ପ୍ରାପ୍ତ ପ୍ରଖ୍ୟାତ ସାହିତ୍ୟିକ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତିଙ୍କୁ ଅଣାଇ ସମ୍ବର୍ଦ୍ଧନା

କରାଇଛି । ଏହାଛଡ଼ା 'ଲଳିତ କଳା ବିଦ୍ୟାଳୟ' (A School of Fine Arts) ହେଉଛି ଏହାର ଏକ ଉନ୍ନତ କଳା-ସଂସ୍କୃତିର ଅବଦାନ । ପ୍ରତିବର୍ଷ ବାର୍ଷିକୋତ୍ସବରେ ଏହାର କୃତୀ ଛାତ୍ର-ଛାତ୍ରୀମାନଙ୍କର ସମୁନ୍ନତ କଳାକୃତି ନେଇ ଏହା ଏକ କଳା-ପ୍ରଦର୍ଶନୀର ଆୟୋଜନ କରିଥାଏ । ଏକାଡେମୀର ବିଶେଷଉନ୍ନତ ଧରଣର ଅନୁଷ୍ଠାନ ହେଉଛି- 'ଲୋକ ନାଟକ ମହୋତ୍ସବ' ଏଥିରେ ଓଡ଼ିଶାର ବିଭିନ୍ନ କଳା-ସଂସ୍କୃତିର ଅନୁଷ୍ଠାନମାନ ଯୋଗଦାନ କରି ପୁରସ୍କୃତ ହୋଇଥାନ୍ତି । ଏହା 'ନବପତ୍ର' ପତ୍ରିକା ପ୍ରକାଶ କରିବା ସଂଗେ ସଂଗେ 'ଓଡ଼ିଆ ଲୋକନାଟ୍ୟ' ଓ 'ଗୋପୀନାଥ ପରମ୍ପରା' ଆଦି ପୁସ୍ତକମାନ ପ୍ରକାଶ କରିଛି । ଏହାଛଡ଼ା ଛୋଟ ଛୋଟ ପିଲାମାନଙ୍କୁ ନେଇ ଏହା ଏକ ଓଡ଼ିଆ ନର୍ସରୀ ସ୍କୁଲ ଖୋଲିଛି । ତାର ନାମ ''ଶିଶୁନିକେତନ'' ।

ପରେ ଏହି ଅନୁଷ୍ଠାନର ଏକ ସହଯୋଗୀ ଅନୁଷ୍ଠାନ ରୂପେ ଗଠିତହେଲା 'ସଙ୍ଘମ୍' । ଏକ ବର୍ଷଯାଏ ଏହା ତାର ମୁଖପତ୍ର ପ୍ରକାଶ କରିବା ସଙ୍ଗେ ସଙ୍ଗେ 'ସେମାନେ ବି ବଞ୍ଚିବେ' ( ଗଳ୍ପ ସଂକଳନ ), 'ଏ ମାଟି ବନ୍ଧ୍ୟା ନୁହେଁ' (ଗଳ୍ପ ସଂକଳନ) ଓ 'ଗର୍କୀ ମାନସ' (ପୁସ୍ତକ) ପ୍ରକାଶ କରିଛି । 'ଆଦର୍ଶ ପାଠାଗାର' ଓ 'ପ୍ରଗତି ଉତ୍କଳ ସଂଘ' ହେଉଛନ୍ତି ସାହିତ୍ୟ ପ୍ରେମୀମାନଙ୍କର ଦୁଇଟି ଉଚ୍ଚକୋଟୀର ସାହିତ୍ୟାନୁଷ୍ଠାନ । 'ଭଞ୍ଜ ଭବନ ନିର୍ମାଣ' ଓ 'ପାଠାଗାର' ପାଇଁ "ଆଦର୍ଶ ପାଠାଗାର" ସୁପରିଚିତ । 'ଉତ୍କଳମଣି ଗୋପବନ୍ଧୁ ଜୟନ୍ତୀ' ଓ 'ଭଞ୍ଜ ଜୟନ୍ତୀ ପାଳନ' ଏବଂ 'ନବବର୍ଷ କବି-ସମ୍ମିଳନୀ' ଆୟୋଜନ ନେଇ ଏହା ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରେ । 'ପାଠାଗାର' ସଙ୍ଗେ ସେହିପରି 'ଉତ୍କଳ ଦିବସ ଓ ମଧୁସୂଦନ ଜୟନ୍ତୀ'' ପାଳନ ପାଇଁ ''ପ୍ରଗତି ଉତ୍କଳ ସଂଘ'' ବେଶ୍ ଜଣାଶୁଣା । ସେହିପରି 'କୋଣାର୍କ ସାଂସ୍କୃତିକ ପରିଷଦ''ର ପ୍ରଧାନ ଉତ୍ସବାନୁଷ୍ଠାନ ହେଲା – କାର୍ତ୍ତିକ ପୂର୍ଣ୍ଣିମା ଦିନ 'ବୋଇତ ବନ୍ଦାଣ ଉତ୍ସବ' ପାଳନ । ଇସ୍ପାତ ସାହିତ୍ୟ ସଂସଦ ମଧ୍ୟ କେତେକ କବି ସାହିତ୍ୟିକଙ୍କୁ ନେଇ ଏକ ମୁଖପତ୍ର ପ୍ରକାଶ କରିବା ସଙ୍ଗେ ସଙ୍ଗେ ସାପ୍ତାହିକୀ ଆଲୋଚନା – ବୈଠକରେ ସାହିତ୍ୟ-ସାଧନାର ଦିଗ୍‌ଦର୍ଶନ ଦେଇଥାଏ । ତା'ଛଡ଼ା ପ୍ରତ୍ୟେକ ଅନୁଷ୍ଠାନ ସେମାନଙ୍କର ବାର୍ଷିକୋତ୍ସବରେ ସ୍ୱତନ୍ତ୍ର ସ୍ମରଣୀକା ପ୍ରକାଶ କରି ଯଶସ୍ୱୀ ହୋଇଥାନ୍ତି । ପୁଣି ଅନ୍ୟାନ୍ୟ ଭାଷାଭାଷୀଙ୍କ ଅନୁଷ୍ଠାନମାନ ରକ୍ତଦାନ, ବିପଦବେଳେ ସହାୟତା ପ୍ରଦର୍ଶନ, ନାନା ଲୋକହିତକର କାର୍ଯ୍ୟାବଳୀ, ସାମୟିକ ସାହିତ୍ୟାଲୋଚନା, ନାଟକାଭିନୟ, ଶାରୀରିକ କ୍ରୀଡ଼ା ପ୍ରତିଯୋଗିତା ଓ ଆତସବାଜି କ୍ରୀଡ଼ା ପ୍ରଦର୍ଶନ ଆଦି କାର୍ଯ୍ୟରେ ଜନମନ ହରଣ କରିଥାନ୍ତି । ଏହି ଛଡ଼ା 'ଶ୍ରୀ ଅରବିନ୍ଦ ଯୋଗ ମନ୍ଦିର' ଭଳି ଶୁଦ୍ଧ ପୂତ ଶାଶ୍ୱତ ଭକ୍ତିମୂଳକ ଅନୁଷ୍ଠାନ ମଧ୍ୟ ସମସ୍ତଙ୍କର ଚିତ୍ତ ହରଣ କରେ । ପୁଣି ସାରକାରଖାନାର ''ଗୋପବନ୍ଧୁ ପ୍ରଗତି ପରିଷଦ'' ଭଞ୍ଜ-ଜୟନ୍ତୀ ଓ ବିଭିନ୍ନ ସାହିତ୍ୟାନୁଷ୍ଠାନ ଦ୍ୱାରା ସମସ୍ତଙ୍କ ଦୃଷ୍ଟି

ଆକର୍ଷଣ କରେ । ଏହିଭଳି ସବୁ ସାଂସ୍କୃତିକ କାର୍ଯ୍ୟାନୁଷ୍ଠାନମାନ ଦ୍ୱାରା ଇସ୍ପାତ ସହର ଓ ରାଉରକେଲାର ଅନ୍ୟାନ୍ୟ କର୍ମକ୍ଲାନ୍ତ ବାସିନ୍ଦାମାନଙ୍କର ଚିତ୍ତ ବିନୋଦନ ହୋଇଥାଏ । ମନୋମୁଗ୍ଧକର ସଂଗୀତ, ନାଟକପରିବେଷଣ ଓ କଳା-ସଂସ୍କୃତି ପ୍ରଦର୍ଶନ ଦ୍ୱାରା ଏଠାକାର ଦୁର୍ବହ ଜୀବନ ଆଜି ସୁନ୍ଦର, ସୁଠାମ ଓ ଚଳଚଞ୍ଚଳ ହୋଇ ଉଠିଛି । ଅନୁଷ୍ଠାନ ଗୁଡ଼ିକର କର୍ମକର୍ତ୍ତାମାନେ ଖୁବ୍ ଆନ୍ତରିକତାର ସହ କାର୍ଯ୍ୟକ୍ରମ ଆରମ୍ଭ କରି ନିର୍ଦ୍ଦିଷ୍ଟ ସମୟରେ ତାର ସୁସମାପନ କରିଥାନ୍ତି । କେବଳ ଚିତ୍ତ ବିନୋଦନ ପାଇଁ ନୁହେଁ, ସାମାଜିକ ବିକାଶ ଦିଗରେ ସେମାନଙ୍କର ଏହି କାର୍ଯ୍ୟକ୍ରମ ମଧ୍ୟ ବିଶେଷ ସହାୟକ ହୋଇଥାଏ ।

ଏ' ପ୍ରସଙ୍ଗରେ, ରାଉରକେଲାର ସ୍ୱାସ୍ଥ୍ୟରକ୍ଷା ବ୍ୟବସ୍ଥା ମୋ'ପକ୍ଷରେ ଚିର ଅବିସ୍ମରଣୀୟ । ମୋର ସ୍କୁଟର ସାଂଘାତିକ ଦୁର୍ଘଟଣାରେ ଇସ୍ପାତ ଜେନେରାଲ ହାସପାତାଲରେ ମୁଁ ୨/୩ ମାସ ଧରି ଶଯ୍ୟାଶାୟୀ ଥିଲି । ପ୍ରାୟ ୧ ମାସ ଯାଏ ମୋର ଚେତା ଆସି ନଥିଲା । ସମସ୍ତେ ଭାବୁଥିଲେ - ମୁଁ ବୋଧହୁଏ ହାସପାତାଲରୁ ଆଉ ଫେରିବି ନାହିଁ । କିନ୍ତୁ ମୁଁ ଫେରିଲି । ଯଦିଓ ମୋର କିଛିଟା ଶାରୀରିକ ଦୁର୍ଗତି ରହିଯାଇଛି; ତଥାପି ମୁଁ କର୍ମକ୍ଷେତ୍ରରେ ଯୋଗଦେଇ କାର୍ଯ୍ୟ କରି ଚାଲିଛି । ତେଣୁ ଇସ୍ପାତ ଜେନେରାଲ ହାସପାତାଲର ଚିକିତ୍ସା ବ୍ୟବସ୍ଥା, ପଦ୍ଧତି ଓ ତତ୍‌ସମ୍ବନ୍ଧିତ ସଂପୃକ୍ତ ଚିକିତ୍ସକ ମାନଙ୍କର ନିଷ୍ଠାକୁ ମୁଁ ଆଦୌ ଭୁଲି ପାରିବି ନାହିଁ ।



# ସେ ଦିନର ରାଉରକେଲା

* ମହାପାତ୍ର ଯତୀନ୍ଦ୍ର କୁମାର

ମୁଁ ଯେତେବେଳେ ବରସୁଆଁ ଆଇରନ୍ ମାଇନସ୍‌ରୁ ଟ୍ରାନସ୍‌ଫର୍ ହୋଇ ରାଉରକେଲାରେ ପହଞ୍ଚେ ସେତେବେଳେ ଏଠାରେ ଓଡ଼ିଆମାନଙ୍କ ସଂଖ୍ୟା ଅତ୍ୟଳ୍ପ ଥିଲା କାରଣ ଓଡ଼ିଆମାନେ ଭୁବନେଶ୍ୱର ସେକ୍ରେଟେରିଏଟ୍ ଛାଡ଼ି ଏଠାକୁ ଆସିବାକୁ ଚାହୁଁ ନ ଥିଲେ । ଯଦିବା କେତେକ ଆସୁଥିଲେ ଡେପୁଟେସନ୍‌ରେ; ଫେରି ଯିବାକୁ ଚାହୁଁ ଥିଲେ । ଅନୁନ୍ନତ ରାଉରକେଲାରେ ସେମାନେ ରହିବାକୁ ଚାହୁଁ ନ ଥିଲେ । କଷ୍ଟ କରି ଏଠାରେ ବିଭିନ୍ନ ଚାକିରିରେ ରହିବାକୁ ଚାହୁଁ ଥିଲେ ବିଭିନ୍ନ ରାଜ୍ୟର ଲୋକମାନେ । ଏବଂ ରହି ଗଲେ ମଧ୍ୟ । କେବଳ ଚାକିରି କ୍ଷେତ୍ରରେ ନୁହେଁ ବ୍ୟବସାୟ କ୍ଷେତ୍ରରେ ସେହି ଏକା ଅବସ୍ଥା । ଦୋକାନ ଓ କଣ୍ଟ୍ରାକ୍ଟରି ବାହାର ଲୋକେ କଷ୍ଟ ସ୍ୱୀକାର କରି କରୁଥିଲେ । ଗୋଟିଏ ଗ୍ରେଟ ରେଲ୍ ଷ୍ଟେସନ୍ ପାଖରେ ଅଳ୍ପ କେତେ ଟି ଦୋକାନ ଓଡ଼ିଆମାନଙ୍କର ଥିଲା ।

ସେତେବେଳେ ବର୍ତ୍ତମାନର ଏମ୍.ଏଲ୍.ଏ.ଙ୍କ ପିତା ଏବଂ ସେକ୍ଟର-୩ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିବା ହରିହର ପ୍ରଧାନ ମହାଶୟଙ୍କ ଛଡ଼ା ଅନ୍ୟ କେହି ଜଣାଶୁଣା ଓଡ଼ିଆ ବ୍ୟବସାୟୀ କ୍ଷେତ୍ରରେ ନ ଥିଲେ । ସାହିତ୍ୟ କ୍ଷେତ୍ରରେ କେବଳ ଲକ୍ଷ୍ମୀଧର ନାୟକ ମହାଶୟ ଥିଲେ । କଳା କ୍ଷେତ୍ରରେ ଥିଲେ ରାସବିହାରୀ ସିଂଦେଓ ମହାଶୟ । ଗୋଟିଏ ସାହିତ୍ୟ ସଭା ହେଲେ ବାହାରୁ ବକ୍ତା ଆଣିବାକୁ ପଡୁଥିଲା । ଡ୍ରାମାଟିଏ ହେଲେ ବାହାରୁ ହିରୋଇନ୍ ଆଣିବାକୁ ପଡ଼ୁଥିଲା । ଖଣ୍ଡାୟତ ମେସ୍, କରଣ ମେସ୍, ବ୍ରାହ୍ମଣ ମେସ୍, ବାଲେଶ୍ୱର ଆସୋସିଏସନ୍ ଗଞ୍ଜାମ ଆସୋସିଏସନ ପ୍ରଭୃତିରେ ଓଡ଼ିଆମାନେ ବିଭକ୍ତ ହୋଇ ଥିଲେ । ଉଚ୍ଚ ପଦସ୍ଥ ଚାକିରିରେ ଥିବା କେତେ ଜଣ ଓଡ଼ିଆ ଓଡ଼ିଆ-ମାନଙ୍କର ନେତା ଥିଲେ । ଆର୍.ବି. ପଟ୍ଟନାୟକ ମହାଶୟ, ମାଧବ ପାଣି ମହାଶୟଙ୍କ କୌଣସି ବିଶେଷ ଏକ୍ଟିଭିଟି ଜଣା ପଡ଼ୁ ନ ଥିଲା । ଜଣା ପଡ଼ୁଥିଲା କେବଳ ନରସିଂହ ରଥ ମହାଶୟଙ୍କର । ଓଡ଼ିଆମାନେ ନିଜ ନିଜର ଦାବୀ ତାଙ୍କ ଜରିଆରେ ହାସଲ୍ କରିବା ପାଇଁ ଚେଷ୍ଟା କରୁଥିଲେ । ଓଡ଼ିଶା ସରକାରଙ୍କ ଜଣେ ଡେପୁଟେସନିଷ୍ଟ ଆଇ.ଏ.ଏସ୍ ଅମର ସିଂହ ମହାଶୟଙ୍କ ସହିତ ତାଙ୍କର ମତଭେଦ ଓ ସଂଘର୍ଷ ଫଳରେ ଓଡ଼ିଆ ସ୍ୱାର୍ଥ ମଧ୍ୟ ବ୍ୟାହତ ହେଉଥିଲା । ମହାତ୍ମା ଗାନ୍ଧୀଙ୍କ ଏକଦା ପ୍ରାଇଭେଟ୍ ସେକ୍ରେଟେରୀ ଥିବା

ସୁଧୀର ଘୋଷ ମହାଶୟ ଏଠାକୁ ସିନୟୁର ଡି.ଜି.ଏମ୍. ହୋଇ ଆସିବା ପରେ ସେଇ ସଂଘର୍ଷ ପ୍ରଶମିତ ହୋଇ ଥିଲା ଯେହେତୁ ସମସ୍ତ କ୍ଷମତା ତାଙ୍କ ହାତକୁ ଚାଲି ଯାଇ ଥିଲା ଏବଂ ସେ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ମହତାବ୍ ମହାଶୟଙ୍କ ପୁରୁଣା ବନ୍ଧୁ ଥିବାରୁ ତାଙ୍କ ସମର୍ଥନ ପାଇବାକୁ ଲାଗିଥିଲେ । ଏଠାକାର ଶ୍ରମିକ ସଂଘ ଗୁଡ଼ାଏ ନୂଆ ଗଠିତ ହୋଇ ଥିଲା । ମୁଖ୍ୟତଃ ସେଥିରେ ଓ୍ୱାର୍କ ଚାର୍ଜ ଆଣ୍ଡ ମଷ୍ଟର ରୋଲ୍‌ମ ନେ ମେମ୍ବର ହେଉଥିଲେ । ଦିଲ୍ଲୀର ନିର୍ଦ୍ଦେଶରେ ଆଇ.ଏନ୍.ଟି ୟୁ ସି କୁ ସ୍ୱୀକୃତି ଦିଆହୋଇଥିଲା । କେବଳ ସେଇଥିରେ ଜଣେ ଓଡ଼ିଆ ଅଫିସ୍ ବେୟରର୍ ଥିଲେ ଅଳ୍ପ ଦିନ ପାଇଁ । ପରେ ସବୁ ଇଉନିୟନ୍ କ୍ରମେ ଓଡ଼ିଆ ପରିଚାଳିତ ଅନୁଷ୍ଠାନରେ ପରିଣତ ହେଉଥିଲେ କ୍ରମେ କ୍ରମେ । ଏମ୍ପ୍ଲୟମେଣ୍ଟ ଏକ୍‌ସଚେଞ୍ଜରେ ଟଙ୍କା ପଇସା କାରବାର ଥିଲା । ଓଡ଼ିଆ ପରିବର୍ତ୍ତେ ଅଣଓଡ଼ିଆ ପ୍ରାର୍ଥୀଂକ ନାମ ବେଶୀ ରେଜିଷ୍ଟ୍ରୀ ହୋଇଥିଲା । ଓଡ଼ିଆ ଅନୁନ୍ନତ ରାଉରକେଲାକୁ ଆସିବା ପାଇଁ ଚାହୁଁ ନ ଥିଲେ । ଚାହିଁଲେ ରାଉରକେଲା ଉନ୍ନତ ହେବା ପରେ । ସେଥି ଯୋଗୁ ଏଠାକାର ଅଧିକାଂଶ କର୍ମଚାରୀ ଅଣଓଡ଼ିଆ ହୋଇଗଲେ ଏବଂ ସେଇମାନଂକ ନାମ ଡୋମେଟରିଲାଷ୍ଟରେ ଏନ୍‌ଲିଷ୍ଟେଟ୍ ହେଇଯିବାରୁ ସେହିମାନଂକ ସନ୍ତାନମାନେ "ସନ୍-ଅଫ-ଦି-ସଏଲ୍" ଭାବରେ ଚାକିରୀରେ ସ୍ଥାନ ପାଇଲେ । ଯଦିଓ ପର୍‌ସନାଲ୍ ଫାଇଲ୍‌ରେ ସେ ସମସ୍ତଂକ ହୋମ ଏଡ୍ରେସ୍ ଅନ୍ୟ ରାଜ୍ୟରେ ରହିଚି ଏବଂ ସେଠାକୁ ସେମାନେ ହୋମ୍ ଏଲ୍.ଟି ସି. ପାଇ ଚାଲିଯାନ୍ତି । ଓଡ଼ିଆମାନଂକର ପାଠାଗାର ନଥିଲା । ଜଣେ ନିଜ ବସାରେ ଫ୍ରେଣ୍ଡ ଲାଇବ୍ରେରୀଟିଏ ଆରମ୍ଭ କଲେ । ତାଂକ ନାମ ଲୋକେ ଭୁଲି ଗଲେଣି । ତାହାହିଁ ବର୍ତ୍ତମାନ ବିସ୍ତୃତି ନେଇ "ଆଦର୍ଶ-ପାଠାଗାର" (କଂଗ୍ରେସ୍‌କୁ ଆରମ୍ଭ କରିଥିବା ଇଂରେଜ ଭଦ୍ରଲୋକଟିର ନାମ ଯେମିତି ସମସ୍ତେ ଭୁଲି ଗଲେଣି । ) ସେତେବେଳେ ମନ୍ତ୍ରୀମାନେ ରାଉରକେଲା ଆସି ଚେତାଇ ଦେଉଥିଲେ ଯେ ଏହା ମୁଖ୍ୟତଃ ଅଣ ଓଡ଼ିଆ ମେଜରିଟି ସହର, ତେଣୁ 'ଅମର ସିଂହ' 'ତେଓ୍ୟାରୀ' ପ୍ରଭୃତି ଅଣଓଡ଼ିଆ ସର୍‌ନେମ୍‌ଧାରୀ ଓଡ଼ିଶା ସରକାରଂକ ଡେପୁଟେସନିଷ୍ଟମାନଙ୍କୁ ନିଷ୍ଟୟ ପଠାଯିବ ଅଣଓଡ଼ିଆମାନଙ୍କୁ ଏଇ ଧାରଣା ଦେବା ପାଇଁ ଯେ ଓଡ଼ିଶା ସରକାର ସଂକୀର୍ଣ୍ଣ ପ୍ରାଦେଶୀକତାରେ ବିଶ୍ୱାସ କରନ୍ତି ନାହିଁ । ଓଡ଼ିଶା ମୁଖ୍ୟମନ୍ତ୍ରୀ ନବବାବୁଂକ ସ୍ତ୍ରୀ ବଂଗୀୟ, ବିଜୁବାବୁଂଙ୍କ ମାଆ ବଙ୍ଗୀୟ ତଥା ସ୍ତ୍ରୀ ପଞ୍ଜାବୀ, ହରେକୃଷ୍ଣ ମହତାବ ବଙ୍ଗୀୟ ବର୍ତ୍ତମାନ ଗାଲ୍-ଫେମିଲିର ରାଜା ଉଦୟଚାନ୍ଦ୍ ମହତାବ୍‌ଂକ ଭାଇ ଏଇଆ ଅଣ ଓଡ଼ିଆମାନେ ପ୍ରଚାର କରୁଥିଲେ ଏବଂ ତା' ସହିତ ଦାବୀ କରୁଥିଲେ ଜୟଦେବ ଏବଂ ସୁଭାଷ ବୋଷଙ୍କୁ ମଧ୍ୟ । ଅନ୍ୟ ରାଜ୍ୟର ବାସିନ୍ଦାମାନଂକ ଆସୋସିଏସନ୍‌ର ମିଟିଂରେ ବେଶୀ ସମୃଦ୍ଧ ଯାଜସଜ୍ଜ ଏବଂ ପୂଜା ପାର୍ବଣରେ ବେଶୀ ଲୋକ ଓ ବାଣଫୁଟା ଦୃଷ୍ଟି ଆକର୍ଷଣ କରୁ ଥିଲା ।

ନରସିଂହ ରଥ ମହାଶୟ ପ୍ରମୋଶନ୍ ପାଇବା ପରେ ବରଂ ଓଡ଼ିଆମାନଙ୍କୁ ଏଡ଼େଇବାକୁ ଚେଷ୍ଟା କରୁଥିଲେ । ଓଡ଼ିଆମାନଂକ ଭିତରେ ମଧ୍ୟ ଏକତା ନ ଥିଲା । ରାଉରକେଲା ମଦ୍ୟ, ବ୍ୟଭିଚାରର ସହର ଥିଲା । ଯୋଉ ଓଡ଼ିଆମାନେ ବଂଶଗତ

ଉନ୍ନତ କରିବା ପାଇଁ ଚାହୁଁଥିଲେ ସେମାନଙ୍କୁ ଶକ୍ତିଶାଳୀ ଅଣଓଡ଼ିଆ ଏବଂ ଜର୍ମାନ୍‌ମାନଙ୍କୁ ଖୋସାମତ କରିବାକୁ ହେଉଥିଲା । କେନ୍ଦ୍ରରେ କେହି ଓଡ଼ିଆ ମନ୍ତ୍ରୀ ନଥିଲେ । ରାଜ୍ୟର ମନ୍ତ୍ରୀମାନଙ୍କୁ ଏଇ କେନ୍ଦ୍ର ସରକାରୀ ସଂସ୍ଥା ଖାତିର୍ କରୁ ନଥିଲେ । ଯେପରି ମିଲିଟାରୀରେ ଇଂରେଜ ସିପାହୀ ବିଦ୍ରୋହ ଅମଳରୁ ଅଛୁ ଡୋଗ୍ରା ବାହିନୀର କମାଣ୍ଡର ହେବ ଜଣେ ମୁସଲମାନ୍ ଶିଖ ରେଜିମେଣ୍ଟର କମାଣ୍ଡର ହେବ ଜଣେ ବଙ୍ଗାଳୀ; ସେଇ ସବୁ ଉଦାହରଣ ସ୍ୱରୂପ ଲିଖିତ ଭାବେ ନୋଟ ସିଟ୍‌ରେ ଦର୍ଶାଇ ଏଠାକାର ମ୍ୟାନେଜିଂ ଡାଇରେକ୍ଟର ଗଣପତ ମହାଶୟ 'ଅଧିକ ସଂଖ୍ୟକ ସିକ୍ୟୁରିଟି ଗାର୍ଡ ଥିବା କାରଖାନାର ଚୌକିଦାରୀ ବିଭାଗ' ପାଇଁ ଅଣଓଡ଼ିଆ ହାବିଲ୍‌ଦାର ଏପଏଣ୍ଟମେଣ୍ଟ କରିବା ପାଇଁ ଖବର କାଗଜରୁ ଏଡ୍‌ଭର୍ଟାଇଜ୍‌ମେଣ୍ଟ ମଧ୍ୟ ଦୁଃସାହସିକ ଭାବେ ଦେଇ ସାମ୍ବାଦିକ ଅସୁବିଧାରେ ପଡ଼ି ଗଲେ । ଏହା ସବୁ ସେ ସମୟର ହାସ୍ୟକର ଘଟଣା । ମୁଁ ମୋର ଆତ୍ମଜୀବନୀ ଲେଖିବା ଆରମ୍ଭ କରିଛି । ସମଗ୍ର ଭାରତୀୟ ଲୌହ-ଶିଳ୍ପରେ ମୁ (ବିନୟର ସହିତ କହୁଛି) ଏକମାତ୍ର ବ୍ୟକ୍ତି ଯିଏକି ବାଇଶଖଣ୍ଡ ବହି ଲେଖିଛି । ଯେଉଁଥିରେ ଅଠରଖଣ୍ଡ ଉପନ୍ୟାସ ଓ ଗ୍ରୁଖଣ୍ଡ ଭ୍ରମଣ-କାହାଣୀ । ମୋର ଆତ୍ମଜୀବନୀରେ ଏପରି କେତେକ କଥା ରାଉରକେଲା ସମ୍ବନ୍ଧରେ ଅଛି ଯାହା ମୁଁ ରାଉରକେଲା ଛାଡ଼ିବା ପରେ ଲୋକେ ଜାଣିବେ । ସେତେବେଳେ ପ୍ରତ୍ୟେକ ବିଭାଗରେ ସମକ୍ଷମତା ବିଶିଷ୍ଟ ଦୁଇଜଣ ବିଭାଗୀୟ ମୁଖ୍ୟ ଥିଲେ । ଜଣେ ତା' ଭିତରୁ ବିଦେଶୀ । ଅନ୍ୟ ଜଣେ ଭାରତୀୟ । ଏହି ଭାରତୀୟମାନଙ୍କ ଭିତରୁ ଅଧିକାଂଶ ଅଣ-ଓଡ଼ିଆ । ଓଡ଼ିଶାର କର୍ମଚାରୀମାନେ ନିଜର ଗ୍ରିଭାନସ୍ ନେଇ ଭାରତୀୟ ଅଣ-ଓଡ଼ିଆ ପରିବର୍ତ୍ତେ ବରଂ ସେହି ବିଦେଶୀ ମୁଖ୍ୟଙ୍କ ପାଖକୁ ଯାଇ ଅଧିକ ନ୍ୟାୟ ପାଉଛନ୍ତି ବୋଲି ଦାବୀ କରୁ ଥିଲେ । ସେଇ ଘଟଣାରୁ ଜଣା ପଡ଼େ ତିବ୍ର ପ୍ରାଦେଶିକତା । ଯେଉଁଥିରୁ ଉର୍ଦ୍ଧ୍ୱରେ ଥିଲେ ବିଦେଶୀମାନେ । ଅଣ-ଓଡ଼ିଆ ମୁଖ୍ୟମାନେ ଥଟ୍ଟା କରି କହୁଥିଲେ ' ତା' ହେଲେ ବରଂ ଇଂରେଜ୍‌ମାନଙ୍କୁ ଫେରାଇ ଆଣ ।'' ଓଡ଼ିଆ ମୁଖ୍ୟମାନଙ୍କର ସାମାଜିକ-ଜୀବନ ମଧ୍ଯ କ୍ଲବ୍‌ରେ ବା ଅନ୍ୟତ୍ର ମୁଖ୍ୟତଃ ଅଣଓଡ଼ିଆ ପରିବାର ବା ବିଦେଶୀମାନଙ୍କ ସହିତ ଘନିଷ୍ଠ ଥିଲା । ବିଦେଶୀମାନେ ଅର୍ଥ-ନୀତିରେ ସାଧୁ ଥିଲେ । କିନ୍ତୁ ଯୌନ ଜୀବନରେ ସେମାନେ ସାଧୁତାରେ ବିଶ୍ୱାସ କରୁ ନଥିଲେ । ସେମାନେ ଘରେ ରଖୁଥିବା କୃଷ୍ଣକାୟା ପରିଚାରିକାମାନଙ୍କର ଶ୍ୱେତାଙ୍ଗ ସନ୍ତାନ ସନ୍ତତି ସେଇ ବିଶ୍ୱାସର ପରିଣତି । ଅବଶ୍ୟ କେତେକ କୃଷ୍ଣକାୟା ମାନଙ୍କୁ ପତ୍ନୀତ୍ୱର ମର୍ଯ୍ୟାଦା ଦେଇ ସ୍ୱଦେଶକୁ ନେଇ ଯାଇ ଥିବାର ଉଦାହରଣ ଅଛି । ମେଳ ମସଲିଷ୍ଟମାନେ କହୁଥିଲେ ଆମ ଧର୍ମରେ ଅଛି, ''ଗୋ ଏଣ୍ଡ ମଲ୍‌ଟିପ୍ଲାଏ'' ବଟ୍ ନଟ୍ ମଲ୍‌ଟିପ୍ଲାଏ ଏଣ୍ଡ ଗୋ । ଅତଏବ୍ ଆମେ ସବୁ ଫେରିବୁ ସାଙ୍ଗରେ-ସନ୍ତାନ ନେଇ । ଆମେ ବର୍ଣ୍ଣ-ବୈଷମ୍ୟରେ ବିଶ୍ୱାସ କରୁ ନାହିଁ, 'କଳା'କୁ ପସନ୍ଦ କରୁ ଏଙ୍ଗ୍ଲୋଇଣ୍ଡିଆନ୍‌ଙ୍କୁ ଛାଡ଼ି । ଏଠାରେ ଥିବା ସଂସ୍ଥାମାନଙ୍କରେ ବହୁ ଏଙ୍ଗ୍ଲୋଇଣ୍ଡିଆନ୍ ନିଯୁକ୍ତ ଥିଲେ । ସେମାନେ ପଡ଼ି ଯାଉଥିଲେ ଜର୍ମାନମାନଙ୍କ

ପଛରେ । ଏଥି ପାଇଁ କେତେ ସଂଘର୍ଷ ହୋଇଥିବା ଘଟଣାର ମୁଁ ଜଣେ ଭୁକ୍ତଭୋଗୀ ସାକ୍ଷୀ ।

ତତ୍‌କାଳୀନ ରାଉରକେଲା ସମ୍ବନ୍ଧରେ ଲେଖିଲେ ଗୋଟିଏ ବହି ହେବ । ଜମିବାଡ଼ି ହରାଇଥିବା ଉଚ୍ଛେଦଙ୍କ ସହ ପୋଲିସର ସଂଘର୍ଷ ଏବଂ ସେ ବିଷୟର ସ୍ଥାନୀୟ ଚର୍ଚ୍ଚର ଭୂମିକାକୁ ମଧ୍ୟ ବିଶେଷ ଭାବେ ଲେଖିବାକୁ ହେବ । ଫାଦର ଜନ୍ ବ୍ୟାପାରକୁ ଲକ୍ଷିତ ମୋର ବହି 'ତୃଷ୍ଣାସ୍ନ ନନ୍ଦନ'ର ନାଟ୍ୟରୂପକୁ ନେଇ ସମସ୍ୟା ଇତ୍ୟାଦି ବହୁତ କିଛି ତତ୍‌କାଳୀନ ସ୍ଥାନୀୟ ସମସ୍ୟାରେ ପରିଣତ ହୋଇଥିଲା ।

ଯାହାହେଉ ଆଜିର ରାଉରକେଲା ସମୃଦ୍ଧ । ସମୃଦ୍ଧରେ ଓଡ଼ିଶାର ଶ୍ରେଷ୍ଠ ସହର ହୋଇଛି । ସରକାରୀ ପରିଗଣନ ଅନୁଯାୟୀ ଏହି ସହରର ମୁଣ୍ଡ ପିଛା ଆୟ ଓଡ଼ିଶା ଭିତରେ ସବୁ ଠାରୁ ବେଶୀ । ଅଟୋମୋବାଇଲ୍ ସଂଖ୍ୟା ସବୁଠାରୁ ବେଶୀ । ସେତେବେଳେ ଏହା ଥିଲା ମିସେସ-ଡେମିନେଟିଂ ସହର । ବର୍ତ୍ତମାନ ମିସ୍-ଡେମିନେଟିଂ ସହର । ସେତେବେଳେ କଲେଜ ନଥିଲା । ଗ୍ରନ୍ଥ ଶକ୍ତି ନଥିଲା । ରାଉରକେଲା ଏକ ନବୀନ ପାଠାଗାର-ମଣ୍ଡଳୀ ନ ଥିଲା । ବର୍ତ୍ତମାନ ଗ୍ରନ୍ଥ-ସଂଘ ଶ୍ରୀ କରିଛି । କେବାଶ୍ର ଶ୍ରୀ କରିଛି । ଏହା ଏକ 'ଦାବି'ର ସହର ହୋଇଛି । ନବୀନ ପାଠାଗାର-ମଣ୍ଡଳୀ ହୋଇଛି । ପ୍ରଗତିଶୀଳ ପୃଥିବୀ ଆଡ଼କୁ ଆଗେଇ ଚାଲିଛି । ଏଇଠି କଳା, ଏଇଠି ଅଭିନେତ୍ରୀ । ସଭା ପାଇଁ, ନାଟକ ପାଇଁ, ଆଉ ବାହାରୁ ଆଣିବାକୁ ପଡ଼େ ନାହିଁ । ବହି କିଣିବାର ଜନ୍ୟ ଶକ୍ତି ବଢ଼ିଛି । ଲାଇବ୍ରେରୀ ବଢ଼ିଛି । ନାଟକ ଅପେକ୍ଷା ନୈକସଂଖ୍ୟା ମଧ୍ୟ ପଚିଶ ହଜାର ବଢ଼ିଛି । ରାଉରକେଲାକୁ ନେଇ ଓଡ଼ିଶା ଆଜି ଗର୍ବ କରୁଛି । ବର୍ତ୍ତମାନ ଉନ୍ନତ ସହର । କଷ୍ଟକର ସହର ନୁହେଁ । ସମସ୍ତେ ବର୍ତ୍ତମାନ ଏଠାକୁ ଆସି ଚାକିରୀ କରିବାକୁ ଚାହାନ୍ତି ବ୍ୟବସାୟ କରିବାକୁ ଚାହାନ୍ତି । କିନ୍ତୁ ସେଥିପାଇଁ ଦୁରନ୍ତ ପ୍ରତି-ଯୋଗୀତା କରିବାକୁ ହେବ ଯାହା ଆମେମାନେ ଯେତେବେଳେ ଆସିଥିଲୁ କରିବାକୁ ହେଉ ନଥିଲା ।

ଅଲମତି ବିସ୍ତରେଣ ।



# ଶିଳ୍ପକେନ୍ଦ୍ରୀୟ ସଂସ୍କୃତିର ବିଭିନ୍ନ ପର୍ବ

* ବିଦ୍ୟାଧର ବାରିକ୍

ଶଙ୍ଖ-କୋଏଲ ନଦୀ ଦ୍ୱୟର ଯେଉଁଠି ସଙ୍ଗମ ଘଟିଛି ସେଇଠୁ ସୃଷ୍ଟି ହୋଇଛି ଆଉ ଏକ ନଦୀ – ବ୍ରାହ୍ମଣୀ, ଏଇ 'ତ୍ରିବେଣୀସଙ୍ଗମ' ସ୍ଥଳରେ ଅବସ୍ଥିତ ପୁଣ୍ୟପୀଠ— ବେଦବ୍ୟାସ । ସେଇ ପବିତ୍ରତାକୁ ମହନୀୟ କରି ଓଡ଼ିଶାର କେଉ ଜିଲ୍ଲା, ଭାରତର ପ୍ରତ୍ୟେକ ପ୍ରଦେଶର ମଣିଷ, ଭାଷା, ଧର୍ମ ଓ ସଂସ୍କୃତିର ମହାମିଳନର ସ୍ୱାକ୍ଷର ବହନକରି ତୀର୍ଥଭୂମି ରୂପେ ଗଢ଼ି ଉଠିଛି ଆଧୁନିକ ଶିଳ୍ପ ନଗରୀ— ରାଉରକେଲା ।

ରାଉର—ଆପଣଙ୍କର, କେଲ– ଘର ଅର୍ଥାତ ରାଉରକେଲ– ରାଉରକେଲା— ଆପଣଙ୍କର ଘର । ଏକଦା ବଣ, ପାହାଡ଼ ପରିପୂର୍ଣ୍ଣ, ହିଂସ୍ର ଜନ୍ତୁଙ୍କ ମୁକ୍ତ ବିଚରଣ ସ୍ଥଳ, ଅଗମ୍ୟ, ଅପରିଚିତ, ପରିତ୍ୟକ୍ତ ରାଉରକେଲା ଆଜି ଲକ୍ଷଲକ୍ଷ ମଣିଷଙ୍କର ଘର । ଏହାର ପ୍ରତ୍ୟେକ ଇଞ୍ଚ ମାଟି ପ୍ରତି ଆଜି ସମସ୍ତଙ୍କର ଅତୁଟ ଶ୍ରଦ୍ଧା, ମମତା ଓ ଆକର୍ଷଣ ପୂରି ରହିଛି ।

୧୯୫୧ ଜନଗଣନା ଅନୁସାରେ ସମଗ୍ର ସୁନ୍ଦରଗଡ଼ ଜିଲ୍ଲାର ଜନସଂଖ୍ୟା "ପାଞ୍ଚଲକ୍ଷ ବାଉନ ହଜାର ଦୁଇଶହ ତିନି" ଥିଲବେଳେ ୧୯୮୧ ଜନଗଣନାରେ କେବଳ ରାଉରକେଲାର ଜନସଂଖ୍ୟା ହୋଇଥିଲ 'ତିନିଲକ୍ଷ ବାଇଶ ହଜାର ଛଅ-ଶହ ଦଶ । ସଂପ୍ରତି ଏଇ ସଂଖ୍ୟା ଚାରିଲକ୍ଷକୁ ଟପି ଯାଇଛି । ଏହା ନିଃସନ୍ଦେହରେ କୁହା'ଯାଇପାରେ ।

୧୯୫୩ ମସିହାରେ ଜର୍ମାନ ଗଣତାନ୍ତ୍ରିକ ସରକାରଙ୍କ ସହିତ ଆମ ଭାରତ ସରକାରଙ୍କ ଚୁକ୍ତିନାମା ସ୍ୱାକ୍ଷରିତ ହେବାପରେ ୧୯୫୪ ମସିହାରେ ରାଉରକେଲା ଇସ୍ପାତ କାରଖାନା ପାଇଁ ସର୍ଭେ କାର୍ଯ୍ୟ ଆରମ୍ଭ ହୁଏ । ମୋଟ ବତିଶଟି ଗ୍ରାମ ଓ ଦୁଇହଜାର ତିନି ଶହ ପଞ୍ଚଷଠୀ ପରିବାରଙ୍କ ଉଚ୍ଛେଦ ଭିଟାମାଟି ଉପରେ ୧୯୫୫-୫୬ ମସିହା-ରେ ଗଢ଼ି ଉଠେ ଆଧୁନିକ ଶିଳ୍ପ—କୋଣାର୍କ—ରାଉରକେଲା । ଏହା ଫଳରେ କର୍ମ ନିଯୁକ୍ତି ପାଇଁ କେବଳ ସ୍ଥାନୀୟ ଅଧିବାସୀ ନୁହନ୍ତି ; ଭାରତ ବର୍ଷର ପ୍ରତ୍ୟେକ କୋଣ, ଅନୁକୋଣ ଓ ଭାରତ ବାହାରୁ ଜର୍ମାନ ଦେଶର ନାଗରିକମାନେ ଏଇଠି ଠୁଳ ହୁଅନ୍ତି । ନାନା ଜାତି, ଭାଷା, ଧର୍ମ ଓ ବର୍ଣ୍ଣର ଜନସାଧାରଣଙ୍କ ମିଳନରେ ରାଉର-

କେଳର ଅଭିବୃଦ୍ଧି ଘଟେ—ଗଢିଉଠେ ଏକ ନୂତନ ସମାଜ—ନୂତନ ସଂସ୍କୃତି । ରାଉରକେଲା ଶ୍ରେଷ୍ଠ ଏକ ଭାରତ ବର୍ଷର ନମୁନା, ହିନ୍ଦୁ, ମୁସଲମାନ, ବୌଦ୍ଧ, ଖ୍ରୀଷ୍ଟିଆନ, ଜୈନ ଓ ଶିଖ ସବୁ ସଂପ୍ରଦାୟର ଜନସାଧାରଣ ଏଠାରେ ବସତି ସ୍ଥାପନ କରିଛନ୍ତି । ଶ୍ରମିକ, ବ୍ୟବସାୟୀ, ଶିଳ୍ପପତି, ଶିକ୍ଷକ, ଓକିଲ, ଡାକ୍ତର, ଇଂଜିନିୟର, ପ୍ରଶାସକ, ପ୍ରଶାସନିକ କର୍ମଚାରୀ, ସାମ୍ବାଦିକ, କଳାକାର ଓ ସମାଜସେବୀ ମାନଙ୍କ ସମାବେଶରେ ରାଉରକେଲାର ମାଟି ଶତଶତ କର୍ମ ମୁଖର ହୋଇ ଉଠିଛି । ବିଭିନ୍ନ ଧର୍ମର ସ୍ମାରକୀ ସ୍ୱରୂପ ଗଢି ଉଠିଛି ମନ୍ଦିର, ମସଜିଦ, ଗୀର୍ଜା, ଗୁରୁଦ୍ୱାର, ଜୈନ ମନ୍ଦିର ଇତ୍ୟାଦି ଧର୍ମପୀଠ, ଭୌଗୋଳିକ ସୀମାରେଖା ଭିତରେ ରାଉରକେଲାର ଅବସ୍ଥିତି ସୁନ୍ଦରଗଡ଼ ଜିଲ୍ଲା ତଥା ଓଡ଼ିଶା ପ୍ରଦେଶରେ ; ଏହାର ସାମାଜିକ ସଂସ୍କୃତି କିନ୍ତୁ ସର୍ବଭାରତୀୟ । ଆଜିର ରାଉରକେଲା ଏକ ମିଶ୍ରିତ ସମାଜ । ବିଭିନ୍ନ ଭାଷାଭାଷୀଙ୍କ ମଧ୍ୟରେ ଭାବ ଆଦାନ ପ୍ରଦାନ ପାଇଁ ହେତୁ ଭାଷାର ପେଣ୍ଟାପେଣ୍ଟି ଏକ-ରାଉରକେଲିଆ ଭାଷା ସ୍ୱତଃ ସୃଷ୍ଟି ହୋଇ ଯାଇଛି ।

ମାନବ ହେଉଛି ସଭ୍ୟତା ଓ ସଂସ୍କୃତିର ବାହକ । ଯୁଗେଯୁଗେ ମାନବ ଯେଉଁଠିକୁ ଯାଇଛି ତା ସାଥିରେ ନେଇ ଯାଇଛି ନିଜର ଭାଷା, ସଂସ୍କୃତି, ଚାଲି, ଚଳଣି ଇତ୍ୟାଦି । ସାମାଜିକ ଓ ସାଂସ୍କୃତିକ ସଂଘର୍ଷ/ସମନ୍ୱୟରେ କେତେବେଳେ ଏହାର ଅଭିବୃଦ୍ଧି ଘଟିଛି, ପରିମାର୍ଜିନା ହୋଇଛି ଏବଂ ଏପରିକି ବିଲୟ ମଧ୍ୟ ହୋଇଛି ସତ; ମାତ୍ର ନିଜ ପରିବେଷ୍ଟନୀକୁ ସୁଦୃଢ଼ କରି ସ୍ୱଚ୍ଛନ୍ଦରେ ଜୀବନ ନିର୍ବାହ କରିବା ପାଇଁ ମଣିଷର ଚେଷ୍ଟା ସର୍ବଦା ଓ ସର୍ବଥା ରହି ଆସିଛି ।

ରାଉରକେଲା ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ପ୍ରାଣକେନ୍ଦ୍ର । ଆଧୁନିକ ସଭ୍ୟତାର ତୂର୍ଯ୍ୟନାଦ ଭିତରେ ବି ଏଇଠି ପାଳିତ ହେଉଛି "ବାରମାସରେ ତେର ପର୍ବ" । ସ୍ଥାନୀୟ ଅଧିବାସୀଙ୍କର କରମା, ସରହୁଲ, ବୃଷ ପୁନେଇ ସହିତ ଓଡ଼ିଶାର ପଶ୍ଚିମ, ଦକ୍ଷିଣ ଓ ପୂର୍ବାଞ୍ଚଳର ବିଭିନ୍ନ ପର୍ବପର୍ବାଣୀ ଯଥା – ରଜ, ରଥଯାତ୍ରା, ଖୁଦୁରୁକୁଣୀ, ଲକ୍ଷ୍ମୀପୂଜା (ଗୁରୁବାର), ମଙ୍ଗଳା, ସାବିତ୍ରୀବ୍ରତ, କୁମାର ପୂର୍ଣ୍ଣିମୀ (ବୋଇତ ବନ୍ଦାଣ), ପ୍ରଥମାଷ୍ଟମୀ, ବାସନ୍ତୀପୂଜା, ନୂଆଖାଇ, ମକର ଇତ୍ୟାଦି ପର୍ବ ଏଠାରେ ମହାଆଡ଼ମ୍ବର ସହକାରେ ପାଳିତ ହୋଇଥାଏ । ଏତଦ୍‌ବ୍ୟତୀତ ଦକ୍ଷିଣ ଭାରତର ପର୍ବ 'ଓନାମ' 'ପୋଙ୍ଗଲ' ସହିତ ସର୍ବଭାରତୀୟ ପର୍ବ ଜନ୍ମାଷ୍ଟମୀ ଦୀପାବଳୀ, ରକ୍ଷାବନ୍ଧନ, ଦଶହରା, ଶିବରାତ୍ରୀ, ହୋଲି (ଦୋଳପୂର୍ଣ୍ଣିମା), ଗଣେଶ ଚତୁର୍ଥୀ, ସରସ୍ୱତୀ ପୂଜା, ଭାଇ-ଦ୍ୱିତୀୟା (ବଙ୍ଗଳା) ଓ "ଛଟପର୍ବ" (ଉତ୍ତର ଭାରତ)ର ହିନ୍ଦୁ ଧର୍ମାବଲମ୍ବୀ ଲୋକମାନେ ପାଳନ କରୁଥିବା ବେଳେ ମୁସଲମାନ ସଂପ୍ରଦାୟର 'ଇଦ୍' 'ମହରମ' ଖ୍ରୀଷ୍ଟାନ ଧର୍ମାବଲମ୍ବୀଙ୍କର 'ଗୁଡ଼ଫ୍ରାଇଡେ', ଖ୍ରୀଷ୍ଟମାସ (ବଡଦିନ) ଓ

ଶିକ୍ଷମାନଙ୍କର 'ଗୁରୁପୂର୍ଣ୍ଣିମା' ତଥା ଜୈନମାନଙ୍କର 'ମହାବୀର ଜୟନ୍ତୀ' ମହାଆଡମ୍ବର ସହକାରେ ପାଳିତ ହୋଇଥାଏ । ବିଭିନ୍ନ ଶିଳ୍ପ ପ୍ରତିଷ୍ଠାନ ମାନଙ୍କରେ 'ବିଶ୍ୱକର୍ମା ପୂଜା'ର ମାହାତ୍ମ୍ୟ ଏଠାରେ ବିଶେଷଭାବେ ପରିଲକ୍ଷିତ ହୁଏ ।

ରାଉରକେଲାରେ ଜନସାଧାରଣ ପାରମ୍ପରିକ ଭାବେ ସେମାନଙ୍କର ସାମାଜିକ ପର୍ବ ପାଳନ କରୁଥିଲାବେଳେ ଆନୁଷ୍ଠାନିକଭାବେ ବିଭିନ୍ନ ସ୍ୱେଚ୍ଛାସେବୀ ଓ ସାଂସ୍କୃତିକ ଅନୁଷ୍ଠାନ ଗୁଡ଼ିକ ପକ୍ଷରୁ ମଧ୍ୟ ଏହି ଅବସରରେ ସାଂସ୍କୃତିକ କାର୍ଯ୍ୟକ୍ରମ, ନାଚ, ଗୀତ, ପାଲା, ଯାତ୍ରା ଇତ୍ୟାଦି ଅନୁଷ୍ଠିତ ହୋଇଥାଏ । ଏହି ଅନୁଷ୍ଠାନ ଗୁଡ଼ିକ ମଧ୍ୟରେ ଆନ୍ଧ୍ର ଆସୋସିଏସନ, ବେଙ୍ଗଲୀ ଆସୋସିଏସନ, ଦକ୍ଷିଣ ଭାରତ ସମାଜ, କେରଳ ସାଂସ୍କୃତିକ ସମିତି, ଗୁରୁସିଂହ ସଭା, କର୍ଣ୍ଣାଟକ ସଂଘ, ମହାରାଷ୍ଟ୍ର ମଣ୍ଡଳ, ବିଦ୍ୟାପତି ସମାଜ, ମାନସ ପରିଷଦ, ଗୁଜରାଟୀ ସମାଜ, ପଞ୍ଜାବୀ ମିଲବର୍ତ୍ତନ ସଭା, ରାଉରକେଲା ମାଲୟାଲମ ସମାଜ, ପ୍ରବାସୀ କ୍ଲବ, ହିନ୍ଦି ଲାଇବ୍ରେରୀ ଇତ୍ୟାଦି ପ୍ରଧାନ । ଓଡ଼ିଶାର ବିଭିନ୍ନ ପର୍ବପର୍ବାଣି ପାଳନ ସଙ୍ଗେ ସଙ୍ଗେ ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି ଓ ଜାତୀୟତାକୁ ଉଜ୍ଜୀବିତ କରୁଥିବା ଋଷି, ସାଧକ ଓ ବରେଣ୍ୟ ମହାପୁରୁଷଙ୍କ ଜୟନ୍ତୀ, ଶ୍ରାଦ୍ଧ ଦିବସ ପାଳନ ନିମନ୍ତେ ଏଠାରେ ଗଢ଼ିଉଠିଥିବା ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ ଗୁଡ଼ିକର ମହନୀୟ ଅବଦାନ ରହିଛି । 'ଆଦର୍ଶ ପାଠାଗାର'ର 'ଭଞ୍ଜ ଜୟନ୍ତୀ' ଓ 'ଗୋପବନ୍ଧୁଙ୍କ ଶ୍ରାଦ୍ଧ ଦିବସ' 'ଗୋପବନ୍ଧୁ ପ୍ରତିଭା ପରିଷଦ'ର 'ଗୋପବନ୍ଧୁ ଜୟନ୍ତୀ' 'ଇସ୍ପାତ ସାଂସ୍କୃତିକ ପରିଷଦ'ର "ରଜ" ଇସ୍ପାତ ସାହିତ୍ୟ ସଂସଦର 'ଫକୀର ମୋହନ ଜୟନ୍ତୀ' 'କୋଣାର୍କ ସାଂସ୍କୃତିକ ପରିଷଦ'ର 'ମେହେର ଜୟନ୍ତୀ' ଓ ବୋଇତ ବନ୍ଦାଣ 'ପ୍ରଗତି ଉତ୍କଳ ସଂଘ'ର "ଉତ୍କଳ ଦିବସ ଓ ମଧୁସୂଦନ ଜୟନ୍ତୀ" ଭେଟ-ଘାଟ ସଞ୍ଜାର 'ନଅଁଖିଆ' ସାରଳା ସାଂସ୍କୃତିକ ପରିଷଦର "ସାରଳା ଜୟନ୍ତୀ" ଇତ୍ୟାଦି ଏ କ୍ଷେତ୍ରରେ ପ୍ରଧାନ ଅଟେ । ଏତଦ୍‌ବ୍ୟତୀତ ଭଞ୍ଜକଳା କେନ୍ଦ୍ର, କଳାଚକ୍ର ଏକାଡେମୀର (ଲୋକ ନାଟକ ମହୋତ୍ସବ), କଳିଙ୍ଗ କଳା ପରିଷଦ, କବିଚନ୍ଦ୍ର କଳାକେନ୍ଦ୍ର ନଟରାଜ ନୃତ୍ୟ ପରିଷଦ, ଓଡ଼ିଆ ସାହିତ୍ୟ ପାଠଚକ୍ର, ରାଉରକେଲା କଳାଚକ୍ର ଆସୋସିଏସନ, "ମ୍ୟୁଜିକ ସର୍କଲ" ପ୍ରମୁଖ ଅନୁଷ୍ଠାନ ଓଡ଼ିଆ ସାହିତ୍ୟ, ସଙ୍ଗୀତ, ନୃତ୍ୟ କଳା ଓ ସଂସ୍କୃତି ପ୍ରସାର ଦିଗରେ ସତତ ପ୍ରଯତ୍ନଶୀଳ ଅଟନ୍ତି । ଏତଦ୍‌ବ୍ୟତୀତ ଆହୁରି ଶତାଧିକ ସାଂସ୍କୃତିକ ଓ ସାମାଜିକ ଅନୁଷ୍ଠାନ ପୂଜ୍ଞିକ ସ୍ୱସ୍ୱ ପରିଧି ଭିତରେ ବିଭିନ୍ନ ପର୍ବ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ପାଳନ କରନ୍ତି । ଏତଦ୍‌ବ୍ୟତୀତ ସ୍ଥାନୀୟ ଅଧିବାସୀ ମାନଙ୍କର ଖରିଆନାଚ, କର୍ଣାନନାଚ, ଝୁମୁରନାଚ ଓ ଛଉନାଚ ତଥା ବିଭିନ୍ନ ମଣ୍ଡପ ଓ ସେକ୍ଟର, କଲୋନୀ ମାନଙ୍କରେ ଅଷ୍ଟପ୍ରହରୀ, ସଂକୀର୍ତ୍ତନ, ମେଳା ଇତ୍ୟାଦି ଆଜି ଶିଳ୍ପସଂସ୍କୃତିରେ ବିଭିନ୍ନ ପର୍ବସହିତ ଅପୂର୍ବ ସମନ୍ୱୟ ପ୍ରତିଷ୍ଠା କରିଛି ।

ପ୍ରାଦେଶିକ ସରକାର ଓ ଇସ୍ପାତ କାରଖାନା କର୍ତ୍ତୃପକ୍ଷଙ୍କ ଦ୍ୱାରା ଅନୁଷ୍ଠିତ ସ୍ୱାଧୀନତା ଦିବସ, ଗଣତନ୍ତ୍ର ଦିବସ, ସେଲ ଦିବସ ଇତ୍ୟାଦି ପର୍ବ-ପର୍ବାଣୀର ସ୍ୱାକ୍ଷର ବହନ କରିଥାଏ । ଶିଳ୍ପ ସଂସ୍କୃତିରେ ଶ୍ରମିକ ଆନ୍ଦୋଳନର ଅବଦାନକୁ ଅସ୍ୱୀକାର କରାଯାଇ ନପାରେ । "ମଇ ଦିବସ" ଓ ବିଭିନ୍ନ ଶ୍ରମିକ ସଙ୍ଗଠନର ବାର୍ଷିକ ସମାବେଶ ତଥା ବରେଣ୍ୟ ନେତାମାନଙ୍କର ଜୟନ୍ତୀ ଓ ଶ୍ରାଦ୍ଧ ଦିବସ ମଧ୍ୟ ପର୍ବପର୍ବାଣୀରେ ରୂପାନ୍ତରିତ ହୋଇଯାଇଥାଏ । ମହାତ୍ମାଗାନ୍ଧୀ ଜୟନ୍ତୀ, ନେହେରୁ ଜୟନ୍ତୀ (ଶିଶୁଦିବସ), ରାଧାକୃଷ୍ଣଙ୍କ ଜୟନ୍ତୀ (ଗୁରୁ ଦିବସ) ବିପ୍ଳବୀ ବିର୍ସାମୁଣ୍ଡା, ବିପ୍ଳବୀ ନିର୍ମଳମୁଣ୍ଡା ଓ ଶ୍ରମିକନେତା ଧୂଳୀଶ୍ୱର ବର୍ତ୍ତିଅଙ୍କର ଜୟନ୍ତୀ ତଥା ଶ୍ରାଦ୍ଧ ଦିବସ ଆଜି ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ରାଉରକେଲାର ଅଧିବାସୀମାନେ ପୂର୍ଣ୍ଣ ପବିତ୍ରତା ପାଳନ କରନ୍ତି ।

ଆଗାମୀକାଲିର ଏକ ଉଜ୍ଜ୍ୱଳ ସମ୍ଭାବନାକୁ ନେଇ ରାଉରକେଲା ପ୍ରଗତି ପଥରେ ଆଗେଇ ଚାଲିଛି । ଶିଳ୍ପ ସଂସ୍କୃତିରେ ମଣିଷ ତାର ପୁରାତନ ରୁଚିକୁ ବଦଳାଇ ଆଉରି ଅଧିକ ଉପଭୋଗ୍ୟ କରିବାକୁ ଚାହୁଁଛି । ସମୟକ୍ରମେ ଅଭାବ ମଧ୍ୟ ବଢ଼ି ଚାଲିଛି । ସବୁଠାରୁ ସମାଜରେ ବଡ଼ ଅଭାବ ସୃଷ୍ଟି ହୋଇଛି ନୈତିକତା-ମାନବ ମୂଲ୍ୟ ବୋଧର । ସମଗ୍ର ରାଉରକେଲା ସମାଜର ମଣିଷ ମଣିଷ ଭିତରେ ସଂପର୍କ ଆଜି ଆର୍ଥିକ 'ନିକିତି'ରେ ତଉଲା ଯାଉଛି । ଏହା ସତ୍ତ୍ୱେ ବିବାହ, ଭୋଜ୍ୟ, ବ୍ରତ ଓ ଅନ୍ୟାନ୍ୟ ସାମାଜିକ କାର୍ଯ୍ୟକ୍ରମରେ ଜାତି, ଧର୍ମ, ବର୍ଣ୍ଣନିର୍ବିଶେଷରେ ସମସ୍ତ ଏକତ୍ରିତ ହୋଇ ପଂକ୍ତି ଭୋଜନ କରିବା ରାଉରକେଲା ସଂସ୍କୃତିର ଏକ ବିଶେଷତ୍ୱ । ଲକ୍ଷେ ପଦ୍ମ ପାଖୁଡ଼ାର ହସନେଇ 'ରାଉରକେଲା' ହସିହସି ଲେଉଟିପଡ଼ୁଥିବାବେଳେ ତାହାର ସୌନ୍ଦର୍ଯ୍ୟକୁ ଉଦାସୀ ଆଖିରେ ଚାହିଁ ରହୁଥିବା ଚତୁର୍ଦ୍ଦିଗର ପଲ୍ଲୀସମୂହ ଆଧୁନିକ ଶିଳ୍ପ ସଭ୍ୟତାର ଏକ ନିଷ୍ଠୁର ବ୍ୟତିକ୍ରମ ।

କ୍ୱାର୍ଟର ନଂ - ଏଫ୍/୧୭, ସେକ୍ଟର-୧
ରାଉରକେଲା-୬



# -- ରାଉରକେଲାର ସାମାଜିକ ଜୀବନ --

* ଶ୍ରୀ ଅଭିରାମ ସାହୁ

ଲୋକମୁଖରେ ରାଉରକେଲା ସମ୍ବନ୍ଧରେ କୁହାଯାଏ 'କାଲିଥିଲା ଗ୍ରାମ ଆଜି ତ ସହର'। ଆଜିର ରାଉରକେଲା ଦୁଇଟି ସହରାଞ୍ଚଳକୁ ବୁଝାଉଛୁ,—ପୁରୁଣା ରାଉରକେଲା ବା ସିଭିଲ ଟାଉନ୍‌ସିପ୍‌କୁ ନେଇ ଗଠିତ 'ରାଉରକେଲା ମ୍ୟୁନିସିପାଲିଟି' ଓ ଇସ୍ପାତ ସହରାଞ୍ଚଳକୁ ନେଇ ଗଠିତ ରାଉରକେଲା ଇସ୍ପାତ ସହରାଞ୍ଚଳ ବିଜ୍ଞାପିତ ଅଞ୍ଚଳ ପରିଷଦ। ସନ ୧୯୫୪ ମସିହାରେ ରାଉରକେଲା କହିଲେ ପୁରୁଣା ରାଉରକେଲା ଷ୍ଟେସନକୁ ବୁଝାଉଥିଲା ଏବଂ ତାହାର ନିକଟବର୍ତ୍ତୀ ରେଲ ଷ୍ଟେସନ 'ପାନପୋଷ' ରେଲ କମ୍ପାନୀ ମ୍ୟାପରେ ଜଣାଶୁଣା ଥିଲା। ଏହି ପାନପୋଷ ଠାରେ ଟାଟା ଆଇରନ ଆଣ୍ଡ ଷ୍ଟିଲ କମ୍ପାନୀ ପକ୍ଷରୁ ଏକ କ୍ୱାରି ବା ଖାଦାନ ଥିଲା ଏବଂ ଟାଟା କମ୍ପାନୀ ପାନପୋଷ ନିକଟରେ ଏକ ଉଡ଼ାଜାହାଜ ପଡ଼ିଆ ତିଆରି କରିଥିଲେ। ପାନପୋଷଠାରେ ଓଡ଼ିଶା ସରକାରଙ୍କ ତରଫରୁ ଏକ ଡାକ୍ତରଖାନା ରଘୁନାଥପାଲି ପୋଲିସ୍‌ଷ୍ଟେସନ ଓ ରେଲ୍ଓ୍ୱେ କାରି ସରକାରୀ କର୍ମଚାରୀଙ୍କ ପାଇଁ 'ବ୍ରାହ୍ମଣୀ କ୍ଲବ' ଥିଲା। ବ୍ରାହ୍ମଣୀ ନଦୀ ତଟରେ ପାନପୋଷର ବିପରୀତ କୂଳରେ ପୁରାଣ ପ୍ରସିଦ୍ଧ ବେଦବ୍ୟାସ ମନ୍ଦିର ଅବସ୍ଥିତ। ଏଠାକାର ପ୍ରସିଦ୍ଧ ଜାଗରମେଳା ଓଡ଼ିଶା ତଥା ଓଡ଼ିଶା ବାହାରେ ଖ୍ୟାତି ଅର୍ଜନ କରିଥିଲା ଏହି ମେଳାଯୋଗୁ ବାହାର ଜଗତ ପାନପୋଷ ବା ବେଦବ୍ୟାସକୁ ଜାଣିଥିଲେ ଏବଂ ରାଉରକେଲା କହିଲେ ପ୍ରଥମାବସ୍ଥାରେ ପାନପୋଷ ବୋଲି ବୁଝୁଥିଲେ। ଗମନାଗମନ ପାଇଁ ଦକ୍ଷିଣପୂର୍ବ ରେଲପଥର ବମ୍ବେ—ହାଓଡ଼ାକୁ ସଂଯୁକ୍ତ କରୁଥିବା ରେଲ ଲାଇନ ବ୍ୟତୀତ ରାଉରକେଲାକୁ ସଡ଼କପଥ ଇତ୍ୟାଦି ନଥିଲା। ମୋଟାମୋଟି ଭାବରେ ରାଉରକେଲା ସାଧାରଣ ଜଗତରୁ ବିଚ୍ଛିନ୍ନ ଥିଲାବୋଲି କହିଲେ ଅତ୍ୟୁକ୍ତି ହେବନାହିଁ। ବ୍ରାହ୍ମଣୀ ଓ କୋଏଲ ନଦୀର ମଧ୍ୟ ସ୍ଥଳରେ ଏକ ବିସ୍ତୀର୍ଣ୍ଣ ଘଞ୍ଚ ଅରଣ୍ୟ ପଡ଼ି ରହିଥିଲା, ମଧ୍ୟଭାଗରେ ନଦୀ ଦୁଇଟିକୁ ସମାନ୍ତର କରି ବ୍ୟାପିଥିଲା ଦୁର୍ଗାପୁର ପର୍ବତ ଶ୍ରେଣୀ, ଅଧିବାସୀ ଥିଲେ ପ୍ରଧାନତଃ ଆଦିବାସୀ ସଂପ୍ରଦାୟର କେତେକ ଓ କେତେକ ହିନ୍ଦୁ ପରିବାର, ମୁସଲମାନ ବ୍ୟବସାୟୀ ଖ୍ରୀଷ୍ଟିଆନ ସଂପ୍ରଦାୟର କେତେକ ଲୋକ।

୧୯୫୪ରେ ଓଡ଼ିଶା ସରକାରଙ୍କ ପକ୍ଷରୁ ଷ୍ଟିଲପ୍ଲାଣ୍ଟକୁ ଜମି ଯୋଗାଇ ଦେବା ପାଇଁ ଯେଉଁ ସାଇଟ ପ୍ଲାନର ଇଂଜିନିୟରିଂ ସର୍ଭେ ହୋଇଥିଲା ତାହାର ଦାୟିତ୍ୱରେ ଥିଲେ ତତ୍‌କାଳୀନ ଯୁବ ସେକ୍‌ସନ ଅଫିସର ବଣାଇଗଡ଼ ନିବାସୀ ଶ୍ରୀ ନିତ୍ୟାନନ୍ଦ

ସୂତାର ଓ ଶିକ୍ଷାନବିଶ ଓଭରସିଅର କଟକ ଜିଲ୍ଲାର ଶ୍ରୀ ନିତ୍ୟାନନ୍ଦ ମହାନ୍ତି । ସୂତାର ବାବୁ ବଣାଇ ଅଞ୍ଚଳର ହୋଇଥିବାରୁ ମୁକ୍ତ ପରିବେଶ ସହିତ ପରିଚିତ ଥିଲେ, ନିତ୍ୟାନନ୍ଦ ମହାନ୍ତି ବାବୁ କିନ୍ତୁ କାଳିନ୍ଦି ରାଉରକେଲାର ପ୍ରାକୃତିକ ନଗ୍ନ ପରିବେଶରେ ବାଘ, ଭାଲୁ ପ୍ରଭୃତି ଦେଖି ସେତିକି ବିସ୍ମିତ ହୋଇ ନଥିଲେ, ବିବସ୍ତ୍ରା, ଅର୍ଦ୍ଧାବୃତା-ଦେହା ଆଦିବାସୀ ଲଳନାମାନେ ସ୍ୱଚ୍ଛନ୍ଦରେ ଜନାକୀର୍ଣ୍ଣ ହାଟବାଟରେ ବିଚରଣ କରୁଥିବାର ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ । ବର୍ତ୍ତମାନର ରିଙ୍ଗ୍ ରୋଡ଼ ଭଳି ଦୀର୍ଘ ରାଜ-ପଥର ଚିହ୍ନବର୍ଣ୍ଣ ନଥିଲା । ଚତୁର୍ଦ୍ଦିଗରେ ଥିଲା ଜଙ୍ଗଲ ଆଉ ଜଙ୍ଗଲ । ବଣ ହନୁମାନଙ୍କ ପଲ୍ ଲଟା ଗଛକୁ ଧରି ପାନପୋଷ ଠାରୁ ହିରପାଣି ପର୍ଯ୍ୟନ୍ତ ଗୁଲିଗୁଲି ଯାଇ ସର୍ଭେ କରିବାକୁ ପଡୁଥିଲା, ମଧ୍ୟେମଧ୍ୟେ ସୁସ୍ୱରରେ ଗୀତଗାଇ ଆଦିବାସୀ ଲଳନାମାନେ ଉଲଗ୍ନ ଅବସ୍ଥାରେ ମହୁଲ ବୃକ୍ଷରେ ଚଢି ମହୁଲ ଫୁଲ ସଂଗ୍ରହ କରୁଥିବା ଏକ ସାଧାରଣ ଦୃଶ୍ୟ ଥିଲା । ଅବଶ୍ୟ ଅନ୍ୟ ସଂପ୍ରଦାୟର ସ୍ଥାନୀୟ ଅଧିବାସୀମାନେ ଲୁଗାପଟା ବ୍ୟବହାର କରୁଥିଲେ । କୋଏଲ ନଦୀ କୂଳର ହମୀରପୁରଠାରେ ବିଦେଶୀ ଖ୍ରୀଷ୍ଟାନ୍ ମିଶନ ପକ୍ଷରୁ ସ୍କୁଲ ଓ ଗୀର୍ଜା ନିର୍ମାଣ କରିହୋଇ ଆଦିବାସୀ ମାନଙ୍କ ମଧ୍ୟରେ ଶିକ୍ଷା ପ୍ରସାରର ପ୍ରଚେଷ୍ଟା ହୋଇଥିଲା ।

୧୯୫୫ ବେଳକୁ ହିନ୍ଦୁସ୍ଥାନ ଷ୍ଟିଲ ଲିମିଟେଡର ରାଉରକେଲା ଶାଖାର କାର୍ଯ୍ୟାଳୟ ଦିଲ୍ଲୀରୁ କଳ୍ପଦନ ପାଇଁ କଲିକତା ନଗରୀକୁ ଉଠିଆସି ପରେ ରାଉରକେଲା-କୁ ସ୍ଥାନାନ୍ତରିତ ହେଲା । ଏହି କଲିକତା କାର୍ଯ୍ୟାଳୟରେ ମାତ୍ର ଅକ୍ଷିଦୂଶିଆ ଦୁଇଜଣ ଓଡ଼ିଆ କର୍ମଚାରୀ ଦିଲ୍ଲୀରୁ ନିଯୁକ୍ତ ହୋଇ ଆସିଥିଲେ ଜଣେ ଯୁବ ଇଂଜିନିୟର ଶ୍ରୀ ରାସବିହାରୀ ପଟ୍ଟନାୟକ—ପରଚେଜ ଅଫିସର ଓ ଶ୍ରୀ ଉମାଚରଣ ମହାନ୍ତି—କ୍ୟାସିୟର । ଅନ୍ୟସବୁ ଅଫିସର ଓ କର୍ମଚାରୀ ଅଣଓଡ଼ିଆ । ଦିଲ୍ଲୀର ଆଇରନ୍ ଏଣ୍ଡ ଷ୍ଟିଲ ବିଭାଗରୁ ଅଧିକାଂଶ ପଞ୍ଜାବୀ ଓ ବଙ୍ଗୀୟ ଅଫିସର ଓ ରେଳ ବିଭାଗରୁ ନିର୍ମାଣ କାର୍ଯ୍ୟପାଇଁ ଡେପୁଟେସନରେ ବହୁ ଦକ୍ଷିଣ ଭାରତୀୟ ଅଫିସର ଥାଆନ୍ତି । ଓଡ଼ିଶାରୁ ନାମକୁ ମାତ୍ର ଜଣେ ଅଧେ ଇଂଜିନିୟର ସରକାରଙ୍କ ତରଫରୁ ଡେପୁଟେସନରେ ଆସିଥାଆନ୍ତି । ୧୯୫୫ରୁ ୧୯୬୦ ଥିଲା ଷ୍ଟିଲ ପ୍ଲାଣ୍ଟର ପ୍ରୋଜେକ୍ଟ ପିରିୟଡ, ଏହି ସମୟରେ ପୁରୁଣା ପ୍ରାକୃତିକ ପରିବେଶକୁ ଭାଙ୍ଗି ନୂତନ ପରିବେଶ ଗଢିବା ପାଇଁ ଯନ୍ତ୍ର ଦାନବ ମାନଙ୍କର ଆବଶ୍ୟକ ହୋଇଥିଲା ସେହିପରି ପୁରୁଣା ରାଉରକେଲାରେ ନିଜର ଆସନ ସୁଦୃଢ଼ କରିବା ପାଇଁ ନବାଗତ ବିଭିନ୍ନ ଗୋଷ୍ଠୀମାନଙ୍କ ମଧ୍ୟରେ ପ୍ରବଳ ପ୍ରତିଦ୍ୱନ୍ଦ୍ୱିତା ଲାଗି ଦଙ୍ଗା ହାଙ୍ଗାମାମାନ ନିତି ଦିନିଆ ଘଟଣା ହୋଇ ପଡ଼ିଥିଲା । ନୂଆ ନୂଆ ଶ୍ରମିକ ବସ୍ତିମାନଙ୍କରେ ପରସ୍ପର ମଧ୍ୟରେ ବିଦ୍ୱେଷ ଯୋଗୁଁ ଅସାମାଜିକ ଲୋକମାନଙ୍କର ସମ୍ମୁଖୀନ ହେବା ସହଜସାଧ୍ୟ ହେଉ ନଥିଲା । ତେଣୁ ପୁରାତନ ସହର ବା ଗ୍ରାମର ସୁରକ୍ଷିତ ସମାଜରୁ ଆସିଥିବା ବ୍ୟକ୍ତି ମୁକ୍ତ ରାଉରକେଲାରେ ନିଜକୁ ନିଃସଙ୍ଗ

ଓ ନିଃସହାୟ ମନେ କରୁଥାଏ । ଏଣୁ ତାର ଇଚ୍ଛା ବିରୁଦ୍ଧରେ ସେ ଭିନ୍ନ ଭିନ୍ନ ପ୍ରତିଦ୍ୱନ୍ଦ୍ୱୀ ଗୋଷ୍ଠୀମାନଙ୍କ ସହିତ ହାତ ମିଳାଇ ଚଳିବାକୁ ବାଧ୍ୟ ହେଉଥାଏ ।

ପ୍ରାଥମିକ ଅବସ୍ଥାରେ ସରକାର ଷ୍ଟିଲ ପ୍ଲାଣ୍ଟ ପାଇଁ ଜମି ଦଖଲ ନିମନ୍ତେ ସ୍ଥାନୀୟ ଲୋକମାନଙ୍କୁ ଅର୍ଥ ପ୍ରଦାନ କରିଥିଲେ ମଧ୍ୟ ଜମି ଦଖଲ କରି ଷ୍ଟିଲ ପ୍ଲାଣ୍ଟକୁ ହସ୍ତାନ୍ତର କରିବା ପାଇଁ ସ୍ଥାନୀୟ ଅଧିବାସୀମାନେ ପୋଲିସ୍ ସହିତ ବେଳେବେଳେ ସଂଘର୍ଷ କରୁଥିବାରୁ ବହିରାଗତ ଲୋକମାନଙ୍କଠାରୁ ପୋଲିସ ନୈତିକ ସମର୍ଥନ ନେଉଥାଏ । ଏଣୁ ବହିରାଗତ ଅସାମାଜିକ ଲୋକମାନେ ପରୋକ୍ଷରେ ପୋଲିସ୍‌ର ସମର୍ଥନ ନିଜ ପଛରେ ଅଛି ବୋଲି ଭାବି ବେଳେ ବେଳେ ନିରୀହ ଅଧିବାସୀ ତଥା ଶାନ୍ତିପ୍ରିୟ ସର୍ବସାଧାରଣଙ୍କ ଉପରେ ଅତ୍ୟାଚାର କରିବାକୁ ପଛାଉ ନଥାନ୍ତି । ବିଶେଷତଃ ପୁରୁଣା ରାଉରକେଲାର ଏ ପ୍ରକାର ଅସାମାଜିକ ଲୋକଙ୍କ ଦାଉରେ ରାଉରକେଲାର ତତ୍କାଳୀନ ଅଧିବାସୀମାନେ ଭୟରେ ଦିନ କଟାଉଥାନ୍ତି ।

ରାଉରକେଲାର ପ୍ରଶାସନିକ ଗୋଷ୍ଠୀ ଏକ ଭିନ୍ନ ସମାଜରେ ବାସ କରୁଥାନ୍ତି । ପୁରୁଣା ରାଉରକେଲାର 'ବ୍ରାହ୍ମଣୀ କ୍ଲବ' ଓ କର୍ମଶାଳାଧୀନ ରାଉରକେଲାର 'ଜର୍ମାନୀ କ୍ଲବ' ସଭ୍ୟତା ସେମାନଙ୍କ ସାମାଜିକ ମନୋରଞ୍ଜନ ତଥା ପଦ ପଦବୀର ଉନ୍ନତର ସରଣୀ ବୋଲି ମନେ ହେଉଥିଲା । ଏଣୁ ଦପ୍ତରରେ ସେମାନେ କର୍ମୀମାନଙ୍କର ଭୟର କାରଣ ହୋଇ ଥିଲେ ହେଁ, ଶ୍ରଦ୍ଧାର ପାତ୍ର ନ ହୋଇ ଏକ ପ୍ରକାର ଈର୍ଷା ଓ ଘୃଣାର ପାତ୍ର ହୋଇଥିଲେ । ଏଣୁ ବେଳେ ବେଳେ କେତେକ ଦକ୍ଷ ପ୍ରଶାସକ ଅସାମାଜିକ ଲୋକଙ୍କ ଦ୍ୱାରା ଉତ୍ପୀଡ଼ିତ ହେଲାବେଳେ ସାଧାରଣ ଲୋକ ସେମାନଙ୍କ ପାଇଁ ସହାନୁଭୂତି ଦେଖାଉଥିଲେ ।

ଷ୍ଟିଲ ପ୍ଲାଣ୍ଟର ପ୍ରଥମ ପର୍ଯ୍ୟାୟ ନିର୍ମାଣ ପରେ ୧୯୬୦ ବେଳକୁ ଉତ୍ପାଦନ ଉପରେ କମ୍ପାନୀ କର୍ତ୍ତୃପକ୍ଷଙ୍କ ଦୃଷ୍ଟି ନିବଦ୍ଧ ହେଲା । ପରିଚାଳକ ଓ ଶ୍ରମିକମାନଙ୍କ ମଧ୍ୟରେ ସହଯୋଗର ବାତାବରଣ ସୃଷ୍ଟି କରିବା ଆବଶ୍ୟକ ହେଲା । ନିର୍ମାଣ ସମୟରେ ଭିନ୍ନ ଭିନ୍ନ କଣ୍ଟ୍ରାକ୍ଟରମାନଙ୍କ ଅଧୀନରେ କାମ କରୁଥିବାରୁ ଶ୍ରମିକମାନଙ୍କ ମଧ୍ୟରେ ସାଂଗଠନିକ ଦୁର୍ବଳତା ଥିଲା, ଏବେ କମ୍ପାନୀରେ ବହୁଳାଂଶ ଶ୍ରମିକ ସ୍ଥାୟୀ ଭାବରେ ନିଯୁକ୍ତ ହେବାରୁ ସେମାନଙ୍କ ମନରେ ଆଶା ଓ ଦମ୍ଭ ଜାଗରିତ ହେଲା । ସମସ୍ତେ ଏକ ସ୍ଥାନରେ କାର୍ଯ୍ୟ କରୁଥିବାରୁ ଭାଷା, ଧର୍ମ, ଜାତି, ଉପଜାତି ନେଇ ନାମକୁ ମାତ୍ର ପ୍ରଭେଦ ଥିଲେ ହେଁ, କ୍ରମେ କ୍ରମେ ସମସ୍ତଙ୍କ ମନରେ ଏକ ଭ୍ରାତୃଭାବ ଜାଗିଉଠିଲା । କମ୍ପାନୀ ପକ୍ଷରୁ ମଧ୍ୟ କାରଖାନାରେ ଶ୍ରମିକମାନଙ୍କ ପାଇଁ କାଣ୍ଟିନ୍ ନିର୍ମାଣ କରି ଏକତ୍ର ପାନାହାର ବ୍ୟବସ୍ଥା କରିବାରୁ ଶ୍ରମିକମାନଙ୍କର ମଧ୍ୟ ଆତ୍ମୀୟତା ବୃଦ୍ଧି ପାଇଲା । ଶ୍ରମିକମାନଙ୍କ ବାସବାସ ପାଇଁ ସ୍ଥାୟୀ ଗୃହମାନ ସେକ୍ଟରରେ ନିର୍ମାଣ କରାଯାଇ

ସେମାନଙ୍କ ବାସଗୃହମାନ ଯୋଗାଇ ଦିଆଯିବାରୁ ସମସ୍ତେ ପରିବାର ସହିତ ବସବାସ କରିବାକୁ ଆରମ୍ଭ କଲେ । ତେବେ ଗୃହ ଗୁଡ଼ିକ ଚାକିରିର ବରିଷ୍ଠତା ଦୃଷ୍ଟିରୁ ଦିଆଯାଉଥିବାରୁ ଗାଁ ବା ପୁରୁଣା ସହରପରି ନିଜର ପଡ଼ୋଶୀ ସଂପୂର୍ଣ୍ଣ ଅପରିଚିତ ହୋଇଥିଲେ । ଜଣେ ଓଡ଼ିଆ ଲୋକର ପଡୋଶୀ ହୁଏତ କେରଳୀ, ହିନ୍ଦୁ ର ମୁସଲମାନ, ମୁସଲମାନର ଖ୍ରୀଷ୍ଟିଆନ ଇତ୍ୟାଦି । ଏଣୁ ଭାଷା, ଜାତି, ଧର୍ମ ନିର୍ବିଶେଷରେ ଏକ ଷ୍ଟିଲ୍ ପ୍ଲାଣ୍ଟର କର୍ମୀ ଭାବରେ ଯେଉଁ ଏକତ୍ୱବୋଧ ଥିଲା ସେହି ଅନୁଯାୟୀ ଏକ ଶାଶ୍ୱତ ମାନବୀୟ ମୂଲ୍ୟବୋଧରୁ ଅଜଣା ଅଶୁଣା ଲୋକ ମଧ୍ୟ ନିଜର ପଡୋଶୀ ହୋଇ ନିଜର ଭାଇଙ୍କଠାରୁ ବଳି ବିଶ୍ୱସ୍ତ ହୋଇଥିଲେ । ଜଣେ ଶ୍ରମିକ ସିଫ୍ଟ ଡ୍ୟୁଟିରେ ଯିବା ସମୟରେ ତାର ପ୍ରତିବେଶୀ, ନିଜର ଭାଷା, ଧର୍ମ, ଜାତିର ପାର୍ଥକ୍ୟ ସତ୍ତ୍ୱେ ସେ ଶ୍ରମିକ ପରିବାରର ସମସ୍ତ ଦାୟିତ୍ୱର ଭାର ନେଉଥିଲେ ଏବଂ ବର୍ତ୍ତମାନ ମଧ୍ୟ ରାଉରକେଲାରେ ଏ ଚଳଣୀ ଦିନକୁ ଦିନ ସୁଦୃଢ଼ ହେବାରେ ଲାଗିଛି । ସନ ୧୯୬୪ ମସିହାରେ ଯଦିଓ ହିନ୍ଦୁ ମୁସଲମାନ ଦଙ୍ଗା ଘଟିଥିଲା ତଥାପି ରାଉରକେଲାରେ ବହୁ ମୁସଲମାନ ପରିବାରଙ୍କୁ ହିନ୍ଦୁ ପରିବାର ଲୁଚାଇ ରଖିଥିଲେ ଏବଂ ଷ୍ଟିଲ ପ୍ଲାଣ୍ଟ କର୍ମଚାରୀମାନଙ୍କ ମଧ୍ୟରେ ଏବେ ବି ପ୍ଲାଣ୍ଟ ମଧ୍ୟରେ ଓ ବାହାରେ ହିନ୍ଦୁ ମୁସଲମାନ ଓ ଶିଖ ଭାଇ ଭାଇଙ୍କ ମଧ୍ୟରେ ବିବାହ, ଧର୍ମାନୁଷ୍ଠାନ ମାନଙ୍କରେ ପରସ୍ପର ସହଯୋଗ ଅବ୍ୟାହତ ରହିଛି ।

ଓଡ଼ିଶା ତଥା ଭାରତର ଅନ୍ୟାନ୍ୟ ସହରମାନଙ୍କ ମଧ୍ୟରେ ରାଉରକେଲା ନଗରୀର ଏକ ବିଶେଷତ୍ୱ ରହିଛି । ଏକଦା ରାଉରକେଲା ଷ୍ଟିଲପ୍ଲାଣ୍ଟର ଟେକ୍‌ନିକାଲ ଇନଷ୍ଟିଚ୍ୟୁଟ ପ୍ରସ୍ତାବ କଲେ ଯେ ରାଉରକେଲାର କର୍ମଚାରୀମାନଙ୍କୁ ସରକାରୀ ଦପ୍ତରରେ କିପରି, ବ୍ୟାଙ୍କମାନଙ୍କରେ କିପରି କାମ ହେଉଛି ବୁଝାଇ ଶିକ୍ଷାଦେବା । ରାଉରକେଲା ପ୍ରଶାସନିକ କର୍ତ୍ତୃପକ୍ଷ ଏ ପ୍ରସ୍ତାବରେ ରାଜିହେଲେ ନାହିଁ । ତାଙ୍କର ଯୁକ୍ତି ହେଲା ରାଉରକେଲାର କର୍ମଚାରୀମାନେ ଏକ ନିର୍ଦ୍ଦିଷ୍ଟ ପଦ୍ଧତିରେ କାମ କରୁଛନ୍ତି ଯାହାକି ଅନ୍ୟାନ୍ୟ ସରକାରୀ ବିଭାଗର ଅନୁରୂପ ହୋଇ ମଧ୍ୟ ସେମାନଙ୍କଠାରୁ ସ୍ୱତନ୍ତ୍ର କିନ୍ତୁ ଦକ୍ଷତା ଦୃଷ୍ଟିରୁ ଷ୍ଟିଲପ୍ଲାଣ୍ଟ ପାଇଁ ଯଥେଷ୍ଟ । ସେହିପରି ରାଉରକେଲାର ଏହି ମାନବିକ ମୂଲ୍ୟବୋଧର ସତ୍ୟତା ଏଠାରେ ହିନ୍ଦୁମାନଙ୍କ ପାଇଁ ଯେତିକି ବହୁ ସଂଖ୍ୟାରେ ମନ୍ଦିର, ମୁସଲମାନଙ୍କ ପାଇଁ ମସଜିଦ, ଖ୍ରୀଷ୍ଟିଆନଙ୍କ ପାଇଁ ଗୀର୍ଜା, ସାହିତ୍ୟିକମାନଙ୍କ ପାଇଁ ଭିନ୍ନ ଭିନ୍ନ ଭାଷାର ନାଟକ, ସଙ୍ଗୀତ, ସାହିତ୍ୟ ଆଲୋଚନା, କ୍ରୀଡ଼ାବିତଙ୍କ ପାଇଁ କ୍ରୀଡ଼ା, ସର୍ବୋପରି ବିବାହ, ମୃତ ଓ ଦୁର୍ଘଟଣା ସମୟରେ ଅଯାଚିତ ଅକୁଣ୍ଠ ସାହାଯ୍ୟ । ଦେଶ ବିଦେଶରେ ହେଉଥିବା ବନ୍ୟା, ବାତ୍ୟା, ଭୂମିକମ୍ପ ପାଇଁ ମୁକ୍ତ ହସ୍ତରେ ସାହାଯ୍ୟ । ରାଉରକେଲାର ଏହି ମାନବିକ ସହଯୋଗ ଓ ଭ୍ରାତୃଭାବ ଆଜି ଓଡ଼ିଶା ତଥା ଭାରତର ପଲ୍ଲୀରେ ଅନୁକରଣୀୟ । ଯତ୍ର ବିଶ୍ୱ ଭବେତ ଏକ ନୀଡମ୍ ॥



# ରାଉରକେଲାରେ ଶିଳ୍ପ ବିକାଶ

ଡ଼ଃ ଭବଗ୍ରାହୀ ମହାପାତ୍ର

ପ୍ରାକ୍ ଐତିହାସିକ ଯୁଗର ଉଲଗ୍ନ, ପର୍ବତ ଗୁମ୍ଫା ମଧ୍ୟରେ ବସବାସ କରୁଥିବା ମଣିଷ ଏବଂ ଆଧୁନିକ ଆପାଦମସ୍ତକ ପରିବେଷ୍ଟିତ, ନଭଶ୍ଚୁମ୍ବୀ ପ୍ରାସାଦ ମଧ୍ୟରେ ଅବସ୍ଥାପିତ ମଣିଷ ମଧ୍ୟରେ ଦୂରତା ଅନେକ ବେଶି ଏବଂ କଳ୍ପନାତୀତ । ବିଜ୍ଞାନ ବଳରେ ବଳୀୟାନ ହୋଇ ମଣିଷ ପୃଥିବୀ ପୃଷ୍ଠରେ ପରିବର୍ତ୍ତନର ଢେଉ ଖେଳାଇ ଦେଇଛି । ଶିଳ୍ପ ଏହି ପରିବର୍ତ୍ତନର ଗୋଟିଏ ପ୍ରଧାନ ଅଙ୍ଗ । ବର୍ତ୍ତମାନ ଜୀବନ ଧାରଣର ମାନ ଏହି ଶିଳ୍ପର ସମୃଦ୍ଧି ଉପରେ ନିର୍ଭର କରୁଛି । ଜାପାନରେ ମୁଣ୍ଡପିଛା ଇସ୍ପାତ ଖର୍ଚ୍ଚ ୬୦୦ କେଜି., ଭାରତରେ ୧୦ କେଜି. । ତେଣୁ ଜାପାନର ଲୋକେ ଧନୀ ଏବଂ ଉନ୍ନତ । ଆମେ ଗରିବ ଏବଂ ବିକାଶଶୀଳ । ତେଣୁ ବର୍ତ୍ତମାନ ଯୁଗରେ ଶିଳ୍ପର ବିକାଶ ବଞ୍ଚି ରହିବାର ଗୋଟିଏ ଅବିଚ୍ଛେଦ୍ୟ ଅଙ୍ଗ । ଖାଦ୍ୟ ଉତ୍ପାଦନ, ବସ୍ତ୍ର ଉତ୍ପାଦନ ପରି ଇସ୍ପାତ ଉତ୍ପାଦନ ମଧ୍ୟ ଆମ ସମୃଦ୍ଧିର ଗୋଟିଏ ମାପକାଠି । ତେଣୁ ଭାରତ ସ୍ୱାଧୀନ ହେବା ପରେ ରାଷ୍ଟ୍ରାୟତ୍ତ ଉଦ୍ୟୋଗରେ ଦେଶରେ ୫ଟି ଇସ୍ପାତ କାରଖାନା ଗଢିଉଠିଲା ଏବଂ ରାଉରକେଲାର ପ୍ରଥମ ଇସ୍ପାତ କାରଖାନା ଏହା ମଧ୍ୟରେ ପ୍ରତିଷ୍ଠା ହେଲା । ଇସ୍ପାତ କାରଖାନାକୁ ଗୋଟିଏ ବଟବୃକ୍ଷ ସଙ୍ଗରେ ତୁଳନା କରାଯାଇପାରେ । ବଟବୃକ୍ଷରେ ଅନେକ ପକ୍ଷୀ ଆଶ୍ରୟ ନିଅନ୍ତି, ତାର ଓହଳରେ ଅନେକ ଲତାମାନେ, କାରଣ 'ବିନାଶ୍ରୟେ ନ ବର୍ତ୍ତନ୍ତେ କବିତା, ବନିତା, ଲତା' ଗାଁ ମୁଣ୍ଡର ବଟବୃକ୍ଷ ତଳେ ଗାଁର ଖଣ୍ଡ ସମିତି ସବୁ ହୁଏ ଇତ୍ୟାଦି, ଇତ୍ୟାଦି । ସେହିପରି ଇସ୍ପାତ କାରଖାନା ହେଲା ମାତ୍ରକେ ତାର ଉପରେ ନିର୍ଭର କରୁଥିବା ଅନେକ ଆନୁଷଙ୍ଗିକ ଶିଳ୍ପ ଗଢିଉଠେ । ତେଣୁ ଏଠାରେ ଆଲୋଚ୍ୟ ବିଷୟ ହେଉଛି ରାଉରକେଲାରେ ଏହି ଶିଳ୍ପର ବିକାଶ କେତେଦୂର କୃତକାର୍ଯ୍ୟ ହୋଇଛି ।

ଇସ୍ପାତ କାରଖାନାର ନିକଟବର୍ତ୍ତୀ ଶିଳ୍ପ ଗୁଡ଼ିକୁ ମୁଖ୍ୟତଃ ପାଞ୍ଚ ଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମଟି ହେଲା ଇସ୍ପାତ କାରଖାନା ଦ୍ୱାରା ବ୍ୟବହୃତ ହେଉଥିବା କଞ୍ଚାମାଲ (Raw materials), ଦ୍ୱିତୀୟଟି ହେଲା କଳକବ୍ଜା ଏବଂ ଯନ୍ତ୍ରପାତି ଇତ୍ୟାଦି, ଯାହା ଇସ୍ପାତ କାରଖାନାକୁ ଚଳେଇବାରେ ବ୍ୟବହୃତ ହୁଏ, (Spares & Consumables) । ତୃତୀୟଟି ହେଲା ଇସ୍ପାତ କାରଖାନାକୁ ନିଯୁକ୍ତ ଢଆଣ ଜନଗଣକୁ ନେଇ ସାଧାରଣ କ୍ରେତା ଏବଂ ଅନ୍ୟ ଶିଳ୍ପ ନିମନ୍ତେ ଉଦ୍ଦିଷ୍ଟ ଉତ୍ପନ୍ନ ଦ୍ରବ୍ୟର ପ୍ରସ୍ତୁତି,

(Consumer goods), ଚତୁର୍ଥଟି ହେଲା ଇସ୍ପାତ କାରଖାନାର ବିଭିନ୍ନ ବିଭାଗରୁ କାର୍ଯ୍ୟ ପ୍ରକ୍ରିୟା ମାଧ୍ୟମରେ ବାହାରୁଥିବା ଅନେକ ଅଦରକାରୀ ଜିନିଷକୁ ନେଇ ଦରକାରୀ ଜିନିଷରେ ପରିଣତ କରିବା (utilization of waste products) ଏବଂ ପଞ୍ଚମଟି ହେଲା ସାଧାରଣ ଲୋକଙ୍କର ଦୈନନ୍ଦିନ ବ୍ୟବହାର୍ଯ୍ୟ ଜିନିଷର ପ୍ରସ୍ତୁତି ଉପରେ ପର୍ଯ୍ୟବେଶିତ ଶିଳ୍ପ (General consumer products) ।

ଇସ୍ପାତ କାରଖାନାର ମୁଖ୍ୟ କଞ୍ଚାମାଲ ହେଲା, ଲୁହା ପଥର, ଚୂନ ଏବଂ କୋଇଲା । କାରଖାନାର ନିଜସ୍ୱ ଖଣି ବରସୁଆଁରୁ ମୁଖ୍ୟତ ଲୁହାପଥର ଆସେ, ତା ବାହାରେ ଆଉ କିଛି ଅଂଶ ସରକାରୀ ଉଦ୍ୟୋଗ ଏବଂ ଘରୋଇ ଉଦ୍ୟୋଗରେ ପ୍ରତିଷ୍ଠିତ ଖଣିମାନଙ୍କରୁ କିଣାଯାଏ । ଚୂନ ପଥର ପାଇଁ ମଧ୍ୟ ନିଜସ୍ୱ ଖଣି ପୁରୁଣାପାଣି-ରେ ଅଛି, ତା ବାହାରେ ଆଉ କିଛି ବାହାରୁ କିଣାଯାଏ । କୋଇଲା ସରକାରୀ ଉଦ୍ୟୋଗରେ ପ୍ରତିଷ୍ଠିତ Coal India ଯୋଗାଇ ଦିଏ । ଏହା ବାହାରେ ଅନେକ କଞ୍ଚାମାଲ ଯଥା—ମାଙ୍ଗାନିଜ, ଡୋଲମାଇଟ୍ ଇତ୍ୟାଦି କମ ପରିମାଣରେ ବ୍ୟବହୃତ ହୁଏ । ଲୌହ ସମ୍ବନ୍ଧୀୟ ମିଶ୍ରଧାତୁ (Ferro-alloays), ମଧ୍ୟ ଇସ୍ପାତ ତିଆରିରେ ବ୍ୟବହୃତ ହୁଏ । ଏହା ଗୋଟିଏ ବୃହତ୍ ଶିଳ୍ପ ଏବଂ ଓଡ଼ିଶାରେ ୮-୯ଟା ଜାଗାରେ ଏହା ପ୍ରସ୍ତୁତ ହେଉଛି, ଯଥା—କୋରାପୁଟର ଥେରୁବାଲିରେ ପ୍ରତିଷ୍ଠିତ ଇମଫା କମ୍ପାନୀ । ତେଣୁ ଖଣିଭିତ୍ତିକ ଶିଳ୍ପ ମଧ୍ୟରେ ଚୂନପଥର ସୁନ୍ଦରଗଡ଼ ଓ ଆଖପାଖରେ ଅନେକ ପରିମାଣରେ ମିଳେ । ଇସ୍ପାତ କାରଖାନା ଯେଉଁ ଚୂନପଥର ବ୍ୟବହାର କରେ ତାର ମାନ ଟିକିଏ ଉଚ୍ଚଧରଣର । ତେଣୁ ନିମ୍ନମାନର ଅନେକ ଚୂନ ପଥର କମ୍ପାନୀର ନିଜସ୍ୱ ଖଣିରେ ରହିଯାଏ । ଏ ଗୁଡ଼ିକର ଉପଯୋଗ କରି ଯେଉଁ ଶିଳ୍ପ ଗୁଡ଼ିକ ପ୍ରତିଷ୍ଠିତ ହୋଇପାରିବ, ସେ ଗୁଡ଼ିକ ହେଲା, ସିମେଣ୍ଟ କାରଖାନା Calcium carbide କାରଖାନା ଏବଂ ବ୍ଲିଚିଙ୍ଗ ପାଉଡର କାରଖାନା । ସୁନ୍ଦରଗଡ଼ ଆଖପାଖରେ Vertical Shaft kiln ପ୍ରକ୍ରିୟା ଦ୍ୱାରା ଅନେକ ଛୋଟଛୋଟ କାରଖାନା ପ୍ରତିଷ୍ଠା ହୋଇଛି ଏବଂ ସେଗୁଡ଼ିକ ପ୍ରଚାର ଲାଭ କରୁଛନ୍ତି । ଏହି ପ୍ରକ୍ରିୟା ଗୋଟିଏ ପୁରାତନ ପ୍ରକ୍ରିୟା ଏବଂ ଯଦି ଉତ୍ପାଦନ ପ୍ରଣାଳୀରେ ସମ୍ୟକ୍ ଯତ୍ନ ନିଆ ନଯାଏ, ତାହେଲେ ଏଥିରୁ ପ୍ରସ୍ତୁତ ସିମେଣ୍ଟ ସବୁବେଳେ ମାନ ରକ୍ଷା କରିପାରେ ନାହିଁ । କିନ୍ତୁ ଜିନିଷର ଚାହିଦା ଓ ପ୍ରତିଯୋଗିତାର ଅଭାବ ଦୃଷ୍ଟିରୁ ଯାହା ପ୍ରସ୍ତୁତ ହେଉଛି, ସବୁ ପ୍ରାୟ ବିକ୍ରୟ ହୋଇଯାଉଛି । ତେଣୁ ଆହୁରି ସିମେଣ୍ଟ କାରଖାନା ପ୍ରତିଷ୍ଠା ହୋଇ ପାରିବ । କେଲସିଅମ କାର୍ବାଇଡ କାରଖାନା ଏ ପର୍ଯ୍ୟନ୍ତ ପ୍ରତିଷ୍ଠା ହୋଇନାହିଁ । ବ୍ଲିଚିଙ୍ଗ ପାଉଡର କାରଖାନା ମଧ୍ୟ କେବଳ ଗୋଟିଏ ଅଛି ଏବଂ ଆହୁରି ପ୍ରତିଷ୍ଠା ହୋଇ ପାରିବ ।

ଦ୍ୱିତୀୟ ବିଭାଗର ଶିଳ୍ପ ହେଲା କାରଖାନା ଦ୍ୱାରା ବ୍ୟବହୃତ ହେଉଥିବା

ଆଲ୍‌କା ଭୂକ୍ତ ଦ୍ରବ୍ୟ । ଏହିପରି ପ୍ରକାର ବୋଧହୁଏ ହଜାର ହଜାର ସଂଖ୍ୟାରେ ହେବ । ଜାପାନରେ ମଟର ଗାଡ଼ିର ଶିଳ୍ପର ପ୍ରସାର ଖୁବ୍ ବେଶି, ପ୍ରତି ମଟର ଗାଡ଼ିରେ ପ୍ରାୟ ୫୦୦ ପ୍ରକାରର ଛୋଟଛୋଟ ଜିନିଷ ଦରକାର ହୁଏ । ପ୍ରତି ଜିନିଷ ପାଇଁ ଯେତିକିଟା ଘରୋଇ ଉଦ୍ୟୋଗ ଦରକାର ସେତିକିଟା ପ୍ରତିଷ୍ଠା କରାଯାଇ ସେ ଗୁଡ଼ିକ ବିକାଶ କରାଯାଏ ଏବଂ ମାନରକ୍ଷା ଉପରେ ଖୁବ୍ ଜୋର ଦିଆଯାଏ ଏବଂ କେବଳ ସେମାନଙ୍କ ପାଖରୁ ସେହି ଜିନିଷ କିଣାଯାଏ । ଏହାଦ୍ୱାରା ଅଦରକାରୀ ପ୍ରତିଯୋଗିତା ଏଡ଼ାଇ ଦିଆଯାଏ ଏବଂ ଘରୋଇ ଶିଳ୍ପ ଗୁଡ଼ିକ ଜିନିଷକିଣା ପାଇଁ ନିର୍ଦ୍ଦେଶ ଉପରେ ନିର୍ଭର ନକରି, ବର୍ଦ୍ଧିଷ୍ଣୁ ବ୍ୟସ୍ତ ରହନ୍ତି ।

ଏହି ଚିନ୍ତାଧାରାର ଏ ପର୍ଯ୍ୟନ୍ତ ଉଦ୍ରେକ ଏଠାରେ ହୋଇନାହିଁ । ଏ ବିଷୟରେ ଲେଖି ବସିଲେ ଅନେକ ହେବ । ତେଣୁ ଗୋଟିଏ ମାତ୍ର ଉଦାହରଣ ମୁଁ ଏଠାରେ ଦେବି । କାରଖାନାର ଯେଉଁଠି ଟିଣ ତିଆରି ହୁଏ, ସେଠାରେ ଫେନଲ ସଲଫୋନିକ୍ ଏସିଡ଼ (Phenol Sulphonic Acid) ନାମରେ ଗୋଟିଏ ରସାୟନିକ ପଦାର୍ଥ ବ୍ୟବହାର ହୁଏ । ମୋର ମନେଅଛି ରାଉରକେଲାରେ ଦୁଇଟି ଶିଳ୍ପ ଏହା ତିଆରି କରିବାର ଆରମ୍ଭ କରିଥିଲେ । ତାଙ୍କୁ ଉତ୍ସାହିତ ଏବଂ ବିକାଶ କରିବାର ପରିବର୍ତ୍ତେ ଆମେ ସବୁବେଳେ ତାଙ୍କର ଖୁଣ ଖୋଜିଲେ ଏବଂ ହାଇଦ୍ରାବାଦ ଓ ବାଙ୍ଗାଲୋରରେ କୌଣସି ଉଦ୍ୟୋଗୀଙ୍କୁ ଏହା ତିଆରି କରି ଇସ୍ପାତ କାରଖାନାକୁ ବିକ୍ରି କଲେ । ନିର୍ଭୀକ ଭାବରେ କୁହାଯାଇପାରେ ଯେ କର୍ତ୍ତୃପକ୍ଷଙ୍କଠାରୁ କୌଣସି ଜିନିଷର ଯୋଗାଣ ପାଇଁ ଆଦେଶ ଜିନିଷର ମାନ ଉପରେ ନିର୍ଭର ନକରି ଅନ୍ୟାନ୍ୟ ଅନେକ କାରଣ ଉପରେ ନିର୍ଭର କରେ ଯାହା ସର୍ବଜନ ବିଦିତ ଏବଂ ଏହାର ନୂତନ ନାମକରଣ ହୋଇଛି 'ବୋଫର୍ସ' । ନିକଟରେ ଭାରତ ସରକାରଙ୍କ ଶିଳ୍ପମନ୍ତ୍ରୀ ଶ୍ରୀ ଅଜିତ୍ ସିଂହ କହିଛନ୍ତି, ଅନେକ ଶିଳ୍ପଯୋଗୀ ବିଗତ ଦଶବର୍ଷ ମଧ୍ୟରେ ଅନେକ ଧନ ରୋଜଗାର କରି ପାରିଛନ୍ତି । ତାହା ସମ୍ଭବ ହୋଇଛି ତାଙ୍କର ଶକ୍ତିଶାଳୀ ଲୋକଙ୍କ ସହିତ ସମ୍ପର୍କ ଯୋଗୁ—ତାଙ୍କର ଜିନିଷର ଗୁଣାତ୍ମକମାନ କିମ୍ବା ନିଜର ବୈଷୟିକ ସାଧିତା ଯୋଗୁଁ ନୁହେଁ । ଉପର କେବଳ ଗୋଟିଏ ଜିନିଷର ଉଦାହରଣ ଦିଆ-ହୋଇଛି । ଏହିପରି ବହୁତ ଉଦାହରଣ ଦିଆଯାଇ ପାରିବ । ତେଣୁ ରାଉରକେଲାରେ ଅନେକ କ୍ଷୁଦ୍ର ଶିଳ୍ପଦ୍ୟୋଗୀଙ୍କ କାରଖାନାରେ ତାଲା ପଡ଼ିଛି । ଏ ଦିଗରେ ଓଡ଼ିଶା ସରକାରଙ୍କର ବିଶେଷ ଦାୟିତ୍ୱ ରହିଛି ।

ତୃତୀୟ ବିଭାଗର ଶିଳ୍ପର ଜନ୍ମଟା ରାଉରକେଲାରେ ହୋଇଛି । ଯଥା ଏଠାରେ ଲୁହାଛଡ଼ ତିଆରି କାରଖାନା ଅନେକ ଗୁଡ଼ିଏ ସ୍ଥାପିତ ହୋଇଛି । ସ୍ଥାନୀୟ ଗୃହ ନିର୍ମାଣ କାର୍ଯ୍ୟରେ ଏସବୁ ଜିନିଷର ବ୍ୟବହାର ହେଉଛି । ବାଡ଼ାରେ ଲୁହା ସିନ୍ଦୁକ ଏବଂ ଅନ୍ୟାନ୍ୟ ଗୃହସାଜ ସରଞ୍ଜାମ ତିଆରିର ମଧ୍ୟ କେତେକ ଶିଳ୍ପ ପ୍ରତିଷ୍ଠା ହୋଇ-

ପାରନ୍ତି । କିନ୍ତୁ ଏହାର ଗୁଣାତ୍ମକ ମାନପ୍ରତି ଯଦି ଦୃଷ୍ଟି ଦିଆଯାଏ, ତାହାହେଲେ ଏହି ଜିନିଷ ଏଠୁ ସ୍ଥାନୀୟ ଶୁଦ୍ଧତା ମେଣ୍ଟାଇବା ସହିତ ଦେଶର ଅନ୍ୟାନ୍ୟ ସ୍ଥାନକୁ ପଠାଯାଇ ପାରିବ । ଇସ୍ପାତ କାରଖାନାରେ କୋଇଲାରୁ କୋକ୍ ତିଆରି ହୁଏ । ଏହି ପ୍ରଣାଳୀ ଦ୍ୱାରା ଅନେକ ଉପକାରୀ ଦ୍ରବ୍ୟର ସୃଷ୍ଟି ହୁଏ, ରୋଡ୍‌ଟାର୍ (Road Tar) Coal tar fuel (କୋଲ୍‌ଟାର ଜାଳେଣି), ୱାସ୍ ଅଏଲ (Wash oil) ନେପ-ଥେଲିନ (Naphthelin), ଏନଥ୍ରାସିନ (Anthracine), ଫେନଲ (Phenol) ବେନଜନ (Benzon), ଟୋଲିନ (Torlin) ଇତ୍ୟାଦି । ଏହି ଦ୍ରବ୍ୟମାନଙ୍କ ଭିତରୁ ଅନେକ ସିଧାସଳଖ କାର୍ଯ୍ୟରେ ବ୍ୟବହୃତ ହୋଇ ପାରିବ । ଯଥା କୋଲ୍‌ଟାର ହେଭି ଅଏଲ (Coal Tar heavy oil) କାଠକୁ ରକ୍ଷଣକ୍ଷମ କରିବାରେ ବ୍ୟବହାର ହୁଏ ଏବଂ ଅନେକ ପଦାର୍ଥ ଅନ୍ୟାନ୍ୟ ଶିଳ୍ପ ପାଇଁ କଞ୍ଚାମାଲ ହିସାବରେ ବ୍ୟବହୃତ ହୋଇପାରିବ । ଯଥା ବେଞ୍ଜିନ (Benzene ରୁ ରବର, ରଙ୍ଗ (Emul-sion paint), ରେସିନ, କୀଟନାଶକ ଦ୍ରବ୍ୟ; ପରିଷ୍କାର କରିବାର ଦ୍ରବ୍ୟ (Deter-gent) ଇତ୍ୟାଦି ଅନେକ ପ୍ରକାରର ଜିନିଷ ତିଆରି ହୁଏ । ସେହିପରି ନେପଥିଲିନ ଏବଂ ଫେନଲ ଇତ୍ୟାଦିରୁ ମଧ୍ୟ ଅନେକ ଦରକାରୀ ଯଥା ରଙ୍ଗର ମାଲ ମସଲା (Dye stuff), ଔଷଧ ଜାତୀୟ ଦ୍ରବ୍ୟ (Pharmaceutics) ଇତ୍ୟାଦି ପ୍ରସ୍ତୁତ ହୁଏ । ଏଗୁଡ଼ିକ ରସାୟନିକ ଶିଳ୍ପ ମଧ୍ୟରେ ଗଣ୍ୟ ହୁଅନ୍ତି । ଏହି ଶିଳ୍ପର ପ୍ରସାର ସୁନ୍ଦର-ଗଡ଼ରେ ଆଦୌ ହୋଇନାହିଁ । ଅଥଚ ରାଉରକେଲା କାରଖାନାରୁ ବାହାରୁଥିବା ଏ ସମସ୍ତ ଜିନିଷ ବିଷୟରେ ବିଚାର କରାଯାଇ ସେଠାରେ ଶିଳ୍ପ ଗଢ଼ି ଉଠିଛି । ତେଣୁ ଏ ଦିଗରେ ସରକାର ଯତ୍ନବାନ ହେବା ଉଚିତ ।

ରାଉରକେଲାରୁ ଉତ୍ପାଦିତ ଅନେକ ଜିନିଷ, ଯାହାକୁ ସାଧାରଣତଃ ଅଦରକାରୀ ଜିନିଷ (waste product) ବୋଲି କୁହାଯାଏ, ସେଗୁଡ଼ିକ ପ୍ରକୃତରେ ବର୍ତ୍ତମାନ ଖୁବ୍ ଦରକାରୀ ଜିନିଷରେ ପରିଣତ ହୋଇଛି, ସେଗୁଡ଼ିକ ହେଲା—Coke Breeze and dust, Acetrylinc sludge, Blast Furnash Slag, Open hearth and LD slag, Patrun oil sludge, Zinc dron, Tini dust and ash, Ferrous sulphate, Mill Scale ଇତ୍ୟାଦି ।

ଉପରୋକ୍ତ ଜିନିଷକୁ ନେଇ ଅନେକ ଶିଳ୍ପ ସ୍ଥାପିତ ହୋଇ ପାରିବ । ଏହାର ବିଶେଷ ବିବରଣୀ ଏଠାରେ ଦେବା ସମ୍ଭବ ନୁହେଁ । ଏ ଦିଗରେ କୌଣସି ଯତ୍ନ ନିଆହେଲାପରି ମନେ ହେଉନାହିଁ ।

ଇସ୍ପାତ କାରଖାନା ପ୍ରତିଷ୍ଠା ହେବା ମାତ୍ରକେ, ସେହି ସ୍ଥାନରେ ବସ୍ତି ନଗରୀ ଗଢିଉଠେ । ଏଠାରେ ବସବାସ କରୁଥିବା ଲୋକଙ୍କ ଦୈନନ୍ଦିନ ଜୀବନଧାରଣ ପାଇଁ ଅନେକ ଜିନିଷର ଦରକାର ପଡେ ଏବଂ ଏ ଦିଗରେ ଅନେକ ଶିଳ୍ପ ପ୍ରତିଷ୍ଠା ହୋଇ ଥାଏ : ଯଥା ଖାଇବା ତେଲ, ସାବୁନ ଏବଂ ଅନ୍ୟାନ୍ୟ ପରିଷ୍କାରକ ପଦାର୍ଥ (detergents), ଖାଦ୍ୟ ସାମଗ୍ରୀ ରକ୍ଷଣଯୁକ୍ତ ଶିଳ୍ପ (caning industry), ଇତ୍ୟାଦି । ବର୍ତ୍ତମାନ ଯୁଗରେ ପ୍ରତ୍ୟେକ ଅଞ୍ଚଳ ଆତ୍ମନିର୍ଭରଶୀଳ ହେବା ଉଚିତ । ତେଣୁ ପ୍ରତ୍ୟେକ ଅଞ୍ଚଳର ଜିନିଷଦା ସେ ଅଞ୍ଚଳରୁ ଉତ୍ପାଦନ ହେବା ଉଚିତ । ଅବଶ୍ୟ ଏହା ସବୁ କ୍ଷେତ୍ରରେ ସମ୍ଭବ ହୋଇ ନପାରେ, କେବେ ଅଧିକାଂଶ କ୍ଷେତ୍ରରେ ଏହା ସମ୍ଭବ । ଏହାଦ୍ୱାରା ଅଯଥା ମାଲ ପରିବହନର ଖର୍ଚ୍ଚ ଅନେକାଂଶରେ କମିଯିବ ଏବଂ ମାଲ ପରିବହନରେ ଆମେ ଯେଉଁ ବ୍ୟୟସାଧ୍ୟ ଜାଳେଣି ବ୍ୟବହାର କରୁଛୁ, ତାହା ମଧ୍ୟ କମିଯିବ । ଏହା କମିବା ଦ୍ୱାରା ପୃଥିବୀର ଦୂଷିତକରଣ ମଧ୍ୟ କମିଯିବ ।

ରାଜନୀତିଜ୍ଞ, ଶିଳ୍ପପତି ଏବଂ ଅମଲାତନ୍ତ୍ର ଏ ଦେଶର ଶାସକବର୍ଗ ହିସାବରେ ପରିଗଣିତ ହୁଅନ୍ତି । ଏମାନଙ୍କର ନୈତିକତା ଏବଂ ଶିକ୍ଷା ଉପରେ ଦେଶର ଭବିଷ୍ୟତ ନିର୍ଭର କରେ । ରାଉରକେଲାରେ ଶିଳ୍ପର ପ୍ରସାର ମଧ୍ୟ ଏହି ନୀତି ନିୟମରୁ ବାଦ ପଡ଼ିବ ନାହିଁ । ଆଶାକରାଯାଏ ବର୍ତ୍ତମାନ ମୁଖ୍ୟମନ୍ତ୍ରୀ ନିଜେ ଜଣେ ପ୍ରଖ୍ୟାତ ଶିଳ୍ପପତି । ସେ ଏ ଦିଗରେ ଉପଯୁକ୍ତ ଦୃଷ୍ଟି ଦେବେ ।



# ରାଉରକେଲାରେ ସାହିତ୍ୟ ଓ ସାହିତ୍ୟିକ

* କବିବର ପରିଡ଼ା

ପ୍ରଗତି ଉତ୍କଳ ସଂଘର କର୍ମକର୍ତ୍ତାଙ୍କ ସିଦ୍ଧାନ୍ତ ଅନୁଯାୟୀ ସମ୍ପାଦକ ମହାଶୟ ଏଇ ବିଷୟ ଉପରେ ପ୍ରବନ୍ଧଟିଏ ଲେଖିବା ପାଇଁ ମୋତେ ଅନୁରୋଧ ଜଣାଇଛନ୍ତି । ଏଥିନିମନ୍ତେ ସେମାନଙ୍କୁ ମୁଁ ସାଧୁବାଦ ଜଣାଉଛି । ଏଇ ବିଷୟ ଉପରେ ଆଲୋକ-ପାତ କରିବା ପୂର୍ବରୁ ମୋ ମନରେ କେତୋଟି ସମସ୍ୟା ସୃଷ୍ଟି ହୋଇଛି । ପ୍ରଥମକଥା ସାହିତ୍ୟ କୌଣସି ଅଞ୍ଚଳ ମଧ୍ୟରେ ଆବଦ୍ଧ ନୁହେଁ । ଲେଖକ ଯେଉଁ ସ୍ଥାନରେ ରହି ଲେଖନ୍ତୁନା କାହିଁକି, ତାହା ସମସ୍ତ ବିଶ୍ୱର କଲ୍ୟାଣ ନିମନ୍ତେ ଉଦ୍ଦିଷ୍ଟ । କଟକ ଭୁବନେଶ୍ୱରରେ ରହି ଲେଖୁଥିବା ଲେଖକଙ୍କର ଲେଖାରେ ସେ ସହରର ଉନ୍ନତି ହୋଇଛିକି ନାହିଁ ସେଠିକାର ବାସିନ୍ଦାମାନେ ଜାଣନ୍ତି । ଏଣୁ ରାଉରକେଲାରେ ଯେଉଁମାନେ ସାହିତ୍ୟ ଚର୍ଚ୍ଚା କରୁଛନ୍ତି ଦେଶ ଓ ଜାତିର କି ଉପକାର ହେଉଛି, ସ୍ଥାନୀୟ ଜନସାଧାରଣ ଜାଣନ୍ତି ।

ବିଷୟବସ୍ତୁକୁ ମୁଁ ବାରମ୍ବାର ତର୍ଜମା କଲାପରେ ମୁଁ ଉପଲବ୍ଧି କରୁଛି ଯେ—ରାଉରକେଲାରେ ଅବସ୍ଥାନ କରୁଥିବା ଲେଖକମାନଙ୍କର କୃତିରେ ଆମ ଭାଷା ସାହିତ୍ୟ କଉଳ ପୁଷ୍ଟ ହୋଇଛି । ପୁନଶ୍ଚ ରାଉରକେଲାରେ ଥିବା ସାହିତ୍ୟ ଅନୁଷ୍ଠାନମାନ ପ୍ରଗତି ପଥରେ କେତେଦୂର ଆଗେଇଛି । ଏଇ ଦୁଇଟି ପ୍ରସଙ୍ଗକୁ ବିଚାର କରି ତାହାର ସାରମର୍ମକୁ ଉପସ୍ଥାପିତ କରିବା ପାଇଁ ମୁଁ ମନସ୍ଥ କରୁଛି । କୌଣସି ସ୍ଥାନରେ ଯଦି ତ୍ରୁଟି ବିଚ୍ୟୁତି ରହିଯାଏ, ସୁଧୀଜନେ ମୋତେ ମାର୍ଜନା କରିବା ପାଇଁ ପ୍ରଥମରୁ ନମ୍ର ନିବେଦନ ରହିଲା । ରାଉରକେଲା ଏକ ସାଧୁ ଶବ୍ଦ ଏହାର ଅର୍ଥ ଆପଣଙ୍କର ଗାଁ । ଏଣୁ ଆପଣଙ୍କ ଗାଁର ସାହିତ୍ୟ ସମ୍ପର୍କରେ ବର୍ଣ୍ଣନା କରିବା ମୋ ପକ୍ଷେ ଗୌରବର ବିଷୟ । ପୁଣି ଆପଣମାନେ ଗୌରବାନ୍ୱିତ ହେବେ ।

ରାଉରକେଲାରେ ସାହିତ୍ୟର ବିକାଶ ନିମନ୍ତେ ଗୋଟିଏ ହେଲେ ପ୍ରକାଶନ ସଂସ୍ଥା ନାହିଁ କି, କେହି ପ୍ରକାଶକ ନାହାନ୍ତି । ଏହା ସହିତ କୌଣସି ପତ୍ରିକା ନିୟମିତ ପ୍ରକାଶ ପାଏ ନାହିଁ । ଯେଉଁ ଦୁଇ ତିନୋଟି ପତ୍ରିକା ପ୍ରକାଶ ପାଏ, ତାହାର ଗୁଣାତ୍ମକ ମୂଲ୍ୟ ଅତି ଉଚ୍ଚ ନହେଲେବି ନିମ୍ନସ୍ତରର ନୁହେଁ । ଓଡ଼ିଶାରେ ମୁକ୍ତିଲାଭ କରୁଥିବା

ପତ୍ରିକ ତୁଳନାରେ ଏ ପତ୍ରିକା ମାନଙ୍କର ମାନ ଯଥେଷ୍ଟ ଅଟେ । ଅନ୍ୟାନ୍ୟ ଅଞ୍ଚଳରେ ପ୍ରକାଶ ପାଉଥିବା ପତ୍ରିକା ମାନଙ୍କରେ ଯେଭଳି ସ୍ଥଭବଙ୍କୁ ସ୍ୱଜାତି ଓ ପଦ-ପଦବୀକୁ ଅଗ୍ରାଧିକାର ମିଳିଥାଏ, ସେହି ବିଚାର-ବିବେଚନା ସଂପୂର୍ଣ୍ଣଭାବେ ଏଠାରେ ଚଳୁନାହିଁ । କେତେକ ପତ୍ରିକାର ସଂପାଦକ ରାଉରକେଲା ଲେଖକ ମାନଙ୍କର ଲେଖାକୁ ନପଢ଼ି ଅଗ୍ରାହ୍ୟ କରିଦିଅନ୍ତି । କାରଣ ସେମାନଙ୍କର ମନ୍ତବ୍ୟ ରାଉରକେଲାରେ କେବଳ ଲୌହଇସ୍ପାତ ଉତ୍ପାଦିତ ହୁଏ, ସାହିତ୍ୟ ନୁହେଁ । ଜଣେ ନୁହେଁ କେତେ ଜଣ ସାହିତ୍ୟ ବଡ଼ପଣ୍ଡାଙ୍କ ମୁହଁରୁ ମୁଁ ଶୁଣିଛି । ପରବର୍ତ୍ତୀ ସମୟରେ ସେମାନେ ରାଉରକେଲାରେ ସମ୍ବର୍ଦ୍ଧିତ ହୋଇଛନ୍ତି । ନିଜ ଲେଖାଟିଏ କାହାର ସଂକଳନରେ ସ୍ଥାନ ପାଇବ ବାରମ୍ବାର ପତ୍ର ଲେଖିଛନ୍ତି ।

ଜଣେ ସ୍ଥାନୀୟ ଲେଖକଙ୍କର ଉପାଦେୟ ପୁସ୍ତକଟି ପ୍ରକାଶ କରିବା ପାଇଁ ସେ ପଟର ଗୋଟିଏ ପ୍ରକାଶନ ସଂସ୍ଥା ରାଜି ହେଲେ । ସମସ୍ତ କଥା ଶେଷ ହେଲାପରେ ଏ ଲେଖକଙ୍କର ପରିଚୟ ମାଗିଲେ । ଛ ମାସ ପରେ ପାଣ୍ଡୁଲିପି ଫେରସ୍ତ ଆସିଲା ଯେ— ଲେଖକ ଇସ୍ପାତ କାରଖାନାର କର୍ମଚାରୀ, ଏଣୁ ପୁସ୍ତକ ଗ୍ରହଣୀୟ ନୁହେଁ । ଏଭଳି ମନୋଭାବ ସେମାନଙ୍କର ଅଛି । ଏଥିନେଇ ସ୍ଥାନୀୟ ଲେଖକ ମାନଙ୍କର ଉପାଦେୟ ଲେଖା ମୁଦ୍ରିତ କରିପାରେ ନାହିଁ । କାରଖାନାର ବିଭିନ୍ନ ଦପ୍ତରରେ କାର୍ଯ୍ୟ କରୁଥିବା ଲେଖକମାନଙ୍କ ବ୍ୟତୀତ ଯେଉଁମାନେ ଅଛନ୍ତି, ସେମାନଙ୍କର ଲେଖା ମଧ୍ୟ ମୁଦ୍ରିତ କରିପାରୁ ନାହିଁ । ନିଜର ପ୍ରତିଭା ଓ ପ୍ରଚେଷ୍ଟାରେ ମାତ୍ର ସାତ/ଆଠ ଜଣଙ୍କର ପୁସ୍ତକମାନ ଆଲୋକକୁ ଆସିଛି । ଦୀର୍ଘ କୋଡ଼ିଏ ବର୍ଷରୁ ଅଧିକ କାଳ ଧରି ରହିଥିବା ସାଧକ ମାନଙ୍କର ପ୍ରକାଶିତ ପୁସ୍ତକ ପଚିଶ/ପଞ୍ଚାବନ ଖଣ୍ଡ ହେବ । ସେଥି ମଧ୍ୟରେ ମାତ୍ର ୧୭/୧୮ଖଣ୍ଡ ଉପାଦେୟ ପୁସ୍ତକ ଅଟେ ।

ଯେଉଁ କେତେଜଣ ସରକାରୀ କର୍ମଚାରୀ ବା ସରକାରୀ କଲେଜର ଅଧ୍ୟାପକ ଅଛନ୍ତି ସେମାନେ କିଛିବର୍ଷ ଏଠାରେ ପୁନଶ୍ଚ ବଦଳି ହୋଇ ଯାଇଛନ୍ତି । ଏସବୁକୁ ମୁଁ ମୋର ପ୍ରବନ୍ଧ ପରିସରକୁ ଆଣୁନାହିଁ ।

୨୫ ବର୍ଷ ତଳେ କବିତା ଆସରରେ ମାତ୍ର ୮/୯ ଜଣ କବି ଯୋଗ ଦେଉଥିଲେ । ସେମାନଙ୍କ ମଧ୍ୟରେ ଶ୍ରୀ ମହେଶ୍ୱର ପଣ୍ଡା ଓ ଶ୍ରୀ ରଜନୀକାନ୍ତ ଦାସ ମୁଖ୍ୟଥିଲେ । ସାନ୍ଧ୍ୟ ମହାବିଦ୍ୟାଳୟ ସ୍ଥାପିତ ହେବା ପରେ କେତେକ ଅଧ୍ୟାପକ ଯୋଗଦାନ କଲେ । ସେତେବେଳେ ସାହିତ୍ୟ ଆଲୋଚନା କ୍ରମଶଃ ବୃଦ୍ଧି ପାଇଲା । ଅନ୍ୟକାରଣ ହେଲା— ରାଉରକେଲାରେ ଅଣଓଡ଼ିଆମାନଙ୍କର ପାଦୁର୍ଭାବ ଓ ଘୃଣା ମନୋଭାବରେ ଓଡ଼ିଆ ଲୋକେ ଅତିଷ୍ଠ ହୋଇଥିଲେ । ଏହି କାରଣରୁ ନୀଳଚକ୍ର ଓ ପ୍ରଗତି ଉତ୍କଳ ସଂଘର

କର୍ମକର୍ତ୍ତାମାନେ ଭାଷା ଏବଂ ଜାତିର ସୁରକ୍ଷା ନିମନ୍ତେ ଆଗୁସାର ହେଲେ । ଆଦର୍ଶ ପାଠାଗାର, କୋଣାର୍କ ସାଂସ୍କୃତିକ ପରିଷଦ, ଗୋପବନ୍ଧୁ ପରିଷଦ ତଥା ପ୍ରଗତି ଉତ୍କଳ ସଂଘର ବାର୍ଷିକ ଉତ୍ସବରେ ବହୁ ବିଦ୍ୱାନଙ୍କ ଯୋଗଦାନରେ ଅନେକ ସାହିତ୍ୟିକ ଉତ୍ସାହିତ ହେଲେ ।

ଅନ୍ୟ ପକ୍ଷରେ କଲିକତାସ୍ଥିତ ଏକାଡେମୀରେ ସେତେବେଳେ ପ୍ରତି ରବିବାର ଦିନ ସାହିତ୍ୟ ଚକ୍ର ଅନୁଷ୍ଠିତ ହେଉଥିଲା, ସ୍ଥାନୀୟ ଲେଖକମାନେ ଯୋଗ ଦେଉଥିଲେ । ଏକାଡେମୀର ଆଭିମୁଖ୍ୟ ସହିତ କେତେ ଲେଖକଙ୍କର ମତାନ୍ତର ହେବାରୁ ସେମାନେ 'ସଂଘମ' ନାମରେ ଏକ ଅନୁଷ୍ଠାନ କଲେ । ସେମାନେ 'ଆଭିମୁଖ୍ୟ' ନାମକ ଏକ କ୍ଷୁଦ୍ର ପତ୍ରିକା ପ୍ରକାଶିତ କଲେ । କିଛି ବର୍ଷପରେ 'ସଂଘମ'ର ସଦସ୍ୟମାନେ ଏକାଡେମୀରେ ଯୋଗଦେଲେ । ଏକାଡେମୀର ମୁଖପତ୍ର 'ନବପତ୍ର' ସେ ସମୟରେ ବେଶ୍ ଖ୍ୟାତି ଅର୍ଜନ କରିଥାଏ । କେତେକ ସରକାରୀ ମହାବିଦ୍ୟାଳୟର ଅଧ୍ୟାପକ ଓ ସ୍ଥାନୀୟ ବିଶିଷ୍ଟ ଲେଖକମାନେ ସମନ୍ୱୟ ନାମରେ ଏକ ଅନୁଷ୍ଠାନ କଲେ । ସେହି ଅନୁଷ୍ଠାନରେ ଅଧ୍ୟାପକ ରାମଚନ୍ଦ୍ର ରାଉତ, ଅଧ୍ୟାପକ ରବୀନ୍ଦ୍ରନାଥ ନାୟକ, ଅଧ୍ୟାପକ ନିରଞ୍ଜନ ଷଡ଼ଙ୍ଗୀ, ଡକ୍ଟର ପତିତପାବନ ମଣ୍ଡଳ, ନବକିଶୋର ପଣ୍ଡା, ଡକ୍ଟର ଦେବେନ୍ଦ୍ର ମୋହନ ପ୍ରହରାଜ, ଶ୍ରୀ ପୂର୍ଣ୍ଣ ମହାପାତ୍ର, ଇଞ୍ଜିନିୟର ଅଶୋକ ପଟ୍ଟନାୟକ, ଡାକ୍ତର ଧୀରେଶ ଚନ୍ଦ୍ର ମିଶ୍ର, ଶିକ୍ଷକ ଭଗିରଥି କୁଅଁର, ପଣ୍ଡିତ ଦିଗମ୍ବର ମହାପାତ୍ର, ଶ୍ରୀ ପ୍ରଦୀପ୍ତ ବେହେରା ଏବଂ ଏଇ ଲେଖକ ସଦସ୍ୟଥିଲେ । 'ଅନ୍ୟଥା' ନାମରେ ଏକ ପତ୍ରିକା ପ୍ରକାଶ କଲେ । ଅନ୍ୟଥା ମାତ୍ର ସାତଟି ସଂଖ୍ୟା ପ୍ରକାଶ ପରେ ବନ୍ଦ ହୋଇଗଲା । ତହିଁର ସମସ୍ୟା ହେଲା, ବିଭିନ୍ନ ସ୍ଥାନରେ ବଦଳି ହୋଇ ପାରିଲା ନାହିଁ । ପୁନଶ୍ଚ ସଦସ୍ୟମାନେ ଏକତ୍ର ବସି ଆଲୋଚନା କରିବା ପାଇଁ ଅଫିସ ଗୃହ ନଥିଲା । ସେହି ଅନୁଷ୍ଠାନର କେତେକ ସଦସ୍ୟ ସାହିତ୍ୟରେ ବେଶ୍ ଖ୍ୟାତି ଅର୍ଜନ କରିଛନ୍ତି । ଆଉ କେତେ ଜଣ ନୀରବ ହୋଇଯାଇଛନ୍ତି ।

ସର୍ବଭାରତୀୟ ସ୍ତରରେ ଖ୍ୟାତିଲାଭ କରିଥିବା ପଣ୍ଡିତ ଦିଗମ୍ବର ମହାପାତ୍ରଙ୍କ ନାମ ଉଲ୍ଲେଖନୀୟ । ପଣ୍ଡିତ ମହାଶୟ ବୀର ସୁରେନ୍ଦ୍ର ଚରିତମ୍ ଓ ସୁବର୍ଣ୍ଣବଙ୍ଗୀୟ ମହାକାବ୍ୟର ପ୍ରକାଶ ନିମନ୍ତେ କେନ୍ଦ୍ର ସରକାରଙ୍କଠାରୁ ଆର୍ଥିକ ଅନୁଦାନ ପାଇଛନ୍ତି । ବିଶ୍ୱ ସଂସ୍କୃତ ପ୍ରତିଷ୍ଠାନମ୍ ତାଙ୍କୁ ପଣ୍ଡିତରାଜ ଉପାଧିରେ ଅଲଂକୃତ କରିଛନ୍ତି । ତଦରୂପ ଶ୍ରୀଯୁକ୍ତ ନବକିଶୋର ପଣ୍ଡା ଓ ଏହି ଲେଖକ ଓଡ଼ିଆ ସାହିତ୍ୟରେ କୃତିତ୍ୱ ଲାଭକରି ରାଜ୍ୟସ୍ତରରେ ସମ୍ମାନିତ ଓ ପୁରସ୍କୃତ ହୋଇଥିଲେ । ଏକାଡେମୀର ସଭାପତି ଓ ସମ୍ପାଦକ ଶ୍ରୀଯୁକ୍ତ ରଜନୀକାନ୍ତ ଦାସ ଓ କବି ଶ୍ରୀ ମହେଶ୍ୱର ପଣ୍ଡା ରାଜ୍ୟରେ

ବହୁବାର ପୁରସ୍କୃତ ହୋଇଛନ୍ତି । ଅଧ୍ୟାପକ ରବୀନ୍ଦ୍ରନାଥ ନାୟକ ଶତାଧିକ ପ୍ରବନ୍ଧ ଓ ସମାଲୋଚନା ଲେଖି ଯଶସ୍ୱୀ ହୋଇଛନ୍ତି । ଦୀର୍ଘ ଦୁଇ ଦଶନ୍ଧି ଧରି କବିତା ରଚନାରେ ବ୍ରତୀହୋଇ ଡାକ୍ତର ଯୋଗେଶ ଚନ୍ଦ୍ର ମିଶ୍ର ଓ ଡାକ୍ତର କୃପାସିନ୍ଧୁ ନାୟକ ଜନପ୍ରିୟ କବି ଭାବେ ଖ୍ୟାତିଲାଭ କରିଛନ୍ତି ।

ଗଳ୍ପ ଓ ନାଟକ ରଚନାରେ ସାଫଲ୍ୟ ଲାଭ କରିଛନ୍ତି, ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ମହାପାତ୍ର । ଶ୍ରୀଯୁକ୍ତ ମହାପାତ୍ର ମଧ୍ୟ କେତେକ ମୌଳିକ ପ୍ରବନ୍ଧ ରଚନା କରିଛନ୍ତି, ଯାହାର ପ୍ରଭାବ ବର୍ତ୍ତମାନ କବିତାରେ ଅନୁରଣିତ । ପୂର୍ଣ୍ଣବାବୁଙ୍କର ଆଧ୍ୟାତ୍ମିକ ଚିନ୍ତା ଓ ଦର୍ଶନ ସ୍ୱତନ୍ତ୍ର ଗୁଣରେ ମହୀୟାନ । ଏହି ସମସ୍ତ ଲେଖକମାନଙ୍କ ମଧ୍ୟରେ ମହାପାତ୍ର ଯତୀନ୍ଦ୍ର କୁମାରଙ୍କ କୃତିକୁ ସ୍ୱତନ୍ତ୍ରଭାବେ ବିଚାର କରାଯାଇ ପାରେ; ରାଉରକେଲା ଆସିବା ପୂର୍ବରୁ ଯତୀନ୍ଦ୍ରବାବୁଙ୍କର ଗୋଟିଏ ଦୁଇଟି ଉପନ୍ୟାସ ମୁଦ୍ରଲାଭ କରିଥିଲା । ଯତୀନ୍ଦ୍ରବାବୁ କୌଣସି ଅନୁଷ୍ଠାନରେ ସକ୍ରିୟ ଭୂମିକା ଗ୍ରହଣ ନକରି ନିଜେ ଏକ ଅନୁଷ୍ଠାନରେ ପରିଣତ ହୋଇଛନ୍ତି । ରାଉରକେଲାରେ ବାସ କରୁଥିବା ଲେଖକମାନଙ୍କ ମଧ୍ୟରେ ଯତୀନ୍ଦ୍ରବାବୁଙ୍କର ବେଶି ବହି ମୁଦ୍ରଲାଭ କରିଛି । ଶ୍ରୀଯୁକ୍ତ ମହାପାତ୍ର ପ୍ରାରମ୍ଭରେ କବିତା ଲେଖୁଥିଲେ ହେଁ ପରବର୍ତ୍ତୀ ସମୟରେ ଗଳ୍ପ-ଉପନ୍ୟାସ ଲେଖାରେ ବ୍ରତୀ ହୋଇଛନ୍ତି । ଗଳ୍ପ ଉପନ୍ୟାସ ବ୍ୟତୀତ ଭ୍ରମଣ କାହାଣୀ ରଚନା କରିଛନ୍ତି । ଭ୍ରମଣ କାହାଣୀ ନିମନ୍ତେ ଯତୀନ୍ଦ୍ରବାବୁ ବେଶ୍ ପରିଚିତ ଓ ପ୍ରଶଂସିତ । ବର୍ତ୍ତମାନ ମଧ୍ୟ ମହାପାତ୍ରବାବୁଙ୍କର କଲମ ତୀବ୍ର ଓ ମୁଖର ଅଛି । ମହାପାତ୍ରବାବୁଙ୍କର ସହଧର୍ମିଣୀ ସୁଷମାଦେବୀ ମହାପାତ୍ର ମଧ୍ୟ ଗଳ୍ପ ରଚନା କରି ପୁରସ୍କୃତା ହୋଇଛନ୍ତି ।

ଦୀର୍ଘ କୋଡ଼ିଏ ବର୍ଷଧରି ଏଠାରେ ରହୁଥିବା ଲେଖିକା ହେଉଛନ୍ତି ଶ୍ରୀମତୀ ଅଳକା ଚନ୍ଦ । ଶ୍ରୀମତୀ ଚନ୍ଦ ଗଳ୍ପ ଓ କବିତା ରଚନାରେ ସୁନାମ ଅର୍ଜନ କରିଛନ୍ତି । ଶ୍ରୀମତୀ ଚନ୍ଦଙ୍କ ସୃଷ୍ଟିରେ ହତାଶା, ପ୍ରେମ, ନୈରାଶ୍ୟ, ଗ୍ଲାନି ଓ ସୌନ୍ଦର୍ଯ୍ୟର ଭାବକଳ୍ପ ଉଦ୍ୟାଧାନ । ଭାଷାର ସାବଲୀଳତା ନୂତନ ରୂପକଳ୍ପ ଦେବାରେ ଶ୍ରୀମତୀ ଚନ୍ଦ ନିପୁଣା ଅଟନ୍ତି । ଶ୍ରୀମତୀ ଚନ୍ଦ ଏକନିଷ୍ଠ ସାଧିକା ଭାବେ ପରିଚିତା ।

ସେହି ସମୟ ମଧ୍ୟରେ ବହୁ ପ୍ରତିଭା ମ୍ଳାନ ହୋଇଗଲାବେଳେ ୧୯୭୭ ମସିହା ପରେ ବହୁ ନୂତନ ପ୍ରତିଭାରେ ଉନ୍ମେଷ ହେଲା । ସେମାନଙ୍କ ମଧ୍ୟରେ ଅନେକ ଛାତ୍ର, କର୍ମଜୀବୀ ତଥା ଗୃହିଣୀ ବିଦ୍ୟମାନ । ସେ ସମୟରେ ସାହିତ୍ୟ ଆସରମାନ ବେଶ୍ ମୁଖରିତ ହେଉଥିଲା । ସବୁ ଆସରରେ ଶ୍ରୋତାମାନଙ୍କର ସମାବେଶ ଯଥେଷ୍ଟ ପରିମାଣରେ ହେଉଥାଏ । ନୂତନ ପ୍ରତିଭାମାନଙ୍କୁ ସ୍ୱାଗତ ଜଣାଇବା ନିମନ୍ତେ ହେଉ ବା ଭାଷା ସାହିତ୍ୟର ଅଖଣ୍ଡ ମମତା ହେତୁ ହେଉ, କିନ୍ତୁ ଶ୍ରୋତାମାନେ ବିବେକୀ ଗ୍ରାହକ

ସ୍ତରରେ ରହୁଥିଲା । ଅଧିକାଂଶ ଆସର ସାହିତ୍ୟ ମହାବିଦ୍ୟାଳୟରେ ହେଉଥାଏ । ଅନେକ ଅଧ୍ୟାପକ ଓ ଛାତ୍ରମାନଙ୍କ ଉପସ୍ଥିତି ରହୁଥିଲେ ।

ଯେଉଁ ନୂତନ ପ୍ରତିଭାର ସନ୍ଧାନ ମିଳିଥିଲା ସେମାନଙ୍କ ମଧ୍ୟରେ ଥିଲେ ଅଧ୍ୟାପକ ସନତ୍ ରାୟ, ଶ୍ରୀ ସ୍ୱରୂପ ମହାପାତ୍ର, ଶ୍ରୀ ସଦାନନ୍ଦ ତ୍ରିପାଠୀ, ଡକ୍ଟର ହେମାପଣ୍ଡା ପ୍ରଦ୍ୟୁମ୍ନ କେଶରୀ ଓ ଶ୍ରୀ ବଳରାମ ଦାଶ । ସେମାନଙ୍କୁ ଉତ୍ସାହ ଦେବା କ୍ରମରେ ଶ୍ରୀ ବିଦ୍ୟାଧର ଭାରତ, ଶ୍ରୀ ରମେଶ ଚନ୍ଦ୍ର ସାହୁ ଓ ଶ୍ରୀ ରଘୁବର ଧଳଙ୍କ ଉଦ୍ୟମରେ ଗଢି ଉଠିଲା ଇସ୍ପାତ ସାହିତ୍ୟ ସଂସଦ ।

ଇସ୍ପାତ ସାହିତ୍ୟ ସଂସଦ ଏକ ବର୍ଷୀୟାନ ଅନୁଷ୍ଠାନ । ଏ ଅନୁଷ୍ଠାନର ନିଜସ୍ୱ ଅଫିସ୍ ଗୃହ ନଥିଲେ ବି, ସବୁ ସପ୍ତାହରେ ସେମାନେ ସାହିତ୍ୟଚର୍ଚ୍ଚା କରନ୍ତି । ବହୁ ଲେଖକମାନଙ୍କୁ ଏ ଅନୁଷ୍ଠାନ ଆଲୋକକୁ ଆଣିବାରେ ସହାୟକ ହୋଇଛି । ଏ ଅନୁଷ୍ଠାନର ଅଭିମୁଖ୍ୟ ପ୍ରଗତିଶୀଳ ହେଲେହେଁ, ଆର୍ଥିକ ଅବସ୍ଥାଯୋଗୁ ସର୍ବଶେଷ ଭୂମିକା ଗ୍ରହଣ କରିପାରୁନାହିଁ । ଏଇଥିପାଇଁ 'ସ୍ତବକ' ପତ୍ରିକା ସ୍ଥଗିତ ହୋଇ ଯାଇଛି । ଏହି ଅନୁଷ୍ଠାନର ସଦସ୍ୟ ଶ୍ରୀ ରଘୁବର ଧଳ, ଶ୍ରୀ ନିତ୍ୟାନନ୍ଦ ନାୟକ ଓ ଶ୍ରୀ ବେତ୍ରଧର ନାୟକ ଧାରାବାହିକ ଭାବେ ଲେଖାରେ ମନୋନିବେଶ କରିଛନ୍ତି ।

ଯେଉଁ ସମାଜ ଯେତେ ସୁସ୍ଥ ଉନ୍ନତ ଓ ପ୍ରଭାବଶାଳୀ, ସେହି ସମାଜରେ ସୃଷ୍ଟି ହୋଇଥିବା ସାହିତ୍ୟ ମଧ୍ୟ ସେହିଭଳି ଉନ୍ନତ ସ୍ତରମାନର ହୁଏ । କପିଳେନ୍ଦ୍ର ଦେବଙ୍କ ସାମ୍ରାଜ୍ୟ ବିସ୍ତାର ଯୋଗୁ ସାରଳା ସାହିତ୍ୟ ମହାପ୍ରାଣ ହୋଇଛି । ଏହି ନ୍ୟାୟରେ ୧୯୭୬-୭୭ ମସିହାରେ ରାଉରକେଲାର ଜନଜୀବନ ସୁସ୍ଥିର ଥିଲେହେଁ, ସାହିତ୍ୟ ଏତେ ପୁଷ୍ଟ ହୋଇ ପାରିନାହିଁ କି ବେଶି ସଂଖ୍ୟାରେ ପୁସ୍ତକ ବା ପତ୍ରପତ୍ରିକା ପ୍ରକାଶ ପାଇ ପାରିନାହିଁ । ଏହାର କାରଣ – ପ୍ରଥମକୁ କହୁଛି, ଏଠାରେ କୌଣସି ପ୍ରକାଶକ ସଂସ୍ଥା ନାହିଁ । ପ୍ରକାଶକ ସଂସ୍ଥା ଏଠାରେ ଉଠିଲେ ଚାଲିବ ନାହିଁ । ଆମ ରାଜ୍ୟରେ ସାହିତ୍ୟ ବହିର ପାଠକ ସଂଖ୍ୟା ଖୁବ୍ ନଗଣ୍ୟ । କେବଳ ପାଠ୍ୟକ୍ରମରେ ଲେଖାମାନ ରହିଥିବାରୁ ବାଧ୍ୟହୋଇ ଛାତ୍ରମାନେ ପଢନ୍ତି । 'ଗ୍ରେଟ ମୋର ଗାଁଟି' ବା 'ଅଲକା ସାନ୍ୟାଲ' କବିତା ପାଠ୍ୟକ୍ରମରେ ନଥିଲେ ଆମେ ସଚ୍ଚି ବାବୁ ବା ଗୁରୁବାବୁଙ୍କୁ ଜାଣି ନଥାନ୍ତୁ । ଏଇଭଳି ବହୁ କବି ଅଛନ୍ତି, ଯେଉଁମାନଙ୍କୁ ଜନସାଧାରଣ ଜାଣନ୍ତି ନାହିଁ କି ଛାତ୍ରମାନେ ଜାଣନ୍ତି ନାହିଁ । ସେହି ପୁସ୍ତକ ବା Key ବହିକୁ ଛପାଇବା ପାଇଁ ପ୍ରକାଶକମାନେ ଆଗ୍ରହ ପ୍ରକାଶ କରନ୍ତି । ତାହାଦ୍ୱାରା ବ୍ୟବସାୟରେ ଲକ୍ଷ୍ମୀ ସାଧକମାନ ହୁଅନ୍ତି । କିନ୍ତୁ ରାଉରକେଲାରେ ଏପ୍ରକାର ବ୍ୟବସାୟ କଲେ ମଧ୍ୟ ବିକ୍ରୟ ପାଇଁ ସେମାନଙ୍କ ଉପରେ ନିର୍ଭର କରିବାକୁ ହେବ । ଏଇଥିପାଇଁ ରାଉରକେଲାରେ ସାହିତ୍ୟ ବିକାଶରେ ବ୍ୟାହତ ଘଟୁଛି ।

ହୋଇଛନ୍ତି । ଶ୍ରୀଯୁକ୍ତ ମିଶ୍ରଙ୍କ ଲେଖାରେ ରାହୁରକେଲା ତଥା ଆଖପାଖ ଅଞ୍ଚଳର ଐତିହାସିକ ତଥ୍ୟମାନ ସ୍ଥାପିତ ।

ସାହିତ୍ୟ ସଂସଦ ବ୍ୟତୀତ ଏଠାରେ ଅନେକ ଗୁଡ଼ିଏ ନାଟ୍ୟ ସଂସ୍ଥା ଅଛି । ଅନେକ ଅଭିନେତା ଏଠାରେ ରହୁଛନ୍ତି । ବିଶେଷ କରି ଲୋକନାଟକ ମହୋତ୍ସବ ପ୍ରତିବର୍ଷ ଅନୁଷ୍ଠିତ ହେଉଛି । ଏଣୁ ନାଟକର ଲୋକପ୍ରିୟତା ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ନାଟକ ରଚନାରେ ଯେଉଁମାନେ ପରିଚିତ ଓ ପ୍ରତିଷ୍ଠିତ ସେମାନଙ୍କ ମଧ୍ୟରେ ପୂର୍ଣ୍ଣ ମହାପାତ୍ର, ଚନ୍ଦ୍ରମଣି ଜେନା, ବୃନ୍ଦାବନ ଜେନା, କୃପାସିନ୍ଧୁ ନାୟକ, ଲଳାଟେନ୍ଦୁ ରଥ, ଶ୍ରୀଧର ଦାଲୁଆ ଓ ରମେଶ ଚନ୍ଦ୍ର ସାହୁ ଅଗ୍ରଣୀ ଅଟନ୍ତି । ଶ୍ରୀଯୁକ୍ତ ଲଲାଟେନ୍ଦୁ ରଥ ଶ୍ରେଷ୍ଠ ନିର୍ଦ୍ଦେଶକ ଭାବେ ସର୍ବଭାରତୀୟ ସ୍ତରରେ ପୁରସ୍କୃତ ହୋଇଛନ୍ତି । ଏହି ନାଟକ ଜଗତରେ ରାଉରକେଲା ଆମ ରାଜ୍ୟରେ ସ୍ୱତନ୍ତ୍ର ସ୍ଥାନ ଗ୍ରହଣ କରିଛି । ପ୍ରକୃତ ପକ୍ଷେ ରାଉରକେଲାରେ ନାଟ୍ୟଚର୍ଚ୍ଚା ସନ୍ତୋଷଜନକ ଅଟେ ।

ଆଦର୍ଶପାଠାଗାର ଦ୍ୱାରା ଭକ୍ତ ଜୟନ୍ତୀ ଓ କୋଣାର୍କ ସାଂସ୍କୃତିକ ପରିଷଦ ଦ୍ୱାରା କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଓ ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ସାହିତ୍ୟର ଯଥେଷ୍ଟ ପ୍ରଚାର ଓ ପ୍ରସାର ଘଟିଛି । ଡକ୍ଟର ଶ୍ରୀଚରଣ ମହାନ୍ତିଙ୍କ ସମ୍ପାଦିତ ଭଂଜସ୍ମୃତି ଶତ୍ରୁର- ଧାର ଓ ଶ୍ରୀ ଯୋଗେଶ୍ୱର ତ୍ରିପାଠୀଙ୍କ ହିନ୍ଦୀରେ ରୂପାନ୍ତରିତ ତପସ୍ୱିନୀ କାବ୍ୟ ତହିଁର ଜ୍ୱଳନ୍ତ ନିଦର୍ଶନ । ତଦ୍ରୂପ କବିପଣ୍ଡିତ ଗୋପୀନାଥ ବିଶେଷାଙ୍କ, ଲୋକନାଟକ ବିଶେଷାଙ୍କ, ପ୍ରଗତି ଉତ୍କଳ ସଂଘଦ୍ୱାରା ପ୍ରକାଶିତ ମଧୁବାବୁଙ୍କ ବକ୍ତୃତାବଳୀ (ଇଂରାଜୀ) ପୁସ୍ତକ ଗୋଟିଏ ଗୋଟିଏ ଅମୂଲ୍ୟ ଗ୍ରନ୍ଥ । ପରବର୍ତ୍ତୀ ସମୟରେ କବିବର ପରିଡ଼ାଙ୍କ ସମ୍ପାଦିତ ଅଭିମନ୍ୟୁ ମାନସ ଓ 'ଶାରଳାଶ୍ରୁତି' (ପ୍ରବନ୍ଧ ସଙ୍କଳନ)ରେ ବହୁ ଉପାଦେୟ ଲେଖା ପରିବେଷିତ ହୋଇଛି । ଇସ୍ପାତ ସାହିତ୍ୟ ସଂସଦ ଦ୍ୱାରା ପ୍ରକାଶିତ 'ଏଇ ନଇଯାଏ ବହି', 'ପଥର ବି କଥା କହେ' ଓ 'ରାହା' ମୁଦ୍ରଲାଭ କରିଛି । ଏହିଭଳି ଆହୁରି କେତେ ଖଣ୍ଡ ସଙ୍କଳନ ସାମୟିକଭାବେ ଓ ସମ୍ବର୍ଦ୍ଧନା ଅବସରରେ 'ଅଭିନନ୍ଦନ' ଗ୍ରନ୍ଥ ଭାବେ ପ୍ରକାଶିତ ହୋଇଛି ।

ଅନୁବାଦ ସାହିତ୍ୟ କ୍ଷେତ୍ରରେ ରାଉରକେଲାର ଭୂମିକା ଉଲ୍ଲେଖନୀୟ । ପଣ୍ଡିତ ବିଶ୍ୱମ୍ଭର ମହାପାତ୍ର, ଡକ୍ଟର ମାୟାଧର ମାନସିଂହ, ରାଧାମୋହନ ଗଡ଼ନାୟକ ଓ ସଚ୍ଚି ରାଉତରାୟଙ୍କର କେତୋଟି ସୁନିର୍ବାଚିତ କବିତାକୁ ସଂସ୍କୃତରେ ଅନୁବାଦ କରିଛନ୍ତି । ସଂସ୍କୃତ ସାହିତ୍ୟର ଦୁଇଟି ଅମୂଲ୍ୟ ଗ୍ରନ୍ଥ ଜୟଦେବଙ୍କର ଶ୍ରୀରାମ ଗୀତ ଗୋବିନ୍ଦ, ବିଲହଣଙ୍କର ଚୌର ପଞ୍ଚାଶିକା ଓ ବିଲ୍ୱମଙ୍ଗଳଙ୍କ କୃଷ୍ଣକର୍ଣ୍ଣାମୃତକୁ ଶ୍ରୀ କବିବର ପରିଡ଼ା ଓଡ଼ିଆରେ ଅନୁବାଦ ପୂର୍ବକ ସମ୍ପାଦନା କରିଛନ୍ତି । ଶ୍ରୀରାମ ଗୀତ ଗୋବିନ୍ଦ ପ୍ରକାଶ

ନିମନ୍ତେ ରାଜ୍ୟ ସରକାରଙ୍କଠାରୁ ଆର୍ଥିକ ଅନୁଦାନ ପାଇଛନ୍ତି । ରାଧୁ ମିଶ୍ର ଓ ବଳରାମ ଦାଶ ହିନ୍ଦୀରୁ କେତୋଟି ଗଳ୍ପକୁ ଓଡ଼ିଆରେ ଅନୁବାଦ କରିଥିଲା ବେଳେ ମଧୁସୂଦନ ସାହୁ ଓ ଡଃ ପ୍ରଶାନ୍ତ ତ୍ରିପାଠୀ କେତେକ ପୁସ୍ତକକୁ ହିନ୍ଦୀରେ ଅନୁବାଦ କରିଛନ୍ତି । ଡକ୍ଟର ଅର୍ଜୁନ ଶତପଥୀ ମଧ୍ୟ ହିନ୍ଦୀ ସାହିତ୍ୟ ଉପରେ ଉଚ୍ଚମାନର ପ୍ରବନ୍ଧ ସମାଲୋଚନା ଲେଖି ଯଶସ୍ୱୀ ହୋଇଛନ୍ତି ।

ବ୍ୟକ୍ତି ବିଶେଷଭାବେ ଡକ୍ଟର ଶ୍ରୀଚରଣ ମହାନ୍ତି, ଡକ୍ଟର ଶରତ ଚନ୍ଦ୍ର ନାୟକ ଓ ଡାକ୍ତର କୃପାସିନ୍ଧୁ ନାୟକ ସାଧନାରେ ବ୍ରତୀ ହୋଇ ନିଜର ଅଭିରୁଚିକୁ ଅଟୁଟ ରଖିଛନ୍ତି । ଶ୍ରୀଯୁକ୍ତ କୃପାସିନ୍ଧୁ ବାବୁ ସାମ୍ପ୍ରତିକ କବିତା ରଚନାରେ ବେଶ୍ ପରିଚିତ ଅଟନ୍ତି । କୃପାସିନ୍ଧୁ ବାବୁଙ୍କ ସବୁ କାବ୍ୟରେ ସମାଜ ଚେତନା ଓ ଜୀବନର ସ୍ୱରୂପ ରୂପାୟିତ ।

କବିଙ୍କର ସ୍ୱାକ୍ଷର ଓ ସ୍ୱରରେ ଅମୃତ ବଂଶୀର ମୂର୍ଚ୍ଛନା ଗୁଞ୍ଜରିତ । ଏଇପରିପ୍ରେକ୍ଷୀରେ କବି କୁଳମଣି ଜେନା ଓ କବି ସନତ୍ ରାୟଙ୍କ କାବ୍ୟ କୃତିକୁ ବିଚାର କରାଯାଇପାରେ । କବି କୁଳମଣି ଜେନା ରାଉରକେଲାରେ ରହୁଥିଲେ ହେଁ, ପ୍ରଗତିଶୀଳ କବିଭାବେ ବହୁ ପୂର୍ବରୁ ପରିଚିତ । ତାଙ୍କ କବିତାର ଧ୍ୱନି ଓଡ଼ିଶାରେ ଧ୍ୱନିମାନ ହୁଏ । କବି ରାୟ ମଧ୍ୟ କ୍ରାନ୍ତଦର୍ଶୀ ଭାବରେ ପରିଚିତ । ଶ୍ରୀ ରାୟଙ୍କ ଲେଖାରେ ସାଧାରଣ ଜନଜୀବନର ମର୍ମବ୍ୟଞ୍ଜନା ଅନୁରଣିତ । ଜଣେ ସଫଳ ବାସ୍ତବବାଦୀ କବିଭାବେ ସେ ପରିଚିତ ।

ସାହିତ୍ୟର ଅନ୍ୟ ବିଭାଗ ତୁଳନାରେ ରାଉରକେଲାରେ କବିତା ରଚନାରେ ବହୁ ଲେଖକ ପ୍ରୟାସୀ ଓ ବ୍ରତୀ ହୋଇଛନ୍ତି । କେବଳ ରାଉରକେଲା ନୁହେଁ, ସମଗ୍ର ରାଜ୍ୟରେ ଏ ଧାରା ପ୍ରବାହିତ । ତହିଁର କାରଣ—ନ କହିଲେ ଭଲ । ସମୟ ଉପରେ ନ୍ୟସ୍ତ କରାଯାଉ । ଅଗ୍ରଣୀ ଯୁବ କବିମାନଙ୍କ ମଧ୍ୟରେ ସ୍ୱରୂପ ମହାପାତ୍ର, ବୈଲୋଚନ ପାଣ୍ଡବ, ରାଜୀବ ପାଣି, ଉମେଶ ନାୟକ, କଲ୍ୟାଣ ସାହୁ, ବେଣୁଧର ନାୟକ, ନିତ୍ୟାନନ୍ଦ ନାୟକ, ସମରେନ୍ଦ୍ର ମହାନ୍ତି, ପରେଶ ବିଶ୍ୱାଳ, ରାଧାକୃଷ୍ଣ ମହାପାତ୍ର ଓ ଜବର ନାୟକଙ୍କ ଲେଖାରେ ସମ୍ଭାବନାର ପରିଚୟ ମିଳେ । ସେମାନଙ୍କର ସାଧନା ସଫଳ ହେବ, ଏ ଆଶା ମୋର ଅଛି ।

ସାହିତ୍ୟର ଅଗ୍ରଗତି ନିମନ୍ତେ ସମସ୍ତ ପ୍ରକାର ତ୍ୟାଗ ସ୍ୱୀକାର କରି ସ୍ୱୟଂଭୂ ପାଲଟିଛନ୍ତି, ସେ ହେଉଛନ୍ତି ଶ୍ରୀ ବଳରାମ ଦାଶ । ଗଳ୍ପ ରମ୍ୟରଚନା Parody ଲେଖକ ରୂପେ ପରିଚିତ । ଜଣେ ସୁଦକ୍ଷ ସଙ୍ଗଠକଭାବେ ତାଙ୍କର ସୁନାମ ଅଛି । ସାହିତ୍ୟ ଜଗତରେ ଶ୍ରୀ ଦାଶ ଏକ ଅମ୍ଳାନ ଚରିତ୍ରଭାବେ ପୂଜ୍ୟ । ତଦ୍ରୂପ ଦୀନବନ୍ଧୁ ପଣ୍ଡା ପ୍ରବନ୍ଧ ସମାଲୋଚନାରେ ଦକ୍ଷତା ଅର୍ଜନ କରିଥିଲେ ହେଁ, ସାଙ୍ଗଠନିକ କାର୍ଯ୍ୟରେ ମଧ୍ୟ ପ୍ରବୀଣ ଅଟନ୍ତି । ଶ୍ରୀ ବିଚିତ୍ରାନନ୍ଦ ସାହୁ ଓ ଶ୍ରୀ କାର୍ତ୍ତିକ ଚନ୍ଦ୍ର ସାହୁଙ୍କର ଭାଷା ସାହିତ୍ୟ-ପ୍ରୀତି, ଜାତୀୟ ଚେତନା ସର୍ବଜନ ବିଦିତ । ଶ୍ରୀ ବିଚିତ୍ରାନନ୍ଦ ସାହୁଙ୍କର ସାହାଯ୍ୟ ସହଯୋଗ ପ୍ରାୟତଃ ସତତ ଉନ୍ମୁକ୍ତ ।

ରାଉରକେଲାର ସାହିତ୍ୟ ଇତିହାସରେ ବିଚିତ୍ରା ନନ୍ଦଙ୍କ ନାମ ଅବିସ୍ମରଣୀୟ ହୋଇ ରହିବ । ସେହିଭଳି ମଧୁବାବୁଙ୍କର କୃତି ଓ ପ୍ରତିମୂର୍ତ୍ତି ନିମନ୍ତେ ଶ୍ରୀ ରାଧାନାଥ ରାଉତଙ୍କର ଅବଦାନ ଅଭିନନ୍ଦନୀୟ । ଏଭଳି କି, ଏ ସହରର ଗଳି କନ୍ଦିରେ ବୁନ୍ଦା ମାଗିଲାବେଳେ, ବହୁ ଲୋକ ଶ୍ରୀଯୁକ୍ତ ରାଉତଙ୍କୁ ପ୍ରତିରୋଧ କରିଛନ୍ତି । ତାହା ସତ୍ତ୍ୱେ ସେ କର୍ମପଥରୁ ବିରତ ହୋଇ ନାହାନ୍ତି । ଏଥିନିମନ୍ତେ ଗଳ୍ପ ପ୍ରବନ୍ଧ ରଚନାରୁ ଅପସରି ଯାଇଛନ୍ତି ।

ରାଉରକେଲାରେ କିଛି ବର୍ଷ ରହିଥିବା ବରିଷ୍ଠ ସାହିତ୍ୟିକମାନେ ବର୍ତ୍ତମାନ ବିଭିନ୍ନ ସ୍ଥାନରେ ଅବସ୍ଥାନ କରୁଛନ୍ତି । ସେମାନଙ୍କ ଦୃଷ୍ଟିରେ "ରାଉରକେଲା" ଏକ ପ୍ରବନ୍ଧ ଉପସ୍ଥାପିତ କରାଯାଇପାରେ ? ଯାହାହେଉ ଶ୍ରୀଯୁକ୍ତ ଲକ୍ଷ୍ମୀଧର ନାୟକ ଓ ଶ୍ରୀ ଶଶୀ-ଭୂଷଣ ମହାପାତ୍ରଙ୍କ ଦୃଷ୍ଟିରେ ରାଉରକେଲାର ସାମାଜିକ ଓ ଅର୍ଥନୀତିକ ବ୍ୟବସ୍ଥାର ସଫଳ ରୂପାୟନ ଲିପିବଦ୍ଧ ହୋଇଛି । ଭୂପେନ ମହାପାତ୍ର ରାଉରକେଲାରେ ବହୁ ସମୟ ବିତାଇଥିଲେ ହେଁ ବର୍ତ୍ତମାନ ଅନ୍ୟତ୍ର ରହୁଛନ୍ତି । ଭୂପେନବାବୁ ମଧ୍ୟ ରାଉରକେଲା ଜନତା ହୃଦୟରେ ଉଦ୍‌ବେଳିତ ସତ୍ୟର ସ୍ରୋତକୁ ଗଳ୍ପରେ ପ୍ରବାହିତ କରିଛନ୍ତି । ଏହିଭଳି ଅନେକ ସ୍ରଷ୍ଟାଙ୍କ ସୃଷ୍ଟିକୁ ଗ୍ରହଣ କରାଯାଇପାରେ ?

ଏହି ଦହଗଞ୍ଜ ସମସ୍ତ ମଧ୍ୟରେ ରାଉରକେଲାରେ ଗାଳ୍ପିକ ଓ ପ୍ରାବନ୍ଧିକଙ୍କର ଅଭାବ ଅନୁଭୂତ ହୁଏ । ପ୍ରବନ୍ଧ ସମାଲୋଚନାର reference ନିମନ୍ତେ ପୁସ୍ତକମାନ ମିଳେ ନାହିଁ । ଗଳ୍ପ ପ୍ରତି ଲେଖକମାନେ ଉଦାସୀନ ରହୁଥିବା ପରି ମନେହୁଏ ।

ଯାହାହେଉ, ଦଶ ବର୍ଷ ତଳର ସମସ୍ୟା ଅଧୁନା ପରିଦୃଷ୍ଟ ନହେଲେବି, ଆଦର୍ଶଗତ ଭାବେ ଲେଖକମାନଙ୍କ ମଧ୍ୟରେ ଉଗ୍ରତା ବୃଦ୍ଧିପାଇଛି । ଏହା ଏକ ବିରାଟ ସମସ୍ୟା ନହେଲେ ମଧ୍ୟ ଶୁଭଙ୍କର ନୁହେଁ ।

ସ୍ଥାନୀୟ ଲେଖକମାନଙ୍କୁ ଉତ୍ସାହ ଦେବା ନିମନ୍ତେ ଶାରଳା ସାଂସ୍କୃତିକ ପରିଷଦ ଆଧିକାରୀ ଶାରଳା ପୁରସ୍କାର ପ୍ରଦାନ କରିଛନ୍ତି । ଏହା ଅଭିନନ୍ଦନୀୟ ।

ମାତ୍ର ୨୫ ବର୍ଷ ମଧ୍ୟରେ ରାଉରକେଲାରେ ସାହିତ୍ୟର ଅଗ୍ରଗତି ସ୍ୱାଗତ ଯୋଗ୍ୟ । ସ୍ଥାନୀୟ ଜନସାଧାରଣ, ଅନୁଷ୍ଠାନ ଓ ପ୍ରତିଷ୍ଠାନର ସାହାଯ୍ୟ ସହଯୋଗ ଉଲ୍ଲେଖନୀୟ ଅଟେ । ରାଉରକେଲାରେ ସୃଷ୍ଟି ହୋଇଥିବା ସାହିତ୍ୟ ଏ ସହରରେ ଆବଦ୍ଧ ନ ହୋଇ ସମଗ୍ର ମାନବ ସମାଜ ପାଇଁ ଉତ୍ସର୍ଗୀକୃତ । ଏକଥା ଆମକୁ ସ୍ୱୀକାର କରିବାକୁ ହେବ । ରାଉରକେଲାରେ କେବଳ ଲୁହାରେ ଫୁଲଫୁଟେ ନାହିଁ, ଭକ୍ତରେ ମଧ୍ୟ ଫୁଲ ଫୁଟୁଛି । ସେ ଫୁଲର ମହକରେ ଆମ ଭାଷା ସାହିତ୍ୟ ମହକିତ । ସେ ସାହିତ୍ୟ ଚିର ସୁରଭିତ । ସ୍ରଷ୍ଟାଗଣ ମଧ୍ୟ ଯୁଗେ ଯୁଗେ ସମାଜର ଉଦ୍‌ଗାତା ଭାବେ ସମ୍ମାନିତ ହୋଇ ରହିବେ ।



# ରାଉରକେଲାରେ କଳା ଚର୍ଚ୍ଚା ଓ
# ମୋର କଳାକାର ଜୀବନ

**❋ ବଂଶୀଧର ଦ୍ୱିବେଦୀ**

୧୯୬୫ ମସିହା ମାର୍ଚ୍ଚ କମ୍ବା ଏପ୍ରିଲ ମାସ । କରୁଣ ଶିବଙ୍କ ଜଟା ଓଡ଼ିଶାର ପରି ରାଉରକେଲା ପାହାଡ଼ ଗଛରେ ନୂଆ ପଳାଶ ଫୁଲର ଡାଳ ପବନରେ ଦୋଳି ଖେଳୁଥାଏ । ରାଉରକେଲାରେ ପ୍ରଥମ ଲେଖା ଗୀତ ମନରେ ପଡ଼ୁଛି । "ଏଇ ଆକାଶରେ ଭରା ନୀଳିମା, ଏଇ ସୁନ୍ଦରେ ଭରା ଜୋଛନା, ଆଜ ପୃଥିବୀ ଧରଣୀର ବକ୍ଷ ମନକରେ କେତେ ଭାବନା" । କେତେ ଭାବନା କ'ଣ ? କାହିଁକି ?

ଶ୍ରୀ ନାରାୟଣ ଆଚାର୍ଯ୍ୟ, ରାଉରକେଲା ଲୁହା କାରଖାନାର ଜଣେ କର୍ମଚାରୀ । ମୋର ଦୂର ସମ୍ପର୍କୀୟ ଭଣଜା, ତାଙ୍କଠାରୁ ଶୁଣିଏ ଚିଠି ତା ସହିତ ରାଉରକେଲା ଆସିବା ବାଟଖର୍ଚ୍ଚ, ଏହିପରି ଦୁଇ ତିନଥର ପାଇଲା ପରେ ଆସିଛି ରାଉରକେଲା— ପଛରେ ଛାଡ଼ି ଆସିଲି କଳେ ସଙ୍ଗୀତ ଶିକ୍ଷା ଦେଉଥିବା କେତେ ଛାତ୍ର ଛାତ୍ରୀ, ଜଗନ୍ନାଥ ପ୍ରସାଦ ସ୍କୁଲରେ ତିଆରି କରିଥିବା ବୈତରଣୀ ଶିଶୁ ଶ୍ରୋତା ସମିତି । ପିଲମାନଙ୍କୁ ଶିଖାଇ ରେଡ଼ିଓ ରେକର୍ଡ଼ିଂ କରୁଥିବା ଅଭିମନ୍ୟୁ ନାଟକ, ରେଡ଼ିଓରୁ ଶୁଣିବା ପୂର୍ବରୁ ଚାଲି ଆସିଛି । ଅନେକ ମନର ସ୍ନେହ, ଶ୍ରଦ୍ଧା, ସମ୍ମାନ, ଫେରିଯିବି କି ରହିବି ମନରେ ଥିଲା ଏଇ ଭାବନା ।

ସେତେବେଳେ ରାଉରକେଲା ଓଡ଼ିଶାର କି ଆଉ କେଉଁ ପ୍ରଦେଶର ଅନ୍ୟ ପ୍ରଦେଶ ନବାଗତଙ୍କ ପାଇଁ ଥିଲା ଅଜଣା ପରି, ଅନେକଙ୍କ ମୁହଁରେ ବାହାରି ହୋଇଥିଲେ ବିହାରର, ବଙ୍ଗାଳି ହୋଇଥିଲେ ବଙ୍ଗଳାର, ମଧ୍ୟପ୍ରଦେଶର ଇତ୍ୟାଦି । ଅବଶ୍ୟ ସେମାନେ ଶିକ୍ଷିତ ଗୋଷ୍ଠୀର ନୁହଁନ୍ତି । ମୋ ଆସିବା ପୂର୍ବରୁ ଏଠାରେ କେତେ ଜଣ ପ୍ରତିଷ୍ଠିତ ସଙ୍ଗୀତଜ୍ଞ ଲୌହ କାରଖାନାର ସ୍କୁଲମାନଙ୍କରେ ସଙ୍ଗୀତ ମାଷ୍ଟର ଭାବରେ ସ୍ଥାନ ପାଇଥାଆନ୍ତି । ସେମାନେ ହେଲେ ୮ ଶ୍ରୀ ଅଭିରାମ ରାଓ, ଶ୍ରୀ ସ୍ୱରୂପ ମୁଖାର୍ଜି, ଶ୍ରୀ ନନ୍ଦକିଶୋର ଧଳ, ଶ୍ରୀ ପଦ୍ମନାଭ ସାହୁ, ସତ୍ୟନାରାୟଣ ପାଣି ଏବଂ ଶ୍ରୀ ନାରାୟଣ ଚନ୍ଦ୍ର ଦାସ । କହି ରଖୁଛି ରାଉରକେଲାରେ ସେତେବେଳେ ଜନସଂଖ୍ୟା କମ୍ । ସହର କ୍ରମ ବର୍ଦ୍ଧିଷ୍ଣୁ । ସେହି ସମୟରେ ସ୍କୁଲମାନଙ୍କରେ ଏମାନେ ସଙ୍ଗୀତ ଶିକ୍ଷକ ଭାବରେ ସ୍ଥାନ ପାଇଥିଲେ । କିନ୍ତୁ ଯେତେବେଳେ ସହର ଜନ ସଂଖ୍ୟା ବୃଦ୍ଧି ଓ ସଂସ୍କୃତିକୁ ଗ୍ରହଣ

କରିବା ପାଇଁ ଲୋକେ ଆଗ୍ରହ ପ୍ରକାଶ କଲେ, ଯିଏ ମନ ଯାଇଥିଲେ ସେମାନେ ଯାଇଥିଲେ । ଯେଉଁମାନେ ଥିଲେ ସେମାନଙ୍କୁ ସଙ୍ଗୀତ ଶିକ୍ଷକ ପଦବୀରୁ ଉଚ୍ଛେଦ କରାଯାଇଥିଲା । ଏତକ ବେଳେ ରାଉରକେଲାରେ ଦୁଇଟି ସଙ୍ଗୀତ ଅନୁଷ୍ଠାନ କିଛି କିଛି ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରୁଥିଲେ । ଲାଇଫ୍ ଏଣ୍ଡ ରିଦମ୍ ଏବଂ କଲଚରାଲ ଆସୋସିଏସନ୍ । ଲାଇଫ୍ ଏଣ୍ଡ ରିଦମ, ଗୀତ ଶିକ୍ଷକ ୰ ଶ୍ରୀ ନନ୍ଦନିଧି ଧଳ, ନୃତ୍ୟ ଶିକ୍ଷକ ସତ୍ୟନାରାୟଣ ପାଣିଙ୍କୁ ରଖି ପିଲାମାନଙ୍କୁ ଗୀତ ଓ ନୃତ୍ୟ ଶିଖାଉଥିଲେ । କଲଚରାଲ ଆସୋସିଏସନରେ ଶ୍ରୀ ଶ୍ୟାମା ଚରଣ ପତି ନୃତ୍ୟ ଶିକ୍ଷା ଦେଉଥିଲେ । ପ୍ରତିଷ୍ଠିତ ଛଉନୃତ୍ୟବିତ କେଦାର ନାଥ ସାହୁ ଓ ୰ ବରଞ୍ଜିନାରାୟଣ ରାଉତ ମଧ୍ୟ ଏହି ଅନୁଷ୍ଠାନରେ କେବେ କେବେ ନୃତ୍ୟ ନିର୍ଦ୍ଦେଶନା ଦେଇ କାର୍ଯ୍ୟକ୍ରମ ପ୍ରସ୍ତୁତ କରୁଥିଲେ । ଏମାନଙ୍କ ପୂର୍ବରୁ କଳିଙ୍ଗ କଳା ପରିଷଦ ନାମରେ ଗୋଟିଏ ଅନୁଷ୍ଠାନ ନୃତ୍ୟ, ଗୀତ ଶିକ୍ଷା ଦେଉଥିବାର ଶୁଣିଥିଲି । ଏ ସମୟରେ ଶିକ୍ଷିତ ମହଲରେ କେବଳ ହିନ୍ଦି ଓ ବଙ୍ଗଳା ଗୀତ ବିଶେଷ ପ୍ରଚଳନଥିଲା । କଲଚରାଲ ଆସୋସିଏସନର ଗୋଟିଏ ବ୍ରାଞ୍ଚ ପାଞ୍ଚନମ୍ବର ସେକ୍ଟର ମାକ୍ସ୍ୟୁମୁଲର ଭବନରେ ଚାଲୁଥାଏ, ଶ୍ରୀ ଶ୍ୟାମା ଚରଣ ପତି ନୃତ୍ୟ ଓ ଜଣେ ବଙ୍ଗାଳି ମାଷ୍ଟର ଗୀତ ଶିଖାଉଥିଲେ । ସେହିଠାରେ ଶ୍ରୀମତୀ ଅନ୍ନପୂର୍ଣ୍ଣା ଆଚାର୍ଯ୍ୟ ଗୀତ ଶିକ୍ଷା କରିବାକୁ ଯାଆନ୍ତି । ସେ ମୋଠାରୁ ଗାଁରେ ଥିଲାବେଳେ ଗୀତ ଶିଖୁଥିଲେ । ଅନେକ ଓଡ଼ିଆ ଗୀତ ଜାଣିଥିଲେ । ଶ୍ରୀ ଶ୍ୟାମା ଚରଣ ପତି ଏକଥା ଜାଣି ତାଙ୍କୁ କୌଣସି ଗୋଟିଏ କାର୍ଯ୍ୟକ୍ରମରେ ଓଡ଼ିଆ ଗୀତ ଗାଇବା ପାଇଁ ଅନୁରୋଧ କରିଥିଲେ । ଶିକ୍ଷିତ ମହଲରେ ହିନ୍ଦୀ ବଙ୍ଗଳା ଗୀତ ବୋଲା ଯାଉଥିଲା । ଅନ୍ନପୂର୍ଣ୍ଣାଙ୍କର ଓଡ଼ିଆ ଗୀତ ଶୁଣି କଲଚରାଲ ଆସୋସିଏସନ୍ର କର୍ମକର୍ତ୍ତାମାନେ ପତିଙ୍କ ଉପରେ ଅସନ୍ତୁଷ୍ଟ ହୋଇଥିଲେ । ରାଉରକେଲା ଓଡ଼ିଶାର ଓଡ଼ିଆ ଲୋକ, ଓଡ଼ିଆ ଭାଷା ଓ ସଂସ୍କୃତିକୁ ଏ ଅବମାନନା କାହିଁକି ? ଏକଥା ବାଧିଥିଲା ନାରାୟଣ ଆଚାର୍ଯ୍ୟ ଓ ତାଙ୍କର କେତେ ସାଥିଙ୍କୁ । ପରେ ଯେଉଁମାନଙ୍କ ପାଇଁ ପ୍ରସ୍ତୁତ ହେଲା ଏଠାରେ ଓଡ଼ିଆ ସଂସ୍କୃତିର ଭିତ୍ତିଭୂମି ।

ମୋର ଗୀତ ଏବଂ ନୃତ୍ୟରେ ଅଭିଜ୍ଞତା ଥିବା ଆଚାର୍ଯ୍ୟ ଜାଣିଥିଲେ । ତେଣୁ ମୋ ଉପରେ ଭରସା ରଖି ଟଙ୍କା ଓ ଚିଠି ପଠାଉଥିଲେ । ଶ୍ୟାମା ଚରଣ ପତି ତାଙ୍କୁ ପ୍ରତିଶ୍ରୁତି ଦେଇଥିଲେ ଯେ ମୋତେ ତାଙ୍କ ଅନୁଷ୍ଠାନରେ ରଖାଇବେ । କିନ୍ତୁ ମୁଁ ଆସିବା ପରେ ସେ ପ୍ରତିଶ୍ରୁତି ରକ୍ଷା କରି ପାରିନଥିଲେ ଏବଂ ଲାଇଫ୍ ଏଣ୍ଡ ରିଦମକୁ ରହିବା ଆଶାରେ ଯାଇ ମଧ୍ୟ ବିଫଳ ହୋଇଥିଲି । ସେଥିପାଇଁ ଆଚାର୍ଯ୍ୟ ଟିକେ ଚିନ୍ତିତ ହୋଇ ପଡ଼ିଥିଲେ । କିନ୍ତୁ ନିରାଶ ନୁହେଁ, ସେ ସେତେବେଳେ ସେକ୍ଟର-୨ ବି/୨୩୫ରେ ରହୁଥାନ୍ତି । ମୁଁ ଅନ୍ନପୂର୍ଣ୍ଣାଙ୍କୁ ଗୀତ ଅଭ୍ୟାସ କରାଏ । ଅନେକ ଆସନ୍ତି ଶୁଣିବା ପାଇଁ ସେମାନଙ୍କ ମଧ୍ୟରୁ ବି.ସି. ପଣ୍ଡାଙ୍କ ନାମ ଉଲ୍ଲେଖ ଯୋଗ୍ୟ । ସେ

ତାହାଙ୍କୁ ଭଲ ପାଇଲେ ମହା, ମହାନ ଇତ୍ୟାଦି ଶବ୍ଦରେ ଭୂଷିତ କରାଇଥାନ୍ତି । କିନ୍ତୁ ସେ ସଙ୍ଗୀତରେ ସ ଶବ୍ଦ ବିବର୍ଜିତ, ତେଣୁ ବିଶେଷଜ୍ଞଙ୍କୁ ଅଣାଇ ମୋତେ ପରୀକ୍ଷା କରାଗଲା । ଦୁଇଜଣ ପରୀକ୍ଷକ ଜଣେ ଦେବେନ୍ଦ୍ର ନାଥ ମହାନ୍ତି ଆଉ ଜଣେ ଦେବ ପରିଡ଼ା । ପରିଡ଼ା ପ୍ରକୃତ ନାମ ବିବେକା ନନ୍ଦ ପରିଡ଼ା, ଡାକନାମ ବି.ବି ବା ଦେବ ପରିଡା । ସେମାନେ ଗୀତ ଶୁଣି ଓ ନାଚ ଜାଣିଥିବାର ଜାଣି ଓ ଲେଖାଲେଖି କରୁଥିବାର ଦେଖି ସେ ବର୍ଷ ଭଞ୍ଜ ଜୟନ୍ତୀରେ ଗୋଟିଏ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା ପାଇଁ ମୋତେ ଅନୁରୋଧ କଲେ ।

ରାଉରକେଲାରେ ଯେତେବେଳେ ଦୁଇଟି ପାଠାଗାର ଅନୁଷ୍ଠାନ, ଗୋଟିଏ ଆଦର୍ଶ ପାଠାଗାର ଅନ୍ୟଟି ପ୍ରଗତି ଉତ୍କଳ ସଂଘ । ଓଡ଼ିଆ ସଂସ୍କୃତିର ବିକାଶ ଏମାନଙ୍କର ମୂଳଲକ୍ଷ୍ୟ । ଆଦର୍ଶ ପାଠାଗାରର ଭଞ୍ଜ ଜୟନ୍ତୀ ସେତେବେଳେ ରାଉରକେଲା ଓଡ଼ିଆ ମାନଙ୍କର ଗୋଟିଏ ଆଦରଣୀୟ ପର୍ବ । ଆଦର୍ଶ ପାଠାଗାର କଟକରୁ ଓଡ଼ିଶୀ ନୃତ୍ୟ-ଶିଳ୍ପୀମାନଙ୍କୁ ଅଣାଇ ଭଞ୍ଜ ଜୟନ୍ତୀର ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଉ-ଥିଲେ । ସେତେବେଳେ ଶ୍ରୀ ବନମାଳୀ ପଲାଇ ଆଦର୍ଶ ପାଠାଗାରର ସେକ୍ରେଟାରୀ ଥିଲେ । ବନମାଳୀ ପଲାଇ ଓ ଏନ. ମହାନ୍ତି ଏବଂ ଦେବ ପରିଡ଼ାଙ୍କ ଉତ୍ସାହରୁ ସମ୍ବଳ କରି ସେ ବର୍ଷର ଭଞ୍ଜ ଜୟନ୍ତୀ ପାଇଁ ଗୋଟିଏ କାର୍ଯ୍ୟକ୍ରମ ପ୍ରସ୍ତୁତ କରିଥିଲି । ୧୯୬୫ର ଭଞ୍ଜ ଜୟନ୍ତୀ ସେକ୍ଟର-୧୮ ହାଇସ୍କୁଲ ଖେଳପଡ଼ିଆରେ ପାଳିତ ହୋଇଥିଲା । ମନରେ ଅଛି ଭଞ୍ଜ ଜୟନ୍ତୀର ପ୍ରାରମ୍ଭିକ ସଙ୍ଗୀତ ନୂଆ ଲେଖିଥିଲି, ଯାହା ଅନେକ ଦିନ ପର୍ଯ୍ୟନ୍ତ ବୋଲା ଯାଇଥିଲା "ବନ୍ଦେ ଉତ୍କଳ ମାଟି ଦିବ୍ୟ ସମାଜ ମା'ଆଟି" ନୃତ୍ୟ କାର୍ଯ୍ୟକ୍ରମରେ ଓଡ଼ିଶୀ ନୃତ୍ୟ, କେଲା କେଲୁଣୀଙ୍କର ଓଡ଼ିଶାର ଶିଳ୍ପ ଋଦ୍ଧିକୁ ବୁଲିବା ଏବଂ କୃଷ୍ଣଙ୍କର ଭୂମିର ବେଶ । ଗୀତ କାର୍ଯ୍ୟକ୍ରମରେ ସଙ୍ଗୀତ ରୂପକ ଉପେନ୍ଦ୍ର ଭଞ୍ଜ । ଉପେନ୍ଦ୍ର ଭଞ୍ଜଙ୍କ ଜୀବନୀ ଉପରେ ଆଧାରିତ ସଙ୍ଗୀତ ରୂପକ ବାହାରେ କେଳର କେତେକ ଶ୍ରେଷ୍ଠ ବଡ଼ କଳାକାରଙ୍କୁ ନେଇ ପ୍ରସ୍ତୁତ କରିଥିଲି । ସେମାନଙ୍କ ମଧ୍ୟରୁ ବାଦକ ପଦ୍ମନାଭ ବେହେରା ଏବଂ ଗାୟକ ବିନୋଦ ଚନ୍ଦ୍ର ପଣ୍ଡା, ଗାୟିକା ଅନ୍ନପୂର୍ଣ୍ଣା ଆଚାର୍ଯ୍ୟ ନୃତ୍ୟରେ ଭାଗ ନେଇଥିଲେ, ସୁଲେଖା, ସୁରେଖା, ସୁଚନ୍ଦା ଘୋଷ ଏବଂ ଯଶୋଧାରା ଓ ଅଳକା ନନ୍ଦା ମିଶ୍ର । କାର୍ଯ୍ୟକ୍ରମ ଦର୍ଶକଙ୍କ ମନକୁ ପାଇଛିପାରିଲା ହେଲା । ସେବର୍ଷ ଭଞ୍ଜ ଜୟନ୍ତୀର ଶେଷ ଦିନ ଆମର କାର୍ଯ୍ୟକ୍ରମ ଥିଲା ଏବଂ ଭଞ୍ଜ କାବ୍ୟର ପ୍ରବୀଣ ଆଲୋଚକ ଶ୍ରୀ ରଜତ କୁମାର କର ଥିଲେ ମୁଖ୍ୟବକ୍ତା । ସେ କାର୍ଯ୍ୟକ୍ରମର ପ୍ରଶଂସା କରି କହିଥିଲେ ଯଦି ସଙ୍ଗୀତ ରୂପକଟିକୁ ନୃତ୍ୟ ନାଟିକା କରାଯାଇଥାନ୍ତା ଭଲ ହୋଇଥାନ୍ତା । ଏହାହିଁ ହେଲା ରାଉରକେଲାର ପିଲାମାନଙ୍କୁ ନେଇ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରିବାର ପ୍ରଥମ ରୂପାୟନ ।

ସ୍ୱରବେଲରେ ଗୋଟିଏ ରୁଚିସମ୍ପନ୍ନ ନୃତ୍ୟ ସଙ୍ଗୀତ ଅନୁଷ୍ଠାନ ଗଠନ କରିବା ସହଜ ନଥିଲା । ଏଠାରେ ପ୍ରାୟ ବେଶି ଭାଗ ଶିକ୍ଷିତ ଓ ଛାତ୍ରମାନଙ୍କର କାର୍ଯ୍ୟକ୍ରମ ଏମାନଙ୍କର ରୁଚି ସେମାନଙ୍କର କାର୍ଯ୍ୟକ୍ରମ ଟିକିଏ ଆସ୍ୱାଦ ସାଧ ଓ ସମସ୍ତ ସାପେକ୍ଷ ସେଥିପାଇଁ ଦରକାର ଉପଯୁକ୍ତ ଗୁରୁ, ବାଦ୍ୟ, ବାଦକ, ଗାୟକ, ଗାୟିକା, ଅଭ୍ୟାସୀ ଛାତ୍ର ଛାତ୍ରୀ ଏସବୁ ସମନ୍ୱୟରେ ଗୋଟିଏ ରୁଚିସମ୍ପନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ ସମ୍ଭବ ଏବଂ ଏହା ସମସ୍ତ ସାପେକ୍ଷ । କିନ୍ତୁ ମୋର ମୀତଥିଲା ସୁଦାମାର ଖୁଦଭଜାରେ ଯେବେ ଦ୍ୱାରକାପତି ଶ୍ରୀକୃଷ୍ଣ ସନ୍ତୁଷ୍ଟ ହେବେ ମୋର ସାମାନ୍ୟତମ ଜ୍ଞାନ ଲୋକଙ୍କ ଉପଯୋଗୀ ନହେବ କାହିଁକି ? ନୂଆ ନୃତ୍ୟ ପାଇଁ ଗୀତ ରଚନା ଗୀତ ଗାଇବା ଶିଖାଇବା ନୂଆ ନୂଆ ପିଲାମାନଙ୍କୁ ସ୍ୱଭାବକୁ ନେଇ ନୃତ୍ୟ ପରିକଳ୍ପନା ସର୍ବୋପରି କାର୍ଯ୍ୟକ୍ରମ ଭାବରେ କାର୍ଯ୍ୟକ୍ରମର ପରିବେଷଣ ଶୈଳୀ ନିର୍ଦ୍ଧାରଣ କରିବା ଓ ସମାଲୋଚନାକୁ ନମ୍ରତାର ସହିତ ଗ୍ରହଣ କରିବାରେ କାର୍ଯ୍ୟକ୍ରମର ମାନବୃଦ୍ଧି କରିବା । ଏହି ସବୁ ନିୟମ ରକ୍ଷାକରୁ ଥିବାରୁ ଏଠାରେ ନୃତ୍ୟ ସଙ୍ଗୀତ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ସମ୍ଭବ ହୋଇଥିଲା । ନୂଆ ପିଲାମାନଙ୍କୁ ନେଇ ନୃତ୍ୟ "ପୋଷଷ୍ଟ ରୁଠେ" ମେହେର ଜୟନ୍ତୀର ସାଂଭାବନବାସ ଇତ୍ୟାଦି ଯେଉଁମାନେ ଦେଖିଛନ୍ତି ସେମାନେ ଏହା ଅବଶ୍ୟ ସ୍ୱୀକାର କରିବେ ।

ପ୍ରଥମ ଅନୁଷ୍ଠାନ "ଉତ୍କଳ ମୈତ୍ରୀ ସଙ୍ଗୀତ କଳାପୀଠ" ର ଶୁଭାରମ୍ଭ ଆଚାର୍ଯ୍ୟଙ୍କ ଘରେ ଆରମ୍ଭ କରିଥିଲି । ପିଲାମାନଙ୍କୁ ବିଧିବଦ୍ଧ ଶିକ୍ଷାଦାନ ସେକ୍ଟର-୬, କମ୍ୟୁନିଟି ସେଣ୍ଟରରେ । ପିଲା ଗୁଡ଼ି ପାଞ୍ଚରୁ ଆସ୍ତେ ବଢ଼ୁଥାଆନ୍ତି । ଅନୁଷ୍ଠାନକୁ ବିଧିବଦ୍ଧ ଭାବରେ ସ୍ୱରବେଲର ଓଡ଼ିଆମାନଙ୍କ ସ୍ୱୀକୃତି ଓ ବିଶ୍ୱାସଭାଜନ କରାଇବା ପାଇଁ ଇଞ୍ଜିନିୟରିଙ୍ଗ କଲେଜଠାରୁ ତେର ନମ୍ବର ସେକ୍ଟର ପର୍ଯ୍ୟନ୍ତ ପାଦରେ ଚାଲି ସ୍ୱରବେଲ ବନୋବା ଆଖ୍ୟା ଗ୍ରହଣ କରିଛୁ । କୋଣାର୍କ ସାଂସ୍କୃତିକ ପରିଷଦ ତରଫରୁ ମେହେର ଜୟନ୍ତୀ କରିବା ସମୟରେ ଅଚ୍ୟୁତାନନ୍ଦ ମେହେର ନାମରେ ଜଣେ କଳାକାରଙ୍କୁ ସହଯୋଗୀ ପାଇଥିଲି ଏବଂ ସେ ବର୍ତ୍ତମାନ ପର୍ଯ୍ୟନ୍ତ ବାଦକ ଭାବରେ ମୋର ସହଯୋଗୀ ହୋଇଛନ୍ତି ।

୧୯୬୭ ମସିହାରେ ଆଦର୍ଶ ପାଠାଗାରର କରିତକର୍ମୀ ସେକ୍ରେଟେରୀ ବନମାଳୀ ପଣ୍ଡାଙ୍କ ଉଦ୍ୟମରେ ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ଦ୍ୱାରା ଆଜିର ଭଞ୍ଜ ଭବନ ଶିଳାନ୍ୟାସ କରାଗଲା । ସେ ବର୍ଷ ସଙ୍ଗୀତ ରୂପକ ଉପେନ୍ଦ୍ର ଭଞ୍ଜ ନୃତ୍ୟ ନାଟିକା ରୂପରେ ପରିବେଷଣ କରାଇଥିଲି । ଏହି ନୃତ୍ୟ ନାଟିକାରେ କେତେ ଜଣ ଇସ୍ପାତ କାରଖାନାର କର୍ମଚାରୀ ଅଂଶ ଗ୍ରହଣ କରିଥିଲେ । ତନ୍ମଧ୍ୟରୁ କାଳୀ ଭୂମିକାରେ ଛଉନୃତ୍ୟ ଶିଳ୍ପୀ ବଦ୍ରିପ୍ରସାଦ ଏବଂ ସାଧକ ଭୂମିକାରେ ରାଧାନାଥ ରାଉତଙ୍କ ନାମ

ଉଲ୍ଲେଖଯୋଗ୍ୟ । ବାଦ୍ୟଯନ୍ତ୍ରରେ ବେହେଲା ବାଦକ ଲଳିତ ମୋହନ ବେହେରା (ଇଞ୍ଜିନିଅରିଂ କଲେଜ) ନୂତନ ଭାବରେ ଆମ ସାଙ୍ଗରେ ଯୋଗ ଦେଇଥିଲେ ଏବଂ ତାଙ୍କର ଦୁଇଝିଅ ବିଜୟଲକ୍ଷ୍ମୀ ଓ ସରସ୍ୱତୀ ନୃତ୍ୟରେ ଅଂଶ ଗ୍ରହଣ କରିଥିଲେ । ସେହି ବର୍ଷ ଆଦର୍ଶ ପାଠାଗାର ଗୋପବନ୍ଧୁ ଜୟନ୍ତୀ ସମାରୋହରେ ଗୋପବନ୍ଧୁଙ୍କ ଲିଖିତ ଧର୍ମ ପଦକୁ ଗୋଟି ନୃତ୍ୟ ନାଟିକା କରିଥିଲି । ଏହି ନୃତ୍ୟ ନାଟିକା ଦେଖି ରାଉରକେଲା ଓଡ଼ିଆଙ୍କ ମନରେ ଏକ ପ୍ରକାର ସାଂସ୍କୃତିକ ନବଜାଗରଣ ସୃଷ୍ଟି ହୋଇଥିଲା । ଏହି ସବୁ କାର୍ଯ୍ୟକ୍ରମ ପରିବେଷଣରେ ମୁଁ ରାଉରକେଲା ବାସୀଙ୍କର ବେଶ ପ୍ରିୟ ହୋଇ ପାରିଥିଲି । ଅନେକଙ୍କ ଈର୍ଷାର ବି ଶିକାର ହୋଇଥିଲି, ତାଆରି ଫଳରେ ୬ ନମ୍ବର କମ୍ୟୁନିଟି ସେଣ୍ଟରରେ ମୋତେ କ୍ଲାସ କରିବାକୁ ମିଳି ନଥିଲା । କିନ୍ତୁ ଈଶ୍ୱରଙ୍କ ଉଦ୍ଦେଶ୍ୟ ଅନ୍ୟ ପ୍ରକାର । ଅନୁଷ୍ଠାନ ବଞ୍ଚିଥିଲା । ଯେଉଁମାନଙ୍କ ଯୋଗେ ବଞ୍ଚିଥିଲା ତନ୍ମଧ୍ୟରୁ ଡକ୍ଟର ଶିଶିର ମିଶ୍ର, ଏନ୍.ଏନ୍. ମହାନ୍ତି ଏବଂ ଗଣେଶ ପ୍ରସାଦ ମିଶ୍ରଙ୍କ ନାମ ଉଲ୍ଲେଖ ଯୋଗ୍ୟ ନାରାୟଣ ଆଚାର୍ଯ୍ୟ ତ ଅକୁଣ୍ଠ ଚିତ୍ତରେ ସବୁ କରୁଥିଲେ । ତାଙ୍କ ଘରେ ଏବଂ ଉପରୋକ୍ତ ବ୍ୟକ୍ତିମାନଙ୍କ ଘରେ ପିଲାମାନଙ୍କୁ ଶିଖାଇ ଅନୁଷ୍ଠାନଟିକୁ ଆଗେଇ ନେଇଥିଲି । ବେବି ପରିଡାଙ୍କ ସାହାଯ୍ୟରେ ୧୮ ନମ୍ବର କମ୍ୟୁନିଟି ସେଣ୍ଟରରେ ଗୋଟିଏ କ୍ଲାସ ଆରମ୍ଭ କରିଥିଲି ଏବଂ ପଦ୍ମନାଭ ସାହୁଙ୍କ ପରାମର୍ଶକ୍ରମେ ଅନୁଷ୍ଠାନକୁ ପ୍ରୟାଗ ସମିତି ଏଲାହାବାଦ ର ସ୍ୱୀକୃତି ଲାଭ କରାଇଥିଲି । ଏଠାରେ ଏସ୍.ଆର. ବାଗ୍ଚି ନାମକ ଜଣେ ବଙ୍ଗାଳି ସଙ୍ଗୀତଜ୍ଞଙ୍କ ନାମ ଉଲ୍ଲେଖଯୋଗ୍ୟ । ରାଉରକେଲାରେ ଶ୍ରୀ ବାଗ୍ଚି "ଶାଶ୍ୱତୀ ସଙ୍ଗୀତାଳୟ" ନାମକ ଗୋଟିଏ ଅନୁଷ୍ଠାନ ପ୍ରୟାଗ ସଙ୍ଗୀତ ସମିତିରୁ ସ୍ୱୀକୃତି ଲାଭ କରାଇ ଚଳାଉଥାନ୍ତି । ଏହା କେବଳ ଶାସ୍ତ୍ରୀୟ ସଙ୍ଗୀତ ନୃତ୍ୟ ଇତ୍ୟାଦି ଶିଖିବାର ଅନୁଷ୍ଠାନ । ଏହି ଅନୁଷ୍ଠାନକୁ ଜଣେ ବିଖ୍ୟାତ କଥକ ନୃତ୍ୟଗୁରୁ ନାମ ଫିର୍ତ୍ତି ମହାରାଜ ନୃତ୍ୟ ଶିକ୍ଷା ଦେବା ପାଇଁ ଆସୁଥାନ୍ତି । ତାଙ୍କର ଅନୁଷ୍ଠାନରେ ପିଲାମାନଙ୍କୁ ପ୍ରଥମେ ପରୀକ୍ଷା ଦିଆ କରାଇଥିଲି । ସେ ଜଣେ ଅମାୟିକ ପ୍ରକୃତିର ଲୋକ ହୋଇଥିବାରୁ ଏଠାରୁ ଯିବା ପର୍ଯ୍ୟନ୍ତ ତାଙ୍କ ସଙ୍ଗରେ ମୋର ଭଲ ସମ୍ପର୍କ ରହି ଆସିଥିଲା ।

୧୯୬୭ ମସିହା ଭଞ୍ଜ ଜୟନ୍ତୀରେ ଲାବଣ୍ୟବତୀ କାବ୍ୟ ଅବଲମ୍ବନରେ ବର୍ଷା ଶରତ ନୃତ୍ୟ ନାଟିକା ପରିବେଷଣ କରିଥିଲି । ଆଜି ମୋ ମନରେ ପଡୁଛି ସେ ସମୟର ଭଞ୍ଜ ଜୟନ୍ତୀକୁ ଓଡ଼ିଆ ଯେପରି ଉତ୍ସାହ ମଧ୍ୟରେ ଉପଭୋଗ କରୁଥିଲେ ତାହା ଅତି ଆଶ୍ଚର୍ଯ୍ୟର କଥା । ବିଶେଷତଃ ଆମ ତରଫରୁ ଯେଉଁ ଦିନ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଏ ସେଦିନ ବହୁତ ଲୋକ ସନ୍ଧ୍ୟା ନହେଉଣୁ ଆସି କାଗଜପାରି ଜାଗା ରଖୁଥିଲେ । ଭଞ୍ଜ ମଞ୍ଚଠାରୁ ରଙ୍ଗରୋଡ଼ ପର୍ଯ୍ୟନ୍ତ ଲୋକାରଣ୍ୟ ହୋଇ ଉଠୁଥିଲା । କିନ୍ତୁ ଆଜି ସେ ଉତ୍ସାହ ମଉଳି ପଡ଼ିଲା ପରି ଜଣାଯାଉଛି; କାହିଁକି ? ଏତେ ବେଳକୁ ଭଞ୍ଜ ମଣ୍ଡପର ପରିବର୍ତ୍ତନ ହୋଇଥିଲା । ଏହା ମାଟି ରୂପ ପକ୍କା

ରୂପଧାରଣ କରିଥିଲି । ଏତେ ବେଳକୁ ଲାଇଫ୍ ଏଣ୍ଡ ଶଦମର ନୃତ୍ୟ ସଙ୍ଗୀତ ଶିକ୍ଷା-ଦାନ ମାନ୍ଦା ଅବସ୍ଥା ଏବଂ ଶ୍ୟାମା ଚରଣ ପଣ୍ଡ କଲକତ୍ତାର ଆସୋସିଏସନ ଗ୍ରୁଡ଼ିବାକୁ ବସିଲେଣି । ଏହି ମସିହାରେ ଓଡ଼ିଶାର ଖ୍ୟାତନାମା ନୃତ୍ୟ ଗୁରୁ କେଳୁ ଚରଣ ମହାପାତ୍ରଙ୍କ ସହିତ ସାକ୍ଷାତ ହୁଏ ଓ ତାଙ୍କ ପରାମର୍ଶ ମତେ ଛଅମାସ ପାଇଁ କଳା-ବିକାଶ କେନ୍ଦ୍ରକୁ ଶାସ୍ତ୍ରୀୟ ଓଡ଼ିଶୀ ନୃତ୍ୟ ଶିଖିବା ପାଇଁ ଗଲି ସେଠାରେ ନୃତ୍ୟଶିକ୍ଷା ସମୟରେ ଦିନେ ଗୁରୁ ଦେବଙ୍କୁ ପଚାରିଲି, ଆପଣଙ୍କ ମତେ ଶାସ୍ତ୍ରୀୟ ଓଡ଼ିଶୀ ନୃତ୍ୟ ଶିଖାଇବା ପାଇଁ କହିଲେ ଶାସ୍ତ୍ର କାହିଁ ? ଉତ୍ତରରେ ଗୁରୁଦେବ ଖଣ୍ଡିଏ ଅଭିନୟ ଦର୍ପଣ ବହି ଦେଲେ । ମୁଁ ତାକୁ ପଢି ଜାଣିଲି ସେ ଶାସ୍ତ୍ର ଓଡ଼ିଶୀ ନୃତ୍ୟ ପାଇଁ ନୁହେଁ । ତାହା ସୌରାଷ୍ଟ୍ର ଦେଶ ପାଇଁ ଏବଂ ତାହା ଅସମ୍ପୂର୍ଣ୍ଣ କମ୍ପା ଲେଖକ ନନ୍ଦକିଶୋର ସେଠକ ଲେଖିଛନ୍ତି । (ଆଙ୍ଗିକା, ବାଚକା, ଆହାର୍ଯ୍ୟ ଓ ସାତ୍ୱିକ) ଅଭିନୟର ଏହି ଚାରୋଟି ବିଷୟରୁ କେବଳ ଆଙ୍ଗିକା ବିଷୟଟି ତହିଁରେ ଲିପିବଦ୍ଧ । ଏକଥା ଗୁରୁ ଦେବଙ୍କୁ କହିବାରୁ, ଗୁରୁଦେବ ମତେ କଳାବିକାଶ କେନ୍ଦ୍ରର ଜଣେ ସକ୍ରିୟ ସଭ୍ୟ ଶ୍ରୀ ନୀଳମାଧବ ବୋଷଙ୍କୁ ଦେଖାଇ କହିଲେ ଆଉ ଯାହା ଖୋଜୁଛ ତାଙ୍କଠାରୁ ପାଇବ । ପଚାରି ଥିଲି ଆପଣ ଯାହା ଶିଖାଉଛନ୍ତି ? ଉତ୍ତର ପାଇଥିଲି, ମନ୍ଦିର ମୂର୍ତ୍ତିମାନଙ୍କୁ ଅନୁକରଣ କରି । ଯାହା ହେଉ ଶ୍ରୀ ନୀଳମାଧବ ବାବୁଙ୍କଠାରେ ମୁଁ କୃତଜ୍ଞ । ଶ୍ରୀ ସଦାଶିବ ରଥ ଶର୍ମାଙ୍କ ସଂଗୃହୀତ ମହେଶ୍ୱର ମହାପାତ୍ରଙ୍କ ଲିଖିତ ସଂସ୍କୃତ ଏବଂ ହିନ୍ଦୀରେ ଗ୍ରନ୍ଥ ଅଭିନୟ ଚନ୍ଦ୍ରିକା ବହି ଖଣ୍ଡିଏ ମତେ ଆଣି ଦେଇଥିଲେ । ଏହି ପୁସ୍ତକଟି ଓଡ଼ିଶୀ ନୃତ୍ୟ ସମ୍ପର୍କୀୟ ପ୍ରମାଣିକ ପୁସ୍ତକ ଏବଂ ପରେ ନୃତ୍ୟ ଶିକ୍ଷା ଦେବାରେ ମୋର ବିଶେଷ ସହାୟକ ହୋଇଥିଲା । ତାପରେ ୬ ଡଃ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ପରାମର୍ଶକ୍ରମେ ସଙ୍ଗୀତ ନାଟକ ଏକାଡେମୀ ହିନ୍ଦୀ ଏବଂ ସଂସ୍କୃତର ମୂଲ୍ୟାଙ୍କନ ହୋଇ-ନଥିବା ଖଣ୍ଡିଏ ଓଡ଼ିଶୀ ନୃତ୍ୟ, ସଙ୍ଗୀତ, ବାଦ୍ୟ ଏବଂ ନାଟ୍ୟର ତଥ୍ୟ ସମ୍ବଳିତ ପୁସ୍ତକ "ସଙ୍ଗୀତ ନାରାୟଣ" ପାଇଲି । କହିଲେ ଦୁଃଖ ଲାଗୁଛି ଏପରି ଶାସ୍ତ୍ର ଓଡ଼ିଶାର ଆଉଁ ଥାଉଁ ଆମେମାନେ ଅନଭିଜ୍ଞ । ଓଡ଼ିଶାର ସଙ୍ଗୀତ ନାଟକ ଏକାଡେମୀ ଛପାଇଛନ୍ତି ସଂସ୍କୃତ ଏବଂ ହିନ୍ଦୀରେ । ଶାସ୍ତ୍ରଟି ୧୭୦୦ ଖ୍ରୀ ରେ, ଲେଖକ ଓଡ଼ିଆ, ପୋଥି ଅଛି ଓଡ଼ିଆରେ ବହୁତ, କିନ୍ତୁ ଆମେ ତାହାକୁ ଅନୁସରଣ କରି ନୃତ୍ୟ ସଙ୍ଗୀତର ମାନବୃଦ୍ଧି କରିପାରୁ ନାହୁଁ । ମୁଁ ଦୃଢ ସ୍ୱରରେ କହିବି ଏହି ଶାସ୍ତ୍ର ଭାରତୀୟ ନୃତ୍ୟ, ସଙ୍ଗୀତ, ବାଦ୍ୟ ଓ ନାଟ୍ୟ କ୍ଷେତ୍ରକୁ ଓଡ଼ିଶାର ଅମୂଲ୍ୟଦାନ ଅଟେ । ଅଭିନୟ ଚନ୍ଦ୍ରିକା ଓ ସଙ୍ଗୀତ ନାରାୟଣ ଶାସ୍ତ୍ର ଦୁଇଟିକୁ ମୁଁ ଓଡ଼ିଆ ଅନୁବାଦ କରିଛି । ଅର୍ଥ ଓ ସମୟର ସୁଯୋଗ ଆସିଲେ ଛପା ହେବାର ଆଶା ରଖିଛି ।

କଟକରେ ଥିବାବେଳେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ସହିତ ବିଶେଷ ସମ୍ପର୍କ ରଖିଥାଏଁ । ମୋ ଲେଖା କବିତା ଗୀତ ଶୁଣନ୍ତି ଏବଂ କପରି ଭଲ ହେବ

ପରାମର୍ଶ ଦଅନ୍ତି । ତାଙ୍କର ଘରେ ଓଡ଼ିଶାର ବିଖ୍ୟାତ ଲେଖକ କବି ୰ ମାନସିଂହଙ୍କ ଠାରୁ ଆରମ୍ଭ କରି ଓଡ଼ିଶା ସଙ୍ଗୀତର ଅପୂର୍ବ ତାରକା ୰ ସିଂହାରି ଶ୍ୟାମ ସୁନ୍ଦର କରଙ୍କ ସହିତ ବେଶ୍ ସମ୍ପର୍କ ହୋଇ ପାରିଥିଲା ଏବଂ ତାଙ୍କର ଉତ୍ସାହରେ ଓଡ଼ିଶୀ ଗୀତ ଲେଖିବା ଶାସ୍ତ୍ର ଅଧ୍ୟୟନ କରିବାରେ ବିଶେଷ ସହାୟକ ହୋଇଥିଲା । କାଳୀବାବୁଙ୍କ ଅନୁରୋଧକ୍ରମେ ରାଉରକେଲାକୁ ଜଣେ ନୃତ୍ୟ ଶିକ୍ଷକ ଆଣିବାକୁ ନିଷ୍ପତ୍ତି କରିଥିଲି । କାରଣ ମୁଁ ଏକୁଟିଆ ଗୀତ ନୃତ୍ୟ ଦୁଇଟି ଚଳାଇବା ସମ୍ଭବପର ନୁହେଁ । ତେଣୁ ରାଉରକେଲା ଫେରିଲାବେଳକୁ ନାରାୟଣ ରାଉତ ନାମକ ସଦ୍ୟ ଶିକ୍ଷାର୍ଥୀ ନୃତ୍ୟ ଶିକ୍ଷକଙ୍କୁ ରାଉରକେଲା ଆଣିବାର ବନ୍ଦୋବସ୍ତ କରିଦେଇ ଆସିଲି । ୧୯୬୮ ମସିହା ରାଉରକେଲା ଫେରିଆସି ସେକ୍ଟର-୪ ସ୍କୁଲ, ସେକ୍ଟର-୨୦ କମ୍ୟୁନିଟି ସେଣ୍ଟରରେ ଦୁଇଟି ନୃତ୍ୟ ଶିକ୍ଷା କେନ୍ଦ୍ର ସ୍ଥାପନ କଲି । ଏହି କେନ୍ଦ୍ର ସ୍ଥାପନ କରିବାରେ ୪ ନମ୍ବରର ଶ୍ରୀ ପ୍ରଫୁଲ୍ଲ କୁମାର ଜେନା ଏବଂ ୨୦ ନମ୍ବର ଇଉ ପି. ପାତ୍ରୀଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । ପ୍ରାୟସବୁ କାମ ଶ୍ରୀ ନାରାୟଣ ଆଚାର୍ଯ୍ୟ, ଡ଼ି. ଏନ୍ ମହାନ୍ତି ଏବଂ ଦେବୀ ପରିଡ଼ାଙ୍କ ପରାମର୍ଶ କ୍ରମେ କରାଯାଉଥାଏ । ସେହି ମାନଙ୍କର ଏବଂ ଶ୍ରୀ ବନମାଳୀ ପଲାଇ ପରାମର୍ଶରେ ଅନୁଷ୍ଠାନର ନାମ ଭଞ୍ଜ କଳା କେନ୍ଦ୍ର ରଖାଗଲା । ଉତ୍କଳ ମୈତ୍ରୀ ସଙ୍ଗୀତ କଳା ପୀଠର ଭିନ୍ନ ରୂପ ହେଲା ଭଞ୍ଜ କଳା କେନ୍ଦ୍ର । ଭଞ୍ଜ କଳା କେନ୍ଦ୍ରକୁ ବିଧିବଦ୍ଧ ଅନୁଷ୍ଠାନ ଭାବରେ ଗଢ଼ିବା ପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନ ଆବଶ୍ୟକ । ବର୍ତ୍ତମାନର ଭଞ୍ଜ ଭବନଟି ସେତେବେଳେ ଅରମା, ଅସନା ହୋଇ ପଡ଼ିଥିଲା । ମୁଁ ବହୁ ପରିଶ୍ରମ କରି କର୍ମ-କର୍ତ୍ତାଙ୍କଠାରୁ ଗୋଟିଏ ଘର ନେଇ ସେହି ଘରେ ଲେଖାଲେଖି ଆରମ୍ଭ କଲି । ପରେ ପଦ୍ମନାଭ ସାହୁଙ୍କ ସ୍ୱେଚ୍ଛାକୃତ ଦାନ ଖଣ୍ଡିଏ ହାରମୋନିୟମ ପାଇ ସେଠାରେ ସମସ୍ତଙ୍କ ନାହିଁ ନାହିଁ ସତ୍ତ୍ୱେ ରବିବାର ଦିନ ଗୋଟିଏ ଗୀତ କ୍ଲାସ ଆରମ୍ଭ କଲି ଏବଂ ସେଥିରେ ଉନ୍ନତି ପରିଲକ୍ଷିତ ଦେଖି ସପ୍ତାହରେ ଦୁଇଦିନ ସେଠାରେ ଗୀତ ନାଚକ୍ଲାସ ଚାଲିଲା । ସର୍ବସମ୍ମତିକ୍ରମେ ଡ଼ି.ଏନ୍. ମହାନ୍ତିଙ୍କୁ ଭଞ୍ଜ କଳା କେନ୍ଦ୍ରର ସେକ୍ରେଟେରି ଦାୟିତ୍ୱ ଦିଆଗଲା । ସେତେବେଳେ ସଙ୍ଗୀତରେ ମାଷ୍ଟର ଡ଼ିଗ୍ରୀ ହାସଲ କରିଥିବା ପଦ୍ମନାଭ ସାହୁଙ୍କୁ ଅଧ୍ୟକ୍ଷ ଭାବରେ ସ୍ୱୀକାର କରାଗଲା ।

ନାରାୟଣ ଆଚାର୍ଯ୍ୟ କଟକ ଯିବା ଆସିବା କରି ଅନୁଷ୍ଠାନଟିକୁ ସରକାରଙ୍କର ରେଜେଷ୍ଟ୍ରିଭୁକ୍ତ କରାଇଲେ ଏବଂ ଅନୁଷ୍ଠାନର ଉଦଘାଟନ ଉତ୍ସବ ପ୍ରଧାନ ଅତିଥି କବି ଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଏବଂ ସେତେବେଳେ ଏଠାକାର ଡ଼ି.ଆଇ.ଜି. ଥିବା ସୁନାମଧନ୍ୟ ପୋଲିସ ଅଫିସର ଶ୍ରୀ ଗୋବିନ୍ଦ ଚନ୍ଦ୍ର ସେନାପତିଙ୍କ ପୌରୋହିତ୍ୟରେ ସେକ୍ଟର-୧୮ କମ୍ୟୁନିଟି ସେଣ୍ଟରରେ ପାଳିତ ହୋଇଥିଲା । ଭଞ୍ଜ ଜୟନ୍ତୀ ପାଇଁ ତ କାର୍ଯ୍ୟକ୍ରମ ପ୍ରସ୍ତୁତ କରୁଥାଉଁ ତା ବ୍ୟତୀତ କୋଣାର୍କ ସାଂସ୍କୃତିକ ପରିଷଦର ଯେ ବର୍ଷ

କାର୍ତ୍ତିକ ପୂର୍ଣ୍ଣିମାର ବୋଇତ ବନ୍ଦାଣରେ ଉତ୍ସପାଇଁ ନୃତ୍ୟ ନାଟିକା ପରିବେଷଣ କରି ଭଞ୍ଜ କଳା କେନ୍ଦ୍ର ସହରକେଲ ଜନସାଧାରଣଙ୍କର ଅଧିକ ନିକଟତର ହୋଇପାରିଥିଲା ଏହି ନୃତ୍ୟ ନାଟିକାରେ ଆମେ କେତେକ ଅଧିକ ନୂଆ ଶିଳ୍ପୀଙ୍କର ସାହାଯ୍ୟ ପାଇଥିଲୁ ତନ୍ମଧ୍ୟରୁ ଶ୍ରୀମତୀ କଳ୍ପନା ନନ୍ଦ, କୁମାରୀ ସୁଲୋଚନା ମହାପାତ୍ର, ଏ.କେ. କର ଏବଂ ନିରଞ୍ଜନ ସାହୁ । ସେହି ବର୍ଷ ପ୍ରଗତି ଉତ୍କଳ ସଂଘ, ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ଜୟନ୍ତୀ ପାଳନ କରିବା ଆରମ୍ଭ କଲେ । ମତେ ପ୍ରାରମ୍ଭିକ ସଙ୍ଗୀତ ଗାଇବା ପାଇଁ ଦେଇଥିଲେ । ନୂଆ ଗୀତ ଗୋଟିଏ ଲେଖିଥିଲି । "ବନ୍ଦେ ଉତ୍କଳ ଜନନୀ, ଜନକ ଜନ୍ମ ଭୂମି ବନ୍ଦେ" ମୁଁ କଳାବିକାଶ କେନ୍ଦ୍ର ଯିବା ଆଗରୁ ପ୍ରଗତି ଉତ୍କଳ ସଂଘରେ ଗୋଟିଏ ନାଚ କ୍ଲାସ ଆରମ୍ଭ କରିଥିଲି । ସେହି କ୍ଲାସରେ କେତେ ଗୁଡ଼ିଏ ପିଲାଯୋଗ ଦେଇଥିଲେ । ତନ୍ମଧ୍ୟରୁ ଭାସ୍କର ପଣ୍ଡାଙ୍କ ଦୁଇଟି ଝିଅଙ୍କ ନାମ ଉଲ୍ଲେଖ ଯୋଗ୍ୟ । ଭଞ୍ଜ କଳା କେନ୍ଦ୍ର ଗଠନ ପରେ ସେ ଦଗରେ ଯତ୍ନବାନ ହୋଇନଥିଲି । ପ୍ରଗତି ଉତ୍କଳ ସଂଘର କର୍ମକର୍ତ୍ତାମାନେ ବୋଧହୁଏ ଗୋଟିଏ ଦୃଷ୍ଟିରୁ ସେ ଦଗରେ ଯତ୍ନବାନ ହେଲେ ନାହିଁ । କାରଣ ସମସ୍ତଙ୍କର ଲକ୍ଷ୍ୟ ଓଡ଼ିଆ ନୃତ୍ୟ ସଙ୍ଗୀତର ପ୍ରସାର ତାହା କ୍ରମଶଃ ସାଧିତ ହେଉଥିବାରୁ ସେମାନେ ସେ ଦଗରେ ଆଉ ମନ ଦେଲେ ନାହିଁ । ଭଞ୍ଜ କଳା କେନ୍ଦ୍ର ଗୁଣ୍ଡଆଡେ କାର୍ଯ୍ୟକ୍ରମ ପରିବେଷଣ କେଶ୍ ଆଗେଇ ଚାଲିଥାଏ । ଲଭଙ୍ଗ ଏଣ୍ଡ ଡ୍ରାମାର ନୃତ୍ୟ ସଙ୍ଗୀତ ଶିକ୍ଷାଦାନ ବନ୍ଦ ହୋଇଯାଇଥାଏ । ଶ୍ୟାମା ଚରଣ ପତି କଲଚରଲ ଅନୁଷ୍ଠାନରୁ ବାହାରିଆସି ନିଜ ଗୋଡରେ ନିଜେ ଠିଆ ହେବାର ଚେଷ୍ଟା କରୁଥାନ୍ତି । ପଦ୍ମନାଭ ସାହୁ ଉତ୍କଳ ମୈତ୍ରୀ ସଙ୍ଗୀତ କଳାପୀଠରୁ ଉତ୍କଳଟି ବାଦଦେଇ ମୈତ୍ରୀ ସଙ୍ଗୀତ କଳାପୀଠ ନାମରେ ଗୋଟିଏ ଗୀତ ଶିକ୍ଷାନୁଷ୍ଠାନ ଆରମ୍ଭ କରୁଥାନ୍ତି । କାଶୀନାଥ ସହଲଙ୍କ ଚେଷ୍ଟାରେ ନବ ଦୂର୍ଗା କଳାକେନ୍ଦ୍ର ନାମରେ ଗୋଟିଏ ଅନୁଷ୍ଠାନ ମୁଣ୍ଡ ଟେକୁଥାଏ । କିନ୍ତୁ ଭଞ୍ଜ କଳାକେନ୍ଦ୍ର ଭଲରେ ଚାଲିଲା । ଚାଲିବାର ମୂଳରେ ଥିଲା, ମୋର ନୂଆ ନୂଆ ନୃତ୍ୟ ସଙ୍ଗୀତର ପରିକଳ୍ପନା । ତାତ୍ସ କଳାର ଉନ୍ନତି ଚିନ୍ତା ଏବଂ ଓଡିଆ ସଂସ୍କୃତି ପ୍ରେମୀଙ୍କ ସଦିଚ୍ଛା ଲଭ । କ୍ରମେ ଶିକ୍ଷାର୍ଥୀ ମାନଙ୍କର କଳା ପରିବେଷଣ ଆକର୍ଷଣୀୟ ହୋଇ ଆସୁଥିଲା । ତନ୍ମଧ୍ୟରୁ ଯଶୋଧାରା, ଅଳକା ନନ୍ଦା, ଉତ୍ପଳା, ପ୍ରିୟଦର୍ଶିନୀ, ଜୟଶ୍ରୀ, ବୀଣାପାଣି, ସଂଯୁକ୍ତା, ମୀନା ଏବଂ ଶିଶୁ ଶିଳ୍ପୀ ସଂଘମିତ୍ରାଙ୍କର ନାମ ଉଲ୍ଲେଖଯୋଗ୍ୟ । ଟେନ୍‌ସା, ପୁରୁଣାପାଣି ପ୍ରଭୃତି ଜାଗା ମାନଙ୍କରେ କାର୍ଯ୍ୟକ୍ରମ ପରିବେଷଣ କରି ପ୍ରଶଂସିତ ହୋଇଥାଏ । ସଙ୍ଗୀତ ନାଟକ ଏକାଡେମୀରୁ ଅନୁଦାନ ପାଇ ଅନୁଷ୍ଠାନ ଅଗ୍ରେ ସର୍ବାଙ୍ଗୀନ ଉନ୍ନତିର ପାଦ ଦେଶରେ ୧୯୭୧ ମସିହାରେ ଅନୁଷ୍ଠାନ ଲକ୍ଷ୍ନୌଠାରେ ଶ୍ରୀ ଜଗଧାଣ ଗାନ୍ଧୀଙ୍କ ନେତୃତ୍ୱରେ ହେଉଥିବା "ବାଳ ଓ ଯୁବ ସମାବେଶରେ ଯୋଗ ଦେବାର କାର୍ଯ୍ୟକ୍ରମ ଠିକ୍ ହେଲା । ଏହି ସମୟରେ ଗୁରୁ ଶ୍ରୀ ମହାଦେବ ରାଉତ ଅନୁଷ୍ଠାନରେ ଯୋଗଦେଲେ । ଲକ୍ଷ୍ନୌର ଗୋମତୀନଗର ଷ୍ଟାଡ଼ିୟମରେ ଶ୍ରେଷ୍ଠ ପିଲମାନଙ୍କର ପୁଚନୃତ୍ୟ ବଡ ପିଲାମାନଙ୍କର

ସମ୍ବଲପୁରୀ ନୃତ୍ୟ ବିଶେଷ ପ୍ରଶଂସା ଲାଭ କଲା । ଏହି ବର୍ଷ ମିହିର ଦାସ ନାମକ ଜଣେ କଣ୍ଠ ଶିଳ୍ପୀଙ୍କୁ ଭଞ୍ଜ କଳା କେନ୍ଦ୍ରରେ ନିଯୁକ୍ତି ଦିଆଗଲା ଏବଂ କର୍ମକର୍ତ୍ତାଙ୍କ ସହିତ ମନୋମାଳିନ୍ୟ ଘଟି ମୁଁ ଭଞ୍ଜ କଳାକେନ୍ଦ୍ର ପରିତ୍ୟାଗ କଲି ଏବଂ ନାରାୟଣ ଆଚାର୍ଯ୍ୟଙ୍କ ପୃଷ୍ଠପୋଷକତାରେ ରାଉରକେଲା କଳା ପରିଷଦ ଗଠନ କଲି ଏବଂ ଏହି ଅନୁଷ୍ଠାନକୁ ନେଇ ୧୯୭୬ରେ ପୁଣିଥରେ ଲକ୍ଷ୍ନୌ ଯାଇଥିଲୁ । କୁମାରୀ ସଂଘମିତ୍ରା ଆଚାର୍ଯ୍ୟଙ୍କ ଦଶ ଅବତାର ନୃତ୍ୟ ଏବଂ ସୀତା ଜେନା, ଗୀତାଞ୍ଜଳି ଜେନା, କୁମାରୀ ଅଳକା ଦ୍ୱିବେଦୀଙ୍କର ଦେଳା ଦେଳୁଣୀ ନୃତ୍ୟ ଉଚ୍ଚ ପ୍ରଶଂସିତ ହୋଇଥିଲା । ଏହି ବର୍ଷ ଭଞ୍ଜ କଳାକେନ୍ଦ୍ର ପୁଣି ଦୁଇଭାଗ ହୋଇଗଲା । ଶ୍ରୀ ବିକ୍ରମ ଚନ୍ଦ୍ର ମହାନ୍ତି ଗୁରୁ ମହାଦେବ ରାଉତ ଏବଂ କେତେ ଗୁଡ଼ିଏ ପିଲା ନେଇଯାଇ କବିଚନ୍ଦ୍ର କଳାକେନ୍ଦ୍ର ନାମରେ ଗୋଟିଏ ଅନୁଷ୍ଠାନ ଗଠନ କଲେ । ଏତେ ବେଳକୁ ରାଉରକେଲା ସାଂସ୍କୃତିକ ବାତାବରଣ ବେଶ ଘନିଭୂତ ହୋଇ ଆସୁଥାଏ । ଶ୍ୟାମା ଚରଣ ପତି ସଙ୍ଗୀତ କଳାନିକେତନ ନାମକ ଗୋଟିଏ ଅନୁଷ୍ଠାନ ଗଠନ କରି ସାରିଥାନ୍ତି । କଲିକତାର ଆସୋସିଏସନରେ ନିଖିଲ ସେନଗୁପ୍ତା ନାମକ ଜଣେ ନୃତ୍ୟ ଶିକ୍ଷକ ଯୋଗ ଦେଇଥାନ୍ତି । କବିସୂର୍ଯ୍ୟ କଳାକେନ୍ଦ୍ର, ନଟରାଜ କଳା କେନ୍ଦ୍ରରେ ପରିଣତ ହୋଇଥାଏ ।

ରାଉରକେଲା କଳା ପରିଷଦ ରାଉରକେଲାରେ ଏବଂ ରାଉରକେଲା ବାହାରେ କାର୍ଯ୍ୟକ୍ରମ ପରିବେଷଣ କରି ପ୍ରଶଂସା ଭାଜନ ହେଲା । ନୃତ୍ୟରେ କୁମାରୀ ବାଣାପାଣି ଜେନା, ଗୀତାଞ୍ଜଳୀ ଜେନା, ନମିତା ଜେନା, ସିପ୍ରା ପ୍ରଧାନ, ଶୁଭ୍ରା ପତି, ସଂଘମିତ୍ରା ଆଚାର୍ଯ୍ୟ, ଅଳକା ଦ୍ୱିବେଦୀ, ଅନୁପମା ରାଓ, ସ୍ୱପ୍ନା କାଲେ, ଜ୍ୟୋତି ଆୟଙ୍ଗାର, ଆର. ବିଜୟା, ପୁଷ୍ପକଳା ଆୟାର, ସୁଜାତା ପତି, କଣ୍ଠଶିଳ୍ପୀ ଅନ୍ନପୂର୍ଣ୍ଣା ଆଚାର୍ଯ୍ୟ, ପ୍ରିୟଦର୍ଶିନୀ ନନ୍ଦ, ସୁଷମା ମିଶ୍ର, ଦମୟନ୍ତୀ ଦ୍ୱିବେଦୀ, ସରସ୍ୱତୀ ପ୍ରଧାନ, ତୃପ୍ତି ଓ ଦୀପ୍ତି ମହାପାତ୍ର, ବାଦକ ଉପେନ୍ଦ୍ର ନାଥ ବାରିକ, ଦୀପକ ମହାପାତ୍ର, କର୍ମକର୍ତ୍ତା ନାରାୟଣ ଆଚାର୍ଯ୍ୟ, ଇଉ.ପି. ପାଢ଼ୀ, ସ୍ୱୌଧୀନ ଧିରେନ୍ଦ୍ର ନାଥ ନନ୍ଦ ଏବଂ ପ୍ରଫୁଲ୍ଲ ଚନ୍ଦ୍ର ଜେନା । ଏହି ସମୟରେ କେବଳ ବେଶକାରୀ (ପେଣ୍ଟର) ଭାବରେ ଶ୍ରୀ ଅଦ୍ୱୈତ ଚନ୍ଦ୍ର ମହାନ୍ତିଙ୍କ ନାମ ଉଲ୍ଲେଖଯୋଗ୍ୟ । ବେଶ ଯୋଗାଣକାରୀ ଶ୍ରୀ ଚକ୍ରଧର ମହାନ୍ତି । ପରେ ଶ୍ରୀ ଶଶୀ-ଭୂଷଣ ରଥ ଓ ବଟକୃଷ୍ଣ ସ୍ୱାଇଁ ବେଶକାରୀ ଭାବରେ ଯୋଗଦେଇଥିଲେ । ରାଉରକେଲା କଳା ପରିଷଦର ଉଲ୍ଲେଖନୀୟ ସଫଳତାକୁ ସଂଘମିତ୍ରା ଆଚାର୍ଯ୍ୟଙ୍କର ପ୍ରୟାଗ ସଙ୍ଗୀତ ସମିତିର ସମସ୍ତ ଓଡ଼ିଶୀ ନୃତ୍ୟ ପରୀକ୍ଷାରେ ଦ୍ୱିତୀୟ ସ୍ଥାନ ଲାଭ ଓ ଏବଂ ଦିଲ୍ଲୀଠାରେ ଅନୁଷ୍ଠିତ ଉଚ୍ଚମାଧ୍ୟମିକ ବିଦ୍ୟାଳୟ ମାନଙ୍କର ନୃତ୍ୟ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରିବା ରାଉରକେଲା ପାଇଁ ଏକ ଗୌରବ ବିଷୟ ଅଟେ ।

ରାଉରକେଲାରେ ଅନେକ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷାର୍ଥୀ ଶିକ୍ଷକ ଓ ଅନୁଷ୍ଠାନ କାର୍ଯ୍ୟ କରୁଥିବା ବେଳେ ଏହାକୁ ପରିବେଷଣ କରିବାର ଉପଯୁକ୍ତ କ୍ଷେତ୍ର ନଥିବା ଉପଲବ୍ଧି କରି ମୁଁ ଶ୍ରୀମତୀ ଅଲକା ବୃନ୍ଦ ଆଉ କେତେକ ଅର୍ଜୁନ ଚରଣ ରାଉତଙ୍କ ନେତୃତ୍ୱରେ ଗୋଟିଏ ଶାସ୍ତ୍ରୀୟ ସଙ୍ଗୀତ ଶିଳ୍ପୀ ସଂସ୍ଥା ଗଠନ କରିଥିଲୁ (୧୯୭୫ ମସିହା) । ସୁଭାଷ ଦାସ ନାମକ ଜଣେ ଯୁବକ ଏହି ଗଠନ କର୍ମରେ ବିଶେଷ ସହାୟକ ହୋଇଥିଲେ । ଏହି ଅନୁଷ୍ଠାନ ତରଫରୁ ୧୯୭୮ ମସିହାରେ ଶାସ୍ତ୍ରୀୟ ସଙ୍ଗୀତ ସମ୍ପର୍କୀୟ ଖଣ୍ଡିଏ ସ୍ମରଣିକା ପ୍ରକାଶ କରିଥିଲୁ ଏବଂ ଶ୍ରୀମତୀ ଝିଷ୍ଟା ଦାସ, ଯୂଥିକା ତରଫଦାର, ଶ୍ରୀମତୀ ଅନ୍ନପୂର୍ଣ୍ଣା ଆଚାର୍ଯ୍ୟ, ଶ୍ରୀମତୀ ଅଲକା ବୃନ୍ଦ ଏବଂ ଶ୍ରୀମତୀ ଅନୁରାଧା ପାଲ, କଣ୍ଠଶିଳ୍ପୀ ଶ୍ରୀ ମଧୁସୂଦନ ଦାସ ଓ ଉପେନ୍ଦ୍ର ଭାରତ, ତବଲା ବାଦକ ଭାବରେ ବିଶେଷ ସାହାଯ୍ୟ କରିଥିଲେ ।

ରାଉରକେଲା କଳା ପରିଷଦ ଓଡ଼ିଶାର ପଞ୍ଚପଞ୍ଚାଶୀରେ କେବଳ ହିନ୍ଦି ରେକର୍ଡ ବାଜୁଥିବା ଓଡ଼ିଆ ରେକର୍ଡ ସ୍ୱଳ୍ପତାକୁ ଲକ୍ଷକରି ୧୯୭୮ ମସିହାରେ ଖଣ୍ଡିଏ ଇ:ପି: ଗ୍ରାମଫୋନ ରେକର୍ଡ କେବଳ ଉପେନ୍ଦ୍ର ଭଞ୍ଜଙ୍କ ଗୀତକୁ ପ୍ରସ୍ତୁତ କରିଥିଲେ ଏବଂ ତାହାକୁ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ଉଦ୍‌ଘାଟନ କରି ଗୀତ ଗୁଡ଼ିକ ଗାଇଥିଲେ । ଓଡ଼ିଶାର ଓଡ଼ିଶୀ ଓ ଭଜନ ଖ୍ୟାତନାମା ଶିଳ୍ପୀ ଶ୍ରୀ ଭିକାରି ବଲ, ଶ୍ରୀମତୀ ଅନ୍ନପୂର୍ଣ୍ଣା ଆଚାର୍ଯ୍ୟ, କଲିକତା ଶ୍ରୀମତୀ ନିର୍ମଳା ମିଶ୍ର କହିଲେ ଚଳେ । ଶ୍ରୀ ଭିକାରି ବଲଙ୍କର ଏହା ପ୍ରଥମ ଗ୍ରାମଫୋନ ରେକର୍ଡରେ ଯୋଗଦାନ ଗୀତଟି ଥିଲା "ଆହା ମୋ ଜୀବନ ଧନ ଜୀବନେ କି ଥିବରେ' ପରେ ପରେ ଖଣ୍ଡିଏ ଜଗନ୍ନାଥ ଓ ଉପେନ୍ଦ୍ର ଭଞ୍ଜଙ୍କ ଗୀତର ଦୁଇଟି ଲ:ପ୍ଲେ: ରେକର୍ଡ ଏବଂ ଓଡ଼ିଆ ଲୋକଗୀତ ପଞ୍ଚ-ପଞ୍ଚାଶୀ ଗୀତକୁ ଅନୁଷ୍ଠାନ ତେର ଖଣ୍ଡ ରେକର୍ଡ ପ୍ରସ୍ତୁତ କରିଥିଲେ । ଏବେ ଓଡ଼ିଶା ନୃତ୍ୟ ସଙ୍ଗୀତ ଶାସ୍ତ୍ର କ୍ଷେତ୍ରରେ ଦାୟିତ୍ୱ ତାକୁ ଦୃଷ୍ଟିରେ ରଖି ସେଦିଗରେ କାର୍ଯ୍ୟ ଆରମ୍ଭ କରିଛୁ ।

ରାଉରକେଲାର ବଣ ଜଙ୍ଗଲ ବୃକ୍ଷଜମି ଯେଉଁଠାରେ ଦିନରେ ଭୂତଭୟ ଲାଗୁଥିଲା ସେଠାରେ ଜନମାନବର କୋଳାହଳ ଓ କମ୍ପାନୀ କ୍ୱାର୍ଟର ପୂରି ଗଲାଣି । ଅନେକ ଅନୁଷ୍ଠାନ ମୁଣ୍ଡ ଟେକୁଛି କେତେକ, କେତେ ରହିଛି କେତେ ଲିଭିଯାଉଛି । ଆମର ସାର୍ଥକ ହୋଇଛି । ସଂସ୍କୃତି କ୍ଷେତ୍ରରେ ଆମର ଯାହା କର୍ତ୍ତବ୍ୟ କରିଛୁ ବୋଲି ।

ଶେଷରେ ଏହି କ୍ଷେତ୍ରର ପୂର୍ବେ ଅଗ୍ରରେ ରହି ଯେଉଁମାନେ ସଂସ୍କୃତିକୁ ସାହାଯ୍ୟ କରିଥିଲେ । ଅନେକଙ୍କ ମନରେ ଅଛି ଅନେକଙ୍କୁ ଭୁଲି ଯାଇଛି । ଉଲ୍ଲେଖଯୋଗ୍ୟ ସମାଜର ସାମ୍ବାଦିକ ଦେବେନ୍ଦ୍ର ନାଥ ପତି, ପ୍ରଜାତନ୍ତ୍ରର ସାମ୍ବାଦିକ ରଜନୀକାନ୍ତ ଦାସଙ୍କ ନାମ ଅନୁଷ୍ଠାନ ମଧ୍ୟରେ ଆଦର୍ଶ ପାଠାଗାର, ପ୍ରଗତି ଉତ୍କଳ ସଂଘ, କୋଣାର୍କ ସାଂସ୍କୃତିକ ପରିଷଦ ଓ ନୀଳଚକ୍ର । ଯେଉଁ ଯୁବକମାନେ ଆମକୁ ଉତ୍ସାହିତ କରିଥିଲେ ତନ୍ମଧ୍ୟରୁ ରାଜକିଶୋର ମହାନ୍ତି, ଶଶଧର ନନ୍ଦ, ବିଷ୍ଣୁ ମହାନ୍ତି, ନୀଳକଣ୍ଠ ପାତ୍ର ଓ ଭବାନୀ କରଙ୍କ ନାମ ଉଲ୍ଲେଖ ଯୋଗ୍ୟ ଅଟେ ।

— ✱ —

# ରାଉରକେଲାରେ ସଂଗୀତ ଚର୍ଚ୍ଚା ଓ ନୃତ୍ୟଶିକ୍ଷା

❋ ଶ୍ରୀମତୀ ଅଳକା ଚନ୍ଦ

ସାଂସ୍କୃତିକ ଜୀବନ କହିଲେ ଯାହା ବୁଝାଏ, ତାହା କେବଳ ଝଲମଲ ରଙ୍ଗୀନ ଆଲୋକ ସଜ୍ଜା ବା ଆଡ଼ମ୍ବରର ଗୁଞ୍ଜରିକ୍ୟ ମଧ୍ୟରେ ସୀମିତ ନୁହେଁ । ସାଂସ୍କୃତିକ ଜୀବନ ହେଉଛି, ଦେଶ, କାଳ, ପାତ୍ର ଭେଦରେ ମଣିଷର ବିଶୁଦ୍ଧ ଅଭିରୁଚିର ପରାକାଷ୍ଠା ଓ ଅଧିକରୁ ଅଧିକ ପ୍ରାଣବନ୍ତ କରିବାର ଉଦ୍ୟମ । ରାଉରକେଲାର ଅଧିବାସୀ ବିଗତ ଅର୍ଦ୍ଧ ଶତାବ୍ଦୀ ମଧ୍ୟରେ ଏ ଦିଗରେ ପ୍ରୟାସ କରି କେତେଟା ସଫଳତା ବା କେତେଟା ବିଫଳତା ଲାଭ କରିଛନ୍ତି, ତାହା ଏହି ପରିପ୍ରେକ୍ଷୀରେ ଆଲୋଚନା କଲେ ସ୍ପଷ୍ଟ ହେବ ।

ସ୍ୱାଧୀନତୋତ୍ତର ଭାରତ ବର୍ଷର ଇତିହାସର ପୃଷ୍ଠା ଓଲଟାଇଲେ ଅନେକ କିଛି ପରିବର୍ତ୍ତନ ଦୃଷ୍ଟି ଆକର୍ଷଣ କରେ । ପଚାଶ ବର୍ଷତଳ ସୁନ୍ଦରଗଡ଼ର ବଣ ମୂଲକରେ ଇସ୍ପାତ ନଗରୀ ରାଉରକେଲା ତନ୍ମଧ୍ୟରେ ଏକ ବିଶେଷ ସ୍ଥାନ ଦଖଲ କରେ । ଓଡ଼ିଶାର ଏହି ଉପାନ୍ତ ଅଞ୍ଚଳ ରାଉରକେଲାର ସଂସ୍କୃତି ବଡ଼ ବୈଚିତ୍ର୍ୟପୂର୍ଣ୍ଣ । ମନେହୁଏ ଏହା ବିଶାଳ ଭାରତବର୍ଷର କ୍ଷୁଦ୍ରରୂପଟିଏ । ଶଙ୍ଖ, କୋଏଲ, ବ୍ରାହ୍ମଣୀର ପ୍ରସାରିତ ଗ୍ରୀବା ଉପରେ କ୍ରୀଡ଼ାରତ ବିଭିନ୍ନ ଜାତିର ଏହା ଏକ ସଙ୍ଗଠିତ ସମାଜ । ଏଠାରେ ଘଟିଥିବା ଆଦିମ ଜନଜାତିର ସଂସ୍କୃତି ଓ ଶିଳ୍ପ ସଂସ୍କୃତିର ସମନ୍ୱୟ ତାହା ଆମକୁ ଆର୍ଯ୍ୟ ସଂସ୍କୃତିର ସୂଚନା ଦିଏ —

"ଏକଂ ସଦ୍ ବିପ୍ରା ବହୁଧା ବଦନ୍ତି" ......

ନାନା ମଧ୍ୟରେ ଏକର ସନ୍ଧାନ, ବହୁମଧ୍ୟରେ ଏକତ୍ୱର ଆହ୍ୱାନ, ବିଶ୍ୱ ଜନୀନତାର ନିଦର୍ଶନ ହେଉଛି ଆର୍ଯ୍ୟ ସଂସ୍କୃତିର ମୂଳମନ୍ତ୍ର ସ୍ୱର । ସେହି ପର୍ଯ୍ୟାୟରେ ଆଲୋଚନା କଲେ ଏହା ପ୍ରମାଣିତ ହୁଏ ଯେ, ରାଉରକେଲା ଏହି ପ୍ରସାରିତ ବିଶ୍ୱ ବନ୍ଦନୀୟା ସଂସ୍କୃତିର ମାନସ ସନ୍ତାନ । ଏକ ସମନ୍ୱିତ ସଂସ୍କୃତିର ପୃଷ୍ଠଭୂମି ଉପରେ ପ୍ରତିଷ୍ଠିତ ଏହି ଶିଳ୍ପନଗରୀ । ଉତ୍କଳର ସାଂସ୍କୃତିକ ପ୍ରଗତି ସହିତ ଯଦିବା ଏହି ପଚାଶ ବର୍ଷର ସହର ସମାନ ମାନ ରକ୍ଷା କରିବାକୁ ସମର୍ଥ ହୋଇନାହିଁ, ତଥାପି କିନ୍ତୁ ଏହା ସର୍ବଭାରତୀୟ ସଂସ୍କୃତିର ଏକ ମିଳନ ମଣ୍ଡପ କହିଲେ ଅତ୍ୟୁକ୍ତି ହେବନାହିଁ ଏବଂ ଏକ ନିଜସ୍ୱ ସାଂସ୍କୃତିକ ବାତାବରଣ ପରିବେଷଣ ପାଇଁ ଏହି ସହରର ବହୁ ଅନୁଷ୍ଠାନ ଓ ବ୍ୟକ୍ତି ନାନାବିଧ ଭାବେ ଉଦ୍ୟମ ଚଳାଇ ଆସୁଛନ୍ତି ।

ପ୍ରଥମେ ମାନସିକ ସ୍ତରରେ ମଣିଷ ସହରର ଏଠି ମଣିଷର କିଛି ସମ୍ପର୍କ ନଥିଲା । ଅର୍ଥୋପାର୍ଜନ ଉଦ୍ଦେଶ୍ୟରେ ଏ ସହରକୁ ମଣିଷ ଆସୁଥିଲା । ପରିବାର ପୋଷଣ, ଅର୍ଥ ଉପାର୍ଜନ, ନିଜ ଗୋଷ୍ଠୀ ମଧ୍ୟରେ ସମ୍ପର୍କ ସ୍ଥାପନ ବ୍ୟତୀତ ଭିନ୍ନ କିଛି ଲକ୍ଷ୍ୟ ନଥିଲା । କିନ୍ତୁ ଧୀରେ ଧୀରେ ଆରମ୍ଭ ହେଲା ସରକାରୀ ଓ ବେସରକାରୀ ସ୍ତରରେ ହାଉସିଂ ପ୍ରୋଜେକ୍ଟ । ନିଜ ନିଜ ଗୋଷ୍ଠୀ ଓ ନିଜ ପରିବାରର ଗଣ୍ଡି ମଧ୍ୟରୁ ବହିର୍ଭୂତ ହୋଇ ଏଠାକର୍ମଜୀବୀ ମଣିଷ ହେଲା ସାମାଜିକ, ସଂଗଠିତ, ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ସଭ୍ୟତାର ବସତି ବସିଲା । ଧୀରେ ଧୀରେ ଆରମ୍ଭ ହେଲା ସାଂସ୍କୃତିକ କାର୍ଯ୍ୟକ୍ରମର ବିକାଶ, ଜୀବନକୁ ଆନନ୍ଦ ଦେବା ସକାଶେ ନାଚ ପାଇଁ ନାଚ ଓ ଗୀତ ପାଇଁ ଗୀତ । ୨୭ ବର୍ଷ ତଳେ ନୂଆ ହୋଇ ଜନ୍ମିଥିବା ଭଞ୍ଜ କଳାକେନ୍ଦ୍ର ପ୍ରଥମ କରି ଓଡ଼ିଆ ସଂସ୍କୃତିର ବାର୍ତ୍ତାବହ ଓ ମଞ୍ଚରୂପେ କାର୍ଯ୍ୟକଲା ଏବଂ କ୍ରମେ ବହୁ ଦୂରଦୂରାନ୍ତରୁ ବିଭିନ୍ନ ସାଂସ୍କୃତିକ ଦଳ ଏହି ଶିଳ୍ପ ସହରକୁ ଆସି ସାଂସ୍କୃତିକ କାର୍ଯ୍ୟମାନ ପରିବେଷଣ କରୁଥିଲେ । ଏଠା କର୍ମଜୀବୀମାନଙ୍କ ମଧ୍ୟରେ ଜାଗରଣ ହେଲା ଅନୁଷ୍ଠାନ ସୃଷ୍ଟିର ପ୍ରୟାସ । ଛତୁ ପରିକା ଏ ସହରରେ ବର୍ତ୍ତମାନ ପ୍ରାୟ ୧୭୦ ଅନୁଷ୍ଠାନ ବିଭିନ୍ନ ପରି-ପ୍ରେକ୍ଷୀରେ ସାଂସ୍କୃତିକ କାର୍ଯ୍ୟମାନ ପରିବେଷଣ କରୁଅଛନ୍ତି । ସର୍ବପୁରାତନ ଭଞ୍ଜ କଳାକେନ୍ଦ୍ର ଠାରୁ କବିଚନ୍ଦ୍ର କଳାକେନ୍ଦ୍ର, କବିସୂର୍ଯ୍ୟ କଳାକେନ୍ଦ୍ର, ନଟରାଜ କଳା କେନ୍ଦ୍ର, ଜଗନ୍ନାଥ କଳାକେନ୍ଦ୍ର, ଗୀତାଞ୍ଜଳୀ, ରାଉରକେଲା କଳାପରିଷଦ, ମୈତ୍ରୀ କଳା ପରିଷଦ, ଲାଇଫ୍ ଆଣ୍ଡ ରିଦମ୍, ମହାରାଷ୍ଟ୍ର ମଣ୍ଡଳ, ଆନ୍ଧ୍ର ଅସୋସିଏସନ୍, ବେଙ୍ଗଲି ଆସୋସିଏସନ, ରାଇମା କ୍ଲବ, ପ୍ରବାସୀ କ୍ଲବ, ପଞ୍ଜାବୀ ମିଲ୍ ବର୍ତ୍ତିନ ସଙ୍ଘ, ଓ୍ୱମର୍ଲ୍ଡ୍ସ, ଟେକନୋଆର୍ଟ, କଳିଙ୍ଗ କଳା ପରିଷଦ, ମ୍ୟୁଜିକ ସର୍କଲ ରାଉରକେଲା, ଇତ୍ୟାଦିର ଜନ୍ମ ହେଲା ଧୀରେ ଧୀରେ । ୧୯୭୦ ପରବର୍ତ୍ତୀ ସ୍ଥାନୀୟ କର୍ମଜୀବୀମାନେ ନିଜ ନିଜର ସାଂସ୍କୃତିକ ପରମ୍ପରା ରକ୍ଷା ନିମନ୍ତେ ଓ ନିଜ ନିଜ ମଧ୍ୟରେ ସାଂସ୍କୃତିକ ଚର୍ଚ୍ଚାର ଆଦାନ ପ୍ରଦାନ ପାଇଁ ଏ ପ୍ରକାର ଅନୁଷ୍ଠାନମାନ ପ୍ରସ୍ତୁତ କଲେ । ୧୯୮୦ ପରଠାରୁ ଜନ୍ମହେଲା ବହୁ କଳା ଅନୁଷ୍ଠାନ । ଯାହା ଏହି ଶିଳ୍ପ ସହରରେ ଏକ ସଫଳ କଳାତ୍ମକ ଜାଗ୍ରତିର ପ୍ରମାଣ ଦେଇଥାଏ । ନୃତ୍ୟ, ସଙ୍ଗୀତ, ନାଟ୍ୟ ଅନୁଷ୍ଠାନ ମଧ୍ୟରେ ସୁରଙ୍ଗମା, ପାପୁଲ୍, ରଙ୍ଗମଞ୍ଚ, ଇସ୍ପାତ କଳାକେନ୍ଦ୍ର, ମଧୁମାଛି, ସିଂହାସ୍ତ କଳାକେନ୍ଦ୍ର, ପଞ୍ଚମବେଦ, ନେସେନାଲ ମ୍ୟୁଜିକ୍ ଆସୋସିଏସନ୍, ଇତ୍ୟାଦି ବହୁ ଅନୁଷ୍ଠାନ ଏହି ସହରକୁ ସାଂସ୍କୃତିକ କାର୍ଯ୍ୟକ୍ରମ ମାଧ୍ୟମରେ ଯଥେଷ୍ଟ ଉର୍ଜ୍ଜିମନ୍ତ କରିବାରେ ସହାୟ ହୋଇଛନ୍ତି । ସାଂସ୍କୃତିକ କାର୍ଯ୍ୟକ୍ରମ ବ୍ୟତୀତ, ଅଖିଳ ଭାରତ ଗାନ୍ଧର୍ବ ମହାବିଦ୍ୟାଳୟ ମଣ୍ଡଳ, ପ୍ରୟାଗ ସଙ୍ଗୀତ ସମିତି ଏଲାହାବାଦ, ପ୍ରାଚୀନ କଳାକେନ୍ଦ୍ର ଚଣ୍ଡୀଗଡ଼, ଇତ୍ୟାଦିରେ ଥିବା ବିଶ୍ୱବିଦ୍ୟାଳୟ ଦ୍ୱାରା ଅନୁମୋଦିତ ହୋଇ ପ୍ରତିବର୍ଷ ଭଞ୍ଜ କଳାକେନ୍ଦ୍ର, ସିଂହାସ୍ତ କଳାକେନ୍ଦ୍ର, ସୁରଙ୍ଗମା, ମୈତ୍ରୀ କଳାପରିଷଦ, କବିଚନ୍ଦ୍ର କଳାକେନ୍ଦ୍ର, ମ୍ୟୁଜିକ ସର୍କଲ ରାଉରକେଲା ଇତ୍ୟାଦି ବହୁ ଅନୁଷ୍ଠାନ ପରୀକ୍ଷା କାର୍ଯ୍ୟକ୍ରମ

ଚଳାଇ, ଛାତ୍ରଛାତ୍ରୀମାନଙ୍କୁ ସାର୍ଟିଫିକେଟ ପ୍ରଦାନ କରୁଅଛନ୍ତି । ଏହା ନିଶ୍ଚିତ ଭାବେ ଆନନ୍ଦ ଓ ଗୌରବର କଥା । ପ୍ରଥମେ ଏହି ସହରକୁ ବାହାରର ଶିଳ୍ପୀମାନେ କେବଳ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ ପାଇଁ ଆସୁଥିଲେ । କିନ୍ତୁ ବର୍ତ୍ତମାନର ରାଉରକେଲାର ବହୁ କଳାକାର ଓ ଅନୁଷ୍ଠାନମାନ, ଓଡ଼ିଶା ତଥା ଭାରତର ବିଭିନ୍ନ ପ୍ରାନ୍ତର ଯଥା—ସିକିମ୍, ଗୋଆ, ଦିଲ୍ଲୀ, ଡ଼େରାଡ୍ନ, ଭାଇଜାଗ, ଷଢେଇକଲା, ଆସାମ ଭିଲାଇ ବୋକାରୋ, କଲିକତା, ଆଦି ବିଭିନ୍ନ ସହରକୁ ଯାଇ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରି ବିଶେଷ ପ୍ରଶଂସାର ଭାଜନ ହୋଇପାରିଛନ୍ତି ।

ଏହି ସହରର ଇତିହାସର ପୃଷ୍ଠା ଓଲଟାଇଲେ ଦେଖିବାକୁ ମିଳେ ଯେ ୧୯୮୯ ମସିହା ଏପ୍ରିଲ ୧୭ ଓ ୧୮ ତାରିଖରେ ଓଡ଼ିଶା ସରକାରଙ୍କ ଆନୁକୂଲ୍ୟରେ ମ୍ୟୁଜିକ୍ ସର୍କଲ ଦ୍ୱାରା ଏକ ସର୍ବଭାରତୀୟ ଲୋକନୃତ୍ୟ ସମାରୋହ ଆୟୋଜିତ ହୋଇଥିଲା । ଯେଉଁ ଉତ୍ସବରେ ସାରାଭାରତର ୧୫୦ ଜଣ କଳାକାର ଅଂଶ ଗ୍ରହଣ କରିଥିଲେ । ସେଦିନ ଏହି ଶିଳ୍ପନଗରୀ ରାଉରକେଲା, ଆସାମ, ଓଡ଼ିଶା, ବିହାର, ମଧ୍ୟପ୍ରଦେଶର ଲୋକ ସଙ୍ଗୀତ ଓ ଲୋକ ନୃତ୍ୟରେ ମୁଖରିତ ହୋଇଉଠିଥିଲା । ଏହା ରାଉରକେଲା ତଥା ଓଡ଼ିଶା ପାଇଁ ନିଶ୍ଚୟ ଏକ ସ୍ମରଣୀୟ ସ୍ମୃତି । ଗତ ୩୦ ବର୍ଷର ଇତିହାସ ଆଲୋଚନା କଲେ ଏକଥା ସ୍ପଷ୍ଟ ହୁଏ ଯେ, ଆଜି ଅବସ୍ଥାରେ ରାଉରକେଲାରେ ନାଟକ-ଟିଏ କରିବାକୁ ହଲେ ଶିଳ୍ପୀ (ବିଶେଷତଃ ନାରୀଶିଳ୍ପୀଟିଏ ପାଇଁ) କଟକ, ସମ୍ବଲପୁର, ବାଲେଶ୍ୱର ଇତ୍ୟାଦିର ଦ୍ୱାରସ୍ଥ ହେବାକୁ ପଡ଼ୁଥିଲା । କିନ୍ତୁ ଅଧୁନା ନାଟକ କ୍ଷେତ୍ରରେ ରାଉରକେଲା ଯଥେଷ୍ଟ ସମ୍ମାନ ଦାବୀକରେ । ଏକ ଜାତୀୟ ସଂସ୍କୃତିର ମିଳିତ ମଣ୍ଡପ ରୂପେ କଳିଙ୍ଗ ଏକାଡେମୀ, ରାଉରକେଲା, ପ୍ରାୟ ୧୫ ବର୍ଷ ଧରି ଏକ ବିଶେଷ କାର୍ଯ୍ୟକ୍ରମ କରିଆସୁଛନ୍ତି । ସମଗ୍ର ଓଡ଼ିଶାର ବିଭିନ୍ନ ପ୍ରାନ୍ତରରୁ ନାଟ୍ୟଦଳ ଆସି ଏହି ନାଟକ ପ୍ରତିଯୋଗିତାରେ ନଅଦିନ ବ୍ୟାପି ନାଟକ ପ୍ରଦର୍ଶନ କରୁଅଛନ୍ତି । ସେହିପରି "ମନ୍ଥମାଛି" ନାମକ ଏକ ନାଟ୍ୟସଂସ୍ଥା ଗତ ପାଞ୍ଚବର୍ଷ ଧରି ସରକାରୀ ଓ ବେସରକାରୀ ସ୍ଥାନୀୟ ସମସ୍ତ ହାଇସ୍କୁଲମାନଙ୍କର ଏକ ପ୍ରତିଯୋଗିତା କରିତ ନାଟକ ସପ୍ତାହ, ହିନ୍ଦୁସ୍ଥାନ ଷ୍ଟିଲପ୍ଲାଣ୍ଟ ରାଉରକେଲାର ସାହାଯ୍ୟରେ ପରିଚାଳିତ କରି ଛାତ୍ର-ଛାତ୍ରୀମାନଙ୍କ ମଧ୍ୟରେ ଏକ ନୂତନ ସ୍ୱାଦ ଓ ଚେତନା ଆଣିବାରେ ସକ୍ଷମ ହୋଇପାରିଛନ୍ତି ।

ସାଂସ୍କୃତିକ କ୍ଷେତ୍ରରେ ହିନ୍ଦୁସ୍ଥାନ ଷ୍ଟିଲ କର୍ତ୍ତୃପକ୍ଷଙ୍କ ଦ୍ୱାରା ଆୟୋଜିତ ସଙ୍ଗୀତ ଯୁବୋତ୍ସବ (youth festival) ନୂତନ ପ୍ରତିଭାମାନଙ୍କର ପରିଚୟ ପାଇଁ ଏକ ସାଧୁ ଉଦ୍ୟମ କହିଲେ ଅତ୍ୟୁକ୍ତି ହେବ ନାହିଁ । ପୁନଃ ଷ୍ଟିଲ କର୍ତ୍ତୃପକ୍ଷଙ୍କ ଦ୍ୱାରା ପରିଚାଳିତ Indoor ବା Cable T.V. ମାଧ୍ୟମରେ ପ୍ରତି ସନ୍ଧ୍ୟାରେ ଯେଉଁ ସାଂସ୍କୃତିକ କାର୍ଯ୍ୟମାନ ହେଉଛି, ସେଥିରେ ଅଧିକାଂଶ ସ୍ଥାନୀୟ କଳାକାରମାନେ, କଳାପରିବେଷଣ ପାଇଁ

ସୁଯୋଗ ଲାଭ କରୁଅଛନ୍ତି । ରାଉରକେଲାସ୍ଥ କର୍ମଜୀବୀ କଳାକାରମାନଙ୍କର ବ୍ୟକ୍ତିଗତ ଓ ସମୂହ ଚେଷ୍ଟା ଫଳରେ—'ଟ୍ୱିଅଟି ସୀତାପତି', 'ବାଟ ଅବାଟ', 'ଶାନ୍ତି' ଇତ୍ୟାଦି ତିନି ଗୁଡ଼ିଏ ଚଳଚ୍ଚିତ୍ର ମଧ୍ୟ ନିର୍ମାଣ ହୋଇ ସାରିଛି । ମାକ୍ସ ମୁଲର ଭବନ, ଆର୍ଟ ସ୍କୁଲ କଳାଚକ୍ରର ଏକାଡେମୀ, ପାସ୍ଟେଲ, ଇତ୍ୟାଦି ସଂସ୍ଥାମାନ ପେଣ୍ଟିଂ ଇତ୍ୟାଦି ଅଙ୍କନ ଶିଳ୍ପର (Art and Painting) ଅଭିବୃଦ୍ଧି କରିବାର ସକ୍ରିୟ ଭୂମିକା ଗ୍ରହଣ କରିଛନ୍ତି । ଏ ସବୁରୁ ପ୍ରମାଣିତ ହୁଏ, ରାଉରକେଲା ଗତ ତିନି ଦଶନ୍ଧି ମଧ୍ୟରେ ସଂସ୍କୃତି କ୍ଷେତ୍ରରେ ଏକ ବିପୁଳ ପରିବର୍ତ୍ତନ ଆଣିଛି, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଏତ ଗଲା ରାଉରକେଲାର ସାଂସ୍କୃତିକ ପରିବେଶର ସଂକ୍ଷିପ୍ତ ଇତିହାସ । କିନ୍ତୁ ଇତିହାସ ପୁଣି ଯଦି ତହିଁରୁ କିଛିଟା ଦିଗ୍‌ଦର୍ଶନ ଆହରଣ କରିବାକୁ ଚେଷ୍ଟା କରାଯାଏ, ତାହେଲେ ଆମକୁ ଇତିହାସର ପ୍ରତ୍ୟେକଟି ଅବସ୍ଥାର ଚରିତ୍ର ତନ୍ନ ତନ୍ନ କରି ବିଶ୍ଳେଷଣ କରିବାକୁ ପଡେ ଏବଂ ସେଥିରୁ ହିସାବ କରାଯାଏ; ଲାଭ କ୍ଷତିର ପରିମାଣ ।

ରାଉରକେଲା ଯେଉଁ ଭିତ୍ତିଭୂମି ଉପରେ ପାଦରଖି ଆଗେଇ ଚାଲିବାରେ ପ୍ରୟାସ କରି ଆସୁଅଛି, ତାହାହିଁ ପ୍ରଥମେ ଏଠାରେ ବିଚାରକୁ ନିଆଯାଉ ।

ଶିଳ୍ପର ସହର ରାଉରକେଲା ଓ ସଂସ୍କୃତିର ସହର ରାଉରକେଲା କଣ ଏକ କଥା ? ସୂକ୍ଷ୍ମ ଦୃଷ୍ଟିରୁ ବିଚାର କଲେ ଏହା ଏକ ବିରୋଧାଭାସ ବୋଲି ଜଣାଯାଏ । ଏଇ ବିରୋଧାଭାସ ଭିତରେ, ସଂସ୍କୃତିରେ ଆଗେଇବାର ଅବସ୍ଥା ଗୁଡ଼ିକ କ'ଣ ହେବା ଉଚିତ । ରାଉରକେଲାର ଏକ ବିପୁଳ ଉଦ୍‌ବେଳିତ ସାଂସ୍କୃତିକ ସ୍ରୋତ ଆଡ଼କୁ ଦୃଷ୍ଟିପାତ କଲେ ଅନୁଭୂତ ହୁଏ ଯେ, ଅନେକ ସଂସ୍ଥା, ଅନେକ କଳାକାର, ବହୁ ଅନୁଷ୍ଠାନ, ଅସଂଖ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମ କଣ କଳା ପାଇଁ କଳା (Art for Art) ର ଜାଗୃତି ବହନ କରେ ? ଯଦି ତାହା ତେବେ ରାଉରକେଲା ଏତେ ବିରୋଧାଭାସ ମଧ୍ୟରେ ସଂସ୍କୃତି କ୍ଷେତ୍ରରେ ଗତି କରେ କାହିଁକି ?

ସାଂସ୍କୃତିକ ବିକାଶ ଧାରା ପାଇଁ ଯେଉଁ ଅନୁକୂଳ ବାତାବରଣ ଦରକାର । ତାହା ଠିକ୍ ପରିମାଣରେ ଏଠି ଅନୁଭବ କରି ହୁଏ ନାହିଁ । ବ୍ୟବସାୟରୁ ଆରମ୍ଭ ଏ ଶିଳ୍ପ ସହର । ରାଉରକେଲାର ଦର୍ଶକ ସୁନନ୍ଦାକୁ ଡେ଼ଲିମାରେ, ବିସ୍ମିଲ୍ଲାକୁ ଫୁତ୍କାର କରେ, ସାଧକ ଏଠି ସମ୍ମାନିତ ହୁଏ ନାହିଁ । ତାର କାରଣ ଏଠି ସଂସ୍କୃତିର ସମନ୍ୱୟ ସହିତ, ସାଂସ୍କୃତିକ ଅପମିଶ୍ରଣ ପପ୍ ମ୍ୟୁଜିକ୍, ବ୍ରେକଡ୍ୟାନ୍ସ ଇତ୍ୟାଦି ଏ ଚେତନାକୁ ବିଶୃଙ୍ଖଳକରାଏ । ଅତ୍ୟାଧୁନିକ ସଂସ୍କୃତି ହେଉଛି ପପ୍ ମ୍ୟୁଜିକ୍‌ର ସଂସ୍କୃତି । ରାଉରକେଲା ଏକ ଅତ୍ୟାଧୁନିକ ସହର, ତେଣୁ ହୁଏତ ଏଇ ସଂସ୍କୃତି ପପ ମ୍ୟୁଜିକ୍‌କୁ

ସ୍ୱାଗତ କରେ । ତେବେ ଗତ ଦଶନ୍ଧି ମଧ୍ୟରେ ଏ ଚେତନାରେ ଯେ କିଛି ଗୋଟାଏ ବୈପ୍ଳବିକ ପରିବର୍ତ୍ତନ ହୋଇନାହିଁ, ତାହା ନୁହେଁ, ତେବେ ଯାହା ହୋଇଛି, ତାହା ଅତ୍ୟନ୍ତ ନଗଣ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏ ସହରରେ ସବୁଠାରୁ ବେଶୀ ଅଭାବବୋଧ ହେଉଛି ପୃଷ୍ଠପୋଷକତା, ସାଂସ୍କୃତିକ, କଳାଗତ ଧାରାକୁ ଅବ୍ୟାହତ ରଖିବା ପାଇଁ କେଉଁ ପ୍ରକାର ପ୍ରେରଣା, ଉତ୍ସାହ, ଦରକାର ତାହା ଏଠାକାର କଳାକାର ବା କଳା ଅନୁଷ୍ଠାନ ପାଇବା ପାଇଁ ଅସମର୍ଥ ହୁଏ । ଉପକରଣ, ଉପାଦାନ, ଶାସ୍ତ୍ର ପୁସ୍ତକ, ଉପକରଣମାନଙ୍କୁ ସଜାଡ଼ିବାର କାରିଗର ଏଠି ମିଳେ ନାହିଁ । କାଁ ଭାଁ ହୋଇ ଆରମ୍ଭ ହେଉଥିବା ଦୋକାନ ମାନଙ୍କରେ ବିନା ଗ୍ରାହକରେ କିଛି ଦିନ ଅନ୍ତେ ତାଲାପଡ଼େ । ଏଠି ଷ୍ଟେଜର ଶିଳ୍ପୀ ଅଭାବରେ ବମ୍ବେଠାରୁ, କଲିକତାଠାରୁ ଶିଳ୍ପୀ ଆସି କାର୍ଯ୍ୟ ଚଳାଏ ।

ଏଠି ଅଛି ଏକ ଅଭାବବୋଧ, ଶ୍ରୋତା, ଦର୍ଶକ ଓ ପାଠକର, ଆଦର୍ଶ ପାଠାଗାର ପ୍ରଗତି ଉତ୍କଳ ସଂଘ, ରାଉରକେଲା କଲଚରାଲ ଏକାଡେମୀ, ଭଞ୍ଜ କଳାକେନ୍ଦ୍ର, ସାଇମା ଓ ପ୍ରବାସୀ କ୍ଳବ, ରାଉରକେଲା ମ୍ୟୁଜିକ୍ ସର୍କଲ ଇତ୍ୟାଦି ଅନୁଷ୍ଠାନମାନ ପ୍ରତି ବର୍ଷ ପ୍ରାୟ ଏ ସହରକୁ ଏକ ସାଂସ୍କୃତିକ ସମନ୍ୱୟ ପାଇଁ କିଛି ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ କଳାକାରମାନଙ୍କୁ ଆଣିଥାନ୍ତି । କିନ୍ତୁ ବ୍ୟକ୍ତି କେନ୍ଦ୍ରିକ ଜୀବନଭିତ୍ତି ଏସହର ଧୀରେ ଧୀରେ ନିଜ ମଧ୍ୟରେ ସୀମିତ ରହେ । ଆଜିକାଲି ଅଧିକାଂଶ ସମୟରେ ପ୍ରେକ୍ଷାଳୟମାନ, ସଭାଗୃହମାନ, ଦର୍ଶକଙ୍କର ଗ୍ୟାଲେରୀମାନ ଶୂନ୍ୟ ହୋଇପଡ଼ିଥାଏ । ତାର ଏକମାତ୍ର କାରଣ, ଏଠି କଳା ପାଇଁ କଳା ପରିବର୍ତ୍ତରେ ବ୍ୟବସାୟ ପାଇଁ କଳାର ସ୍ରୋତ ପ୍ରବାହିତ ହେଉଅଛି । ତେଣୁ ଅନ୍ୟପ୍ରତି ସମବେଦନା, ଆକର୍ଷଣ, ସହାନୁଭୂତି, ଶ୍ରଦ୍ଧା, ଦର୍ଶକ ବା ଶ୍ରୋତାମାନଙ୍କର ରହୁନାହିଁ । ଯେ ପର୍ଯ୍ୟନ୍ତ ଏ ସହରରେ ଶ୍ରୋତା, ଦର୍ଶକ ଓ କଳାକାର ମଧ୍ୟରେ ଏକ ମାନସିକ ମିଳନ ହେବ ନାହିଁ, ସେ ପର୍ଯ୍ୟନ୍ତ ଏଇ ମାଟିରେ ଅଛି ଏକ ସୁନନ୍ଦା, ବସମିଲ୍ଲା ଜନ୍ମନେବା ଓ ବଞ୍ଚିରହିବା ଅସମ୍ଭବ କଥା, କେତେକ ଅର୍ଥଲୋଭୀ ସଂସ୍ଥା ଓ କେତେକ ଅର୍ଥଲୋଭୀ କଳାକାର, ସାଧାରଣ ଅଭିଭାବକମାନଙ୍କୁ ନାନା ଭାବରେ ଉତ୍ସାହିତ କରି ଶିକ୍ଷା ପ୍ରଦାନ କରୁଛନ୍ତି । ବର୍ତ୍ତମାନ ସର୍ବସାଧାରଣ ଅନୁଷ୍ଠାନ ପ୍ରତି କାହାର ଆକର୍ଷଣ ରହୁନାହିଁ । ପ୍ରତି ଘରେ ଘରେ ଅନୁଷ୍ଠାନ ଓ ସାର୍ଟିଫିକେଟ ପ୍ରଦାନ ମାଧ୍ୟମରେ ଯେଉଁ କଳା ଶିକ୍ଷା ପ୍ରଦାନ କରାଯାଉଛି, ତାହା ଚିରନ୍ତନ କଳାରେ ଏ ସହରକୁ ବୁଦ୍ଧିମନ୍ତ କରିବ ବୋଲି ଯଥେଷ୍ଟ ସନ୍ଦେହ ହୁଏ ।

ଆଜି ଏ ବିରୋଧାଭାସ ଦେଖିଲେ ସମ୍ପୂର୍ଣ୍ଣ ଅବଗତ ହୁଏ ଯେ ଶିଳ୍ପଠାରୁ ସଂସ୍କୃତି

ଅନେକ ଭିନ୍ନ । ଶିଳ୍ପ ଓ ସଂସ୍କୃତି, ନୂତନତା ଓ ପ୍ରାଚୀନତା ମଧ୍ୟରେ ଏକ ସଂଘର୍ଷ । ସେଇଁ ସଂଘର୍ଷ ମଧ୍ୟରେ ଏ ସହର । ଏ ସହରର ମଣିଷମାନେ ଏ ଯାଏ ବି ନିଷ୍ପତ୍ତି କରିପାରି ନାହାନ୍ତି କଳା, କଳା ପାଇଁ ନା କଳା ବ୍ୟବସାୟ ପାଇଁ··· ?

ରାଉରକେଲା ଏକ ଶିଳ୍ପକ୍ଷେତ୍ର, ସର୍ବଧର୍ମ ସମନ୍ୱୟର ଏ ସହର ରାଉରକେଲା, ଏଠି ବିଦେଶୀ ଅତିଥି ଆସେ, ପରିବ୍ରାଜକ ଆସନ୍ତି, ଜର୍ମାନ ଆସନ୍ତି, ଇଂରେଜ ଆସନ୍ତି, କିନ୍ତୁ ରାଉରକେଲାର କଳାରେ ଆଭିଭୂତ ହୋଇ ଇଲଆନା ପଛ କେହି ଅଟକାଯାଇ ନାହାନ୍ତି ଏଇ ମହାସ୍ରୋତରେ ।

ଅତି ଦୁଃଖ ଓ ବିଡ଼ମ୍ବନାର କଥା, 'ଉତ୍କଳ'—ଯାହା ହେଉଛି ଉତ୍କୃଷ୍ଟ କଳାର ଦେଶ ବୋଲି ଇତିହାସ ସାକ୍ଷୀଦିଏ । ସେଇ ଦେଶ ଆନ୍ତର୍ଜାତିକ କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଥିବା କଳାକାରଙ୍କୁ ନିଜ ଭୂଇଁରେ ଆଶ୍ରୟ ଦେଇପାରେନା । ଗୁରୁ କେଳୁଚରଣ, କୁମାରୀ ସୁନନ୍ଦା ଓ ଆହୁରି ଅନେକେ ନିଅନ୍ତି, କଲିକତା, ଦିଲ୍ଲୀ, ବମ୍ବେ ନଗରୀର ଆଶ୍ରୟ । ଏହାର ଜବାବ୍ ଓଡ଼ିଶା ସରକାରଙ୍କୁ ଦବାକୁ ପଡ଼ିବ, ରାଉରକେଲା ବାସୀଙ୍କୁ ଦେବାକୁ ପଡ଼ିବ – ଓଡ଼ିଶାର ଅଗଣିତ ଶ୍ରୋତାବନ୍ଧୁଙ୍କୁ ଦବାକୁ ପଡ଼ିବ ।

କଥା ପ୍ରସଙ୍ଗରେ ଦିନେ ସଙ୍ଗୀତ ସୁଧାକର ବାଳକୃଷ୍ଣ ଦାସ କହୁଥିଲେ, ତାଙ୍କର ସାଧନାର କଥା । କଲିକତାରେ ଥାଆନ୍ତି ଗୁରୁଙ୍କ ନିକଟରେ । ସାତ ଘଣ୍ଟାରୁ ପ୍ରତ୍ୟହ ଅଭ୍ୟାସ କରିବାକୁ ପଡେ – ଗୁରୁଙ୍କ ନିର୍ଦ୍ଦେଶ । ସାମନାରେ ଗୋଟିଏ ତାମ୍ରପାତ୍ର— ସାଧନା ସମୟରେ ଧ୍ୟାନ ରହିବ ନାହିଁ । ଦେହରୁ ଗମ୍ ଗମ ହୋଇ ଝାଳ ବାହାରୁଛି । ତାମ୍ରପାତ୍ରଟି ଝାଳରେ ପୂର୍ଣ୍ଣ ହେବାଯାଏ—ଅଭ୍ୟାସ ଚାଲୁରହିବ । ନହେଲେ ଗୁରୁ ନୂଆ ତାନ୍‌ଟିଏ ମଧ୍ୟ ଦେବେ ନାହିଁ । କିନ୍ତୁ ଅତ୍ୟନ୍ତ ପରିତାପର ବିଷୟ, ବର୍ତ୍ତମାନ ଏଇ ବ୍ୟବସାୟଗତ ସହରମାନଙ୍କରେ ବୁଝିହୁଏ ନାହିଁ, ଗୁରୁ କିଏ ? ଶିଷ୍ୟ କିଏ ? ଏଠି ଶିଷ୍ୟଠାରୁ ଗୁରୁମାନଙ୍କର ସଂଖ୍ୟା ଯଥେଷ୍ଟ ବେଶୀ । ବର୍ଷେ ଦୁଇ ବର୍ଷ ସଙ୍ଗୀତ ବା ନୃତ୍ୟଶିକ୍ଷା କରି ସେ ଗୁରୁ ଆସନରେ ଅଧିଷ୍ଠିତ ହୁଏ । ପରବର୍ତ୍ତୀ କୌଣସି ମହାମାନବ ନାମରେ ଆରମ୍ଭ କରେ ଏକ କଳା ଅନୁଷ୍ଠାନ । ଏ ସ୍ରୋତ ଭାରତରେ ସର୍ବତ୍ର ଚାଲିଛି; ଫଳ ସ୍ୱରୂପ ଆଉ ତାନସେନ୍, ଆଲ୍ଲାଉଦ୍ଦିନ ସୃଷ୍ଟି ହେଉ ନାହାନ୍ତି । ଯଦିଓ ଆଧୁନିକ କଳାକ୍ଷେତ୍ର ବହୁ ଦିଗରେ ଖ୍ୟାତି ଓ ସମ୍ମାନ ଲାଭ କରିଛି ତାର ଆପଣାର ଷ୍ଟାଇଲ୍‌ରେ ।

ସାଧନା ପାଇଁ ଏଠି କ୍ଷେତ୍ର ନାହିଁ । ଆନ୍ତରିକତା ନାହିଁ । ସେକ୍ସ ମ୍ୟୁଜିକ୍, ବ୍ରେକ ଡ୍ୟାନସ, ପପ୍ ସଙ୍ଗ୍ ଇତ୍ୟାଦି ରାଉରକେଲା କ୍ଷେତ୍ରକୁ ଅଧିକା ପରିମାଣରେ

କଳୁଷିତ କରୁଛି । ଏଠାକାର ଉଚ୍ଚପଦସ୍ଥମାନେ ତାଙ୍କର କର୍ମଜୀବନ, ପରିସର, ନିଜ ପରିବାର, ଜମୀନ କ୍ଲବ, ରାଉରକେଲା କ୍ଲବ ଓ ବ୍ରାହ୍ମଣୀ କ୍ଲବର ସୀମା ବହିର୍ଭୂତ ହେବା ପାଇଁ ଦ୍ୱିଧାବୋଧ କରନ୍ତି । ଏଠି ଡେମୋକ୍ରେସି ବା ଗଣତନ୍ତ୍ର ନାହିଁ । ଯେଉଁ ଶ୍ରେଣୀ ମଧ୍ୟରେ ଅଛି, ସେମାନଙ୍କର ହାତରେ କ୍ଷମତା ବା ଅର୍ଥ କିଛି ନାହିଁ । ତେଣୁ ଏଠି ପ୍ରାକୃତିକ ସମ୍ପଦ, ସୌନ୍ଦର୍ଯ୍ୟବୋଧ, ଅର୍ଥ ସୁଲଭତା ଓ ଅନ୍ୟାନ୍ୟ ବ୍ୟବସ୍ଥାମାନ ଥାଇ ସୁଦ୍ଧା, କଲିକତା, ଦିଲ୍ଲୀ, ବମ୍ବେ, ମାଡ୍ରାଜ ପରି ସହରରେ ହେଉଥିବା ପରିପୁଷ୍ଟ କଳା ପରି, ଏଠାରେ କଳାତ୍ମକ ପ୍ରଗତି ଯାହା ହବାକଥା ହେଉନାହିଁ ।

'ତମ ସୋ ମା ଜ୍ୟୋତିର୍ଗମୟ' · ···

ଅନ୍ଧକାର ରାସ୍ତା ମଧ୍ୟରୁ ସାଉଁଟି ଆଣିବା ପାଇଁ ଏଠି ଉପଯୁକ୍ତ ଗୁରୁ ଓ ଭଲ ଅନୁଷ୍ଠାନର ଅଭାବ । ଅନ୍ୟପ ଅଭିଭାବକଟିଏ ତାର ଇଚ୍ଛା ସତ୍ତ୍ୱେ ବି କଳାତ୍ମକ ବିକାଶ ପାଇଁ ତାର ପିଲାଟିକୁ ତାଲିମ୍ ସକାଶେ ଦିଲ୍ଲୀ ବା ବମ୍ବେ ପଠାଇବାକୁ ସକ୍ଷମ ହେଉ ନାହିଁ । ଆଜି ଗୋଟିଏ ଅଭିଭାବକ ତାର ପୁଅ ବା ଝିଅଟିର ଶିକ୍ଷା ପାଇଁ ଗୃହଶିକ୍ଷା ଟ୍ୟୁସନ୍ ଶିକ୍ଷକ ନିଯୁକ୍ତ କରିବାକୁ ବାଧ୍ୟ ହେଉଛି । ନହେଲେ ଉପାର୍ଜନ ପାଇଁ ସିଟ୍‌ଟିଏ ମିଳିବା ସମ୍ଭବ ହେବ ନାହିଁ । ତେଣୁ ଏହା ମୁକ୍ତ କଣ୍ଠରେ କୁହାଯାଇପାରେ, ସାଂସ୍କୃତିକ ବିକାଶ କ୍ଷେତ୍ରରେ ରାଉରକେଲା ବିଶେଷତଃ ଶେଷ ଦଶନ୍ଧି ମଧ୍ୟରେ ବହୁଳଭାବରେ ଅନେକ ଅନୁଷ୍ଠାନ ଓ ବ୍ୟକ୍ତିଦ୍ୱାରା ଏକ ସଫଳ ସାଂସ୍କୃତିକ ବିକାଶ (ନୃତ୍ୟ ଶିକ୍ଷା ଓ ସଙ୍ଗୀତ ଶିକ୍ଷା ମାଧ୍ୟମରେ) ଆଣିପାରିଛି । କିନ୍ତୁ କଳା, ପରିମାଣ ଦ୍ୱାରା ସ୍ୱୀକୃତ ହୁଏନା, କଳା ତାର ଗୁଣ ବା ମୂଲ୍ୟଦ୍ୱାରା ସ୍ୱୀକୃତ ହୋଇଥାଏ । ତେଣୁ ରାଉରକେଲାର ସାଂସ୍କୃତିକ ପ୍ରଗତି ପାଇଁ, ଏଥି ମଧ୍ୟରେ ସଂଶ୍ଳିଷ୍ଟ ଥିବା ପ୍ରତ୍ୟେକ କଳାକାର, ଶିଳ୍ପୀ, ଗୁରୁ ଓ ପରିଚାଳକ, ସଙ୍ଗଠକମାନେ ଏ ଦିଗରେ ଯତ୍ନଶୀଳ ହେଲେ, ଏ ସହର ମଧ୍ୟ ଦିନେ ଭବିଷ୍ୟତରେ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ କଳାକାର ସୃଷ୍ଟି କରିବାରେ ସକ୍ଷମ ହେବ । ଧ୍ରୁପଦୀ ସଂସ୍କୃତିର ଚେର ମାଡ଼ିବା ପୂର୍ବରୁ ଅପସଂସ୍କୃତିର ବାଲିଙ୍ଗ ଏଠିକି ମାଡ଼ିଯାଇଛି । ଅପସଂସ୍କୃତି ମଧ୍ୟ ଏକ ନିର୍ଦ୍ଦିଷ୍ଟ ପ୍ରକାରର ସଂସ୍କୃତି । ତେଣୁ ଏହି ଅପସଂସ୍କୃତି ମଧ୍ୟରେ ନବ୍ୟ ସଂସ୍କୃତିର ଅନ୍ୱେଷଣ ରାଉରକେଲାର ବୈଶିଷ୍ଟ୍ୟ । ରାଉରକେଲାରେ ଏହି ଅନ୍ୱେଷଣ ସାର୍ଥକ ହେଉ ।

-*-

# । ରାଉରକେଲାରେ ମୋ ମଞ୍ଚ ଜୀବନ ।

❋ ଭବାନୀ ଶଂକର ପଣ୍ଡା

୧୯୫୯ ଫେବୃଆରୀ ମାସରେ ମୁଁ ମୋର ସ୍ୱପ୍ନର ସହର କଟକ ଛାଡ଼ିଆସି ରାଉରକେଲାରେ ପହଞ୍ଚିଲି । ସେଇ ମାସ ୨୨ ତାରିଖରେ ମଧ୍ୟ ମୁଁ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ନର୍ସ ହଷ୍ଟେଲରେ ନାଟକର ରିହର୍ସାଲ ଦେଖିଛି । ନାଟକ ଥିଲା 'ମାଣିକଯୋଡ଼ି' ଏବଂ କଟକର ନାଟ୍ୟ ଜଗତରୁ ସେଇଦିନହିଁ ମୋତେ ବିଦାୟ ନେବାକୁ ପଡ଼ିଥିଲା । ମୋର ବନ୍ଧୁ ବାନ୍ଧବୀ ଶୁଭେଚ୍ଛୁ ଏବଂ ନାଟ୍ୟ ଜଗତର ଅଗଣିତପ୍ରେମୀ ମୋତେ ବିଦାୟ ଦେବାକୁ ଷ୍ଟେସନକୁ ଆସିଥିଲେ ଏବଂ ମୁଁ ଅଶ୍ରୁଳ ନୟନରେ ସେମାନଙ୍କଠାରୁ ବିଦାୟ ନେଇଥିଲି । ସେତେବେଳେ ମୋର ମନେ ହେଉଥିଲା ମୋର ଜୀବନର ସବୁ ସ୍ୱାଦ, ସବୁ ରସ ମୋଠାରୁ ଛଡ଼ାଇନେଇ ସିଠା ଫୋପାଡ଼ିଲା ପରି ମୋତେ ଫୋପାଡ଼ି ଦିଆଗଲା ଶିଳ୍ପ ନଗରୀ ରାଉରକେଲାକୁ । ତେଣୁ ମୁଁ ଗୋଟାଏ ବିତୃଷ୍ଣା ମନନେଇ ରାଉରକେଲାରେ ପହଞ୍ଚିଲି । ମନଟା ମୋର ବିଷେଇ ଉଠିଲା—କେବଳ ଏଇ ରାଉରକେଲା ପାଇଁ ମୋତେ ମୋର ଅତିପ୍ରିୟ କଟକ—ମୋର ପ୍ରିୟ ନାଟକ ଜଗତ ଏବଂ ମୋର ନାଟକର ଅଗଣିତ ଦର୍ଶକ ବନ୍ଧୁମାନଙ୍କୁ ମୋତେ ଛାଡ଼ିବାକୁ ପଡ଼ିଲା—ଦୂରେଇ ଆସିବାକୁ ପଡ଼ିଲା । ଫେବୃଆରୀ ପଚିଶ ତାରିଖରେ ମୁଁ ମୋର କର୍ମକ୍ଷେତ୍ରରେ ଯୋଗଦେଲି । ସବୁ ନୂଆ ଲାଗୁଥାଏ, ମନେ ହେଉଥାଏ ଯିମିତି ଓଡ଼ିଶା ବାହାରର କୋଉ ଗୋଟାଏ ଅଞ୍ଚଳକୁ ମୁଁ ପଶି ଆସିଛି । ବିଭିନ୍ନ ପ୍ରକାରର ଲୋକ, ବିଭିନ୍ନ ପ୍ରକାରର ଭାଷା, ବିଭିନ୍ନ ଢଙ୍ଗର ଚଳଣି—ଆମ କାରଖାନା ଗଢି ତୋଳିବାକୁ ଆସିଥିବା ଅସୁମାରି ବିଦେଶୀ ପରିବାର ।

ଏସବୁ ଭିତରେ ମୁଁ କଳାକୁ ଖୋଜି ପାଉନଥାଏ । ଯିମିତି ଲାଗୁଥାଏ କୁଆଡ଼େ ଗଲା ଆମର ଓଡ଼ିଆ ସଂସ୍କୃତି—ଆମ ନାଟକ ଓ ଯାତ୍ରାର ପରମ୍ପରା । ତଥାପି ତା'ର ଭିତରେ ଅଣନିଶ୍ୱାଶୀ ହୋଇ ବୁଲୁବୁଲୁ ହଠାତ ଜଣେ ବନ୍ଧୁ କହିଲେ ଦିନେ ସନ୍ଧ୍ୟାରେ, "ଚାଲ ଆଜି ଗୋଟାଏ ନାଟକର ରିହର୍ସାଲ ଦେଖିଯିବା—କଟକରୁ ଅଭିନୟ କରିବାକୁ ଆର୍ଟିଷ୍ଟ ଆସିଛନ୍ତି—ଏଠାକାର ଓଡ଼ିଆ ନାଟକର ଖ୍ୟାତନାମା ଶିଳ୍ପୀ ଓ ନିର୍ଦ୍ଦେଶକ ମଧ୍ୟ ଅଛନ୍ତି" । ଅନ୍ଧାର ଭିତରେ ମେଞ୍ଚାଏ ଆଲୋକର ସନ୍ଧାନ ପାଇଲି ଯିମିତି ଗଲି । ନାଟକ ଥିଲା ଲକ୍ଷ୍ମୀଧର ନାୟକଙ୍କର "ଲାଲ ଗୁଲୁକ୍" । ନିର୍ଦ୍ଦେଶନା ଦେଉଥିଲେ ଲକ୍ଷ୍ମୀଧର ବାବୁଙ୍କର ସାନଭାଇ ବନ ବିହାରୀ ନାଏକ ।

ସେତେବେଳେ ଲକ୍ଷ୍ମୀଧର ବାବୁ ମଧ୍ୟ ଥାଆନ୍ତି ରାଉରକେଲାରେ—ସେ ମଧ୍ୟ ମଝିରେ ମଝିରେ ଆସନ୍ତି ଉତ୍ସବମେଳ ଦେଖିବାକୁ । ମୁଁ କିଛିଦିନ ଯିବା ଆସିବା କରିବା ପରେ ସମସ୍ତଙ୍କ ସାଙ୍ଗରେ ଘନିଷ୍ଠ ପରିଚୟ ହେଲା । ମୋର ଆଗ୍ରହ ଓ ଉତ୍ସାହ ଦେଖି ମୋତେ ଅଭିନୟ କରିବାର ସୁଯୋଗ ମଧ୍ୟ ମିଳିଲା ସେଇ ନାଟକରେ । ସେତେବେଳେ ଜାଣିଲି ରାଉରକେଲାର ଏଇ ଜନସମୁଦ୍ର ଭିତରେ ଓଡ଼ିଆଙ୍କର ଗୋଟାଏ ଅଲଗା ସ୍ଥିତି—ଅଲଗା ପରିଚୟ ଏବଂ ଗୋଟାଏ ବିରାଟ ଜନସମର୍ଥନ ରହିଛି ସାଂସ୍କୃତିକ କ୍ଷେତ୍ରରେ । ଆଖିବୁଜି ଡେଇଁ ପଡ଼ିଲି ସେ ସମୁଦ୍ର ଭିତରକୁ—କୂଳକୁ ନଫେରି ଆଗେଇ ଗଲି ଆହୁରି ଗଭୀର ଜଳରାଶି ଭିତରକୁ ।

ସେତେବେଳେ କେତେ ଗୁଡ଼ାଏ ଅନୁଷ୍ଠାନ ମୁଣ୍ଡ ଟେକିଲେଣି । ମୋ ଜାଣିବାରେ "ଉତ୍କଳ ସମିତି" ନାଁରେ ଗୋଟ ଏ ଅନୁଷ୍ଠାନ ବିରାଟ ସମାରୋହରେ ଆରମ୍ଭ ହୋଇ ମ୍ଳାନ ହେବାକୁ ବସିଲାଣି – ସବୁଠାରୁ ପୁରୁଣା ସାଂସ୍କୃତିକ ଅନୁଷ୍ଠାନ ହିସାବରେ ମୁଣ୍ଡ ଟେକିଥାଏ, "ଆଦର୍ଶ ପାଠାଗାର" ଏବଂ ସେମାନେ "ଉପେନ୍ଦ୍ର ଭଞ୍ଜ ଜୟନ୍ତୀ" ପ୍ରତିବର୍ଷ ମହାସମାରୋହରେ ପାଳନ କରୁଥାନ୍ତି । ସେଇଟାହିଁ ଥିଲା ସେତେବେଳର ଗୋଟାଏ ବାର୍ଷିକ ସମାରୋହ ଓଡ଼ିଆଙ୍କର । ସମସ୍ତେ ଯେମିତି ଅନେଇ ବସିଥାନ୍ତି ସେ ସାଂସ୍କୃତିକ ସମାରୋହଟିକୁ ଆକୁଳ ହୋଇ ବର୍ଷସାରା । ଓଡ଼ିଶାର ବହୁ ଖ୍ୟାତନାମା ବକ୍ତା ଏବଂ ସାଂସ୍କୃତିକ ଅନୁଷ୍ଠାନ ଯୋଗଦିଅନ୍ତି ସେଇ ସମାରୋହରେ ହଜାର ହଜାର ଦର୍ଶକ ଉପଭୋଗ କରନ୍ତି । ଏଇ ଅନୁଷ୍ଠାନ ଆଜିସୁଦ୍ଧା ସେଇ 'ଭଞ୍ଜ ଜୟନ୍ତୀ' ପାଳନ କରି ଆସୁଅଛି ପ୍ରତିବର୍ଷ । ତା'ପରେ ହଠାତ ଯିମିତି ଗୋଟାଏ ସାଂସ୍କୃତିକ ଜାଗରଣ ଆସିଲା ଲୋକଙ୍କ ମନରେ—ବହୁ ସଂଖ୍ୟାରେ ଛୋଟ ବଡ଼ ବହୁ ଅନୁଷ୍ଠାନ ଆସ୍ତେ ଆସ୍ତେ ମୁଣ୍ଡ ଟେକିଲେ । ଠିକ୍ ସେତିକିବେଳେ ଆମେ କେତେ ଜଣ ଶିଳ୍ପୀ ବନ୍ଧୁ ମିଶି ଗୋଟାଏ ଛୋଟ ଅନୁଷ୍ଠାନର ମୂଳଦୁଆ ଦେଲୁ ଗୋଟାଏ ବିରାଟ କିଛି କରିବାର ଯୋଜନା ନେଇ । ଏଇ ଅନୁଷ୍ଠାନର ନାଁ ଦେଲୁ "ଲାଇଫ ଏଣ୍ଡ ଡ୍ରିମ" । ଗୋଟାଏ ନୃତ୍ୟ ଏବଂ ସଙ୍ଗୀତ ମହାବିଦ୍ୟାଳୟ ପ୍ରତିଷ୍ଠା କରିବାର ସ୍ୱପ୍ନନେଇ ଆରମ୍ଭ ହେଲା ଏଇ ଅନୁଷ୍ଠାନ ଏବଂ ତାର ସମସ୍ତ ଖର୍ଚ୍ଚ ବହନ କରିବାର ମାଧ୍ୟମ ହେଲା କେବଳ ନାଟକ ପରିବେଷଣ । ରାଉରକେଲାରେ ସେତେବେଳେ ମଧ୍ୟ ଚିତ୍ରିତ ସିନ ଏବଂ ଉଇଙ୍ଗସ୍ ଫୁଲରେ ନାଟକ ପରିବେଷଣ କରାଯାଉଥାଏ । ପ୍ରଥମଥର ପାଇଁ ଆମର ଏଇ ସଂସ୍ଥା ତରଫରୁ ଆମର ପ୍ରଥମ ନାଟକ ପରିବେଷଣ କରାଗଲା "କଳା ଓ କଳଙ୍କ" ଗୋଟାଏ ପୂର୍ଣ୍ଣାଙ୍ଗ ସେଟ ମାଧ୍ୟମରେ, ସାତ ନମ୍ବର କମ୍ୟୁନିଟି ସେଣ୍ଟରର ରଙ୍ଗମଞ୍ଚରେ । ନାଟକ ରଚନା କରିଥିଲେ ଶ୍ରୀ ଦୁର୍ଗା ଦାସ, ସଂପୂର୍ଣ୍ଣ ମଞ୍ଚ (ସେଟ) ନିର୍ମାଣ ଏବଂ ପରିଚାଳନା ଦାୟିତ୍ୱରେ ଥିଲେ ଶ୍ରୀ ହିମାଂଶୁ ଦାସ ଏବଂ ଶ୍ରୀ ମୋହିତ ଦାଶ—ନିର୍ଦ୍ଦେଶନାର ଦାୟିତ୍ୱ ମୋ ଉପରେ ଥିଲେ ମଧ୍ୟ ପ୍ରଧାନ ଚରିତ୍ରରେ ମୋତେ ହିଁ ଅଭିନୟ କରିବାକୁ

ପଡ଼ିଥିଲା । ମୋର ଅଭିନୟ ଜୀବନରେ ସେଇ ଶିଳ୍ପୀ ଭୂମିକାରେ ଅଭିନୟ, ମୋ ନିଜ ଦୃଷ୍ଟିରେ ଗୋଟାଏ ମାଇଲଷ୍ଟୋନ୍—ସେମିତି ସନ୍ତୋଷଜନକ ଅଭିନୟ ମୁଁ ବୋଧହୁଏ ଏ ଯାବତ କରିନାହିଁ । ତା' ପରେ ପରେ ଆମର ଏଇ ସଂସ୍ଥା 'ଲାଇଫ ଏଣ୍ଡ ଶାଡୋ' ତରଫରୁ ଅନେକ ନାଟକ ଆମେ ମଞ୍ଚସ୍ଥ କରିଛୁ—ଶିଖା, ଧୂର୍ତ୍ତ, ତୃଷ୍ଣା, ଈଶ୍ୱର ସେକ୍ରେଟାରୀ, ଅରଣ୍ୟ ଫସଲ, ଗଙ୍ଗାତୀର୍ଥ, ଭରସା, ଯୋଗ ବିୟୋଗ ଏବଂ ଆହୁରି କେତେ । ପ୍ରତ୍ୟେକଟି ନାଟକରେ ଆମର ମଞ୍ଚଶୈଳୀ ଆଲୋକ ସଂପାତ ଏବଂ ନାଟକର ଅନ୍ୟାନ୍ୟ ଅଙ୍ଗବିଶେଷର ଉତ୍କର୍ଷର ଉନ୍ନତ ହିଁ ହୋଇଛି । ଏମିତି ହିଁ ମୋର ଶିଳ୍ପ ଜୀବନର ପରିପୂର୍ଣ୍ଣତା ଆସିଛି । ଏଇ ସଂସ୍ଥା ଜରିଆରେ ଆମେ ବହୁବାର ବିଭିନ୍ନ ସର୍ବଭାରତୀୟ ସ୍ତରରେ ନାଟକ ପ୍ରତିଯୋଗିତାରେ ସଫଳତାର ସହ ଭାଗ ନେଇଛୁ । ସର୍ବୋପରି ଆମ ସଂସ୍ଥା ରାଉରକେଲାରେ ପ୍ରଥମଥର ପାଇଁ ଆଲୋକ ସଂପାତ ଦ୍ୱାରା ବିଭିନ୍ନ ମଞ୍ଚମାୟା ସୃଷ୍ଟି କରିବାରେ ମଧ୍ୟ ଅଗ୍ରଣୀ ହିସାବରେ ଆଜିସୁଦ୍ଧା ଗଣ୍ୟ । ଏଇ ସଂସ୍ଥା ଲାଇଫ ଏଣ୍ଡ ଶାଡୋ ଥିଲା ମୋର ଜୀବନ ଏବଂ ରାଉରକେଲାର ମୋ ମଞ୍ଚ ଜୀବନର ପରିପୂର୍ଣ୍ଣତା ଆଣିବାର ଏକମାତ୍ର ଅବଲମ୍ବନ ।

ରାଉରକେଲାରେ ତିରିଶ ବର୍ଷରୁ ଉର୍ଦ୍ଧ୍ୱ ସମୟ ମୋର କଟିଛି ଆଜିସୁଦ୍ଧା । ମୋ ନିଜ ସଂସ୍ଥା ଛାଡ଼ିଦେଲେ ଅନ୍ୟାନ୍ୟ ବହୁ ସଂସ୍ଥା ସହିତ ପ୍ରତ୍ୟକ୍ଷ ଭାବରେ ବା ପରୋକ୍ଷ ଭାବରେ ଜଡ଼ିତ ହୋଇଛି । ନାଟକ ପରିବେଷଣ କରିବାର ଉଦ୍ଦେଶ୍ୟ ନେଇ ଯୋଉ ସଂସ୍ଥା ଗୁଡ଼ିକ ମୁଣ୍ଡ ଟେକିଲେ ସେମାନେ ହେଲେ କଳିଙ୍ଗ କଳା ପରିଷଦ—ଡ୍ରିମଲ୍ୟାଣ୍ଡ ସ୍ପନ୍ଦନ—ରଙ୍ଗମଞ୍ଚ ଆର୍ଟ ଏଣ୍ଡ ଆର୍ଟିଷ୍ଟ—ଇସ୍ପାତ କଳାପରିଷଦ—ଯୁଗବାଣୀ— ପଞ୍ଚମ ବେଦ—ପ୍ରଗତି ଉତ୍କଳ ସଂଘ ଶିଳ୍ପୀ ଗୋଷ୍ଠୀ—ମଧୁମାଛି ଏବଂ ଆହୁରି କେତେ । ନାଟକରେ ବିଭିନ୍ନ ବିଭାଗର ଅଭିଜ୍ଞତା ହେତୁ ପ୍ରାୟ ସବୁ ସଂସ୍ଥାଙ୍କ ସାଙ୍ଗରେ ନିବିଡ଼ ଭାବରେ ସଂପୃକ୍ତ ରହିବାର ସୁଯୋଗ ପାଇଛି – ଅନ୍ୟ ମାନଙ୍କଠାରୁ ବହୁ କଥା ଶିଖିବାର ସୁଯୋଗ ପାଇଛି ଏବଂ ଅନ୍ୟଙ୍କୁ ଦବାର ମଧ୍ୟ ।

ନାଟକ ଏବଂ ମଞ୍ଚ ପୃଷ୍ଠଭୂମିରେ ରାଉରକେଲାର ବହୁ ନାଟ୍ୟ ସଂସ୍ଥା– ଅଗଣିତ ନାଟକ ପ୍ରେମୀ—କଳାକାର ଗଣଙ୍କର ଅବଦାନ ମୋ ଜୀବନରେ ଅସୀମ ଏବଂ ସମସ୍ତଙ୍କଠାରେ ମୁଁ କୃତଜ୍ଞ ।

-☆-

# ଆଦର୍ଶ ପାଠାଗାର, ଭଞ୍ଜ ଜୟନ୍ତୀ ଓ ଭଞ୍ଜ ଭବନ

* ସଙ୍କର୍ଷଣ ପଣ୍ଡା

ଆଦର୍ଶ ପାଠାଗାର ଇଷ୍ଟାଉ ଜଗନ୍ନାଥ ସର୍ବପ୍ରଥମ ଜନପ୍ରିୟ ସମାଜ କଲ୍ୟାଣ ସାଂସ୍କୃତିକ ଅନୁଷ୍ଠାନ । ଏହାର ଜନ୍ମ ୧୯୪୮ ମସିହାରେ । ଏହାର ଲକ୍ଷ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମ ମାଧ୍ୟମରେ ରାଉରକେଲାର ନିଜ ସ୍ୱର, ନିଜ ବନ୍ଧୁ ପରିଜନମାନଙ୍କୁ ଏକାଠି କରି ଓ ଦେଶର କଲ୍ୟାଣ ସାଧନ କରିବା । ୧୯୫୫ ମସିହା ପୂର୍ବରୁ ଓଡ଼ିଆ ସାଂସ୍କୃତିକ ଚେତନା ସୀମିତ ଥିଲା । ଏହି ଅନୁଷ୍ଠାନହିଁ ସେମାନଙ୍କ ମଧ୍ୟରେ ନିଜ ଭାଷା ଓ ସାଂସ୍କୃତିକ ବିକାଶ ପାଇଁ ପ୍ରଥମେ ଚେଷ୍ଟାକଲା । ଏ ଅନୁଷ୍ଠାନ ସଭ୍ୟମାନଙ୍କ ମଧ୍ୟରେ ସୀମିତ ନୁହେଁ । ଏ ଅନୁଷ୍ଠାନକୁ ଶ୍ରେଣୀ, ଗୋଷ୍ଠୀ, ଧର୍ମ, ରାଜ୍ୟ ନିର୍ବିଶେଷରେ ସାହାଯ୍ୟ ଓ ସହଯୋଗ ମିଳେ । ଏ ଅନୁଷ୍ଠାନ ରାଉରକେଲା ବାସୀଙ୍କର, ପଶ୍ଚିମ ଓଡ଼ିଶା ତଥା ରାଜ୍ୟର ଏକ ପୁରାତନ ଓ ଜଣାଶୁଣା ଅନୁଷ୍ଠାନ ।

ଏହି ଅନୁଷ୍ଠାନକୁ ଗଢ଼ା ହେଲା—ପାଠାଗାର ଭାବେ । ନାମ ଦିଆଗଲା ଆଦର୍ଶ ପାଠାଗାର । ସମ୍ବିଧାନ ପ୍ରସ୍ତୁତ ହେଲା ଆଦର୍ଶ ଭାବେ । ପାଠାଗାରରେ ପ୍ରଥମେ କେତେ ଖଣ୍ଡ ବହି ସଂଗ୍ରହ କରି ପାଠାଗାର ପରିଚାଳନା କରାଗଲା । କେତୁତ ହିଦସ୍ୟମାନେ ଯୁବକ ଓ ପୌଢ଼ ପ୍ରତ୍ୟେକ ସନ୍ଧ୍ୟାରେ ଏକତ୍ରିତ ହୋଇ ପାଠାଗାରର କଳେବର ବଢ଼ାଇବାର ପରିକଳ୍ପନା କଲେ । ସେହି ପରିକଳ୍ପନାକୁ ବାସ୍ତବଭାବେ ରୂପଦେଇ ଆଜି ବହି ସଂଖ୍ୟା ୧୮୦୦୦ ପାଏ ହୋଇଛି । ଷ୍ଟିଲ ଆଲମିରା, ବୁକ୍ ସେଲଫ ଇତ୍ୟାଦିରେ ଭରପୁର ହୋଇ ରୁଚିସମ୍ପନ୍ନ ପାଠକର ମନଟାଣି ନେଉଛି । Reading roomରେ ନାନା ପ୍ରକାର ପତ୍ରପତ୍ରିକା ଭରପୁର ହୋଇଛି । ସଭ୍ୟ ଓ ରାଉରକେଲାର ଯେ କୌଣସି ବ୍ୟକ୍ତି Reading roomର ପତ୍ରପତ୍ରିକା ପଢ଼ି ମନ ଖୁସିରେ ଫେରନ୍ତି ।

ପାଠାଗାରର ସଭ୍ୟମାନଙ୍କ ସୁବିଧା ପାଇଁ ନାନା ପ୍ରକାର ବହିକୁ ସ୍ୱତନ୍ତ୍ର ବିଭାଗ କରାଯାଇଅଛି । ଉପନ୍ୟାସ, ଡିଟେକ୍ଟିଭ, ନାଟକ ପୁରାଣ ଓ ଧର୍ମଗ୍ରନ୍ଥ, ଗ୍ରନ୍ଥାବଳୀ, କବିତା, ଭ୍ରମଣ କାହାଣୀ, ଇତିହାସ, ସାହିତ୍ୟ ସମାଲୋଚନା, ଜ୍ଞାନ ବିଜ୍ଞାନ, କବିତା

ଓ ଅନ୍ୟାନ୍ୟ ବହି ସବୁ ସ୍ୱତନ୍ତ୍ର ବିଭାଗ ଦ୍ୱାରା ରଖାଯାଇଛି । କାର୍ଡ ସିଷ୍ଟମ ଦ୍ୱାରା କେଉଁ ବହି କିଏ ନେଇଛି, କେବେ ନେଇଛି ଓ ପାଠାଗାରରେ ଅଛି କି ନାହିଁ ଶୀଘ୍ର ଜଣାପଡେ । କେଟଲଗ୍ ଦ୍ୱାରା ସଭ୍ୟମାନେ ମନପସନ୍ଦ ମୁତାବକ ବହି ବାଛିପାରନ୍ତି । ଆଲଫାବେଟିକ୍ କେଟଲଗ୍ ଦ୍ୱାରା ପାଠାଗାରର ବହି ଅଛି କି ନାହିଁ ଶୀଘ୍ର ଜାଣିହୁଏ । ପାଠାଗାରର ହାରାହାରି ପ୍ରାୟ ୩୦୦ ସଭ୍ୟ ପ୍ରତ୍ୟେକ ବର୍ଷ ଥାଆନ୍ତି । ଏହା ବ୍ୟତୀତ ଆଜୀବନ ସଭ୍ୟ ମଧ୍ୟ ଅଛନ୍ତି । ବର୍ତ୍ତମାନ ପାଠାଗାର ରାଉରକେଲା ଷ୍ଟିଲପ୍ଲାଣ୍ଟ 2 BR. A/14, Sector-18 କ୍ୱାର୍ଟରରେ ପରିଚାଳିତ ହେଉଛି । ପାଠାଗାରର ଅନରାରି ଭାବେ ଜଣେ ମୁଖ୍ୟ ଲାଇବ୍ରେରିଆନ ଓ ଦୁଇଜଣ ଲାଇବ୍ରେରିଆନ ଥାଆନ୍ତି । ସପ୍ତାହରେ ୫ ଦିନ ସନ୍ଧ୍ୟାରେ ପାଠାଗାର ଖୋଲା ରହେ । ପାଠାଗାରର ୮-୧୦ଟି କାର୍ଯ୍ୟକାରୀ ବୈଠକ ବର୍ଷରେ ବସେ । ସେହି ବୈଠକରେ ସମସ୍ତ ପ୍ରକାର କାର୍ଯ୍ୟପନ୍ଥାର ସିଦ୍ଧାନ୍ତ ଗ୍ରହଣ କରାଯାଏ । ରାଉରକେଲାର ଜଣାଶୁଣା ବ୍ୟକ୍ତିଙ୍କୁ ନେଇ କାର୍ଯ୍ୟକାରୀ କମିଟି ଗଠା ହୋଇଛି । ନିର୍ବାଚନ ଦ୍ୱାରା ଏହି କମିଟି ଗଠାହୁଏ । ଥରେ ଗଠା ହେଲେ ତାହା ଦୁଇ ବର୍ଷଯାଏ କାର୍ଯ୍ୟକରେ ।

ଏହି ଅନୁଷ୍ଠାନ ଆନୁକୂଲ୍ୟରେ ପ୍ରତ୍ୟେକ ବର୍ଷ ବିଷୁବ ମିଳନ ମହାସମାରୋହରେ ଆଦର୍ଶ ପାଠାଗାର ପ୍ରାଙ୍ଗଣରେ ଅଥବା କେବେ କେବେ ଭଞ୍ଜ ଭବନରେ ପାଳନ କରାଯାଏ । ଉତ୍ସବରେ ମଧ୍ୟ ଏକ କବି ସମ୍ମିଳନୀ ଓ କବିତା ଆସରର ଆୟୋଜନ କରାଯାଇଥାଏ । ଦର୍ଶକ, ଭାବୁକ, ଲେଖକ ଓ କବି ଅଂଶ ଗ୍ରହଣ କରିଥାଆନ୍ତି । କବିମାନେ ସ୍ୱରଚିତ କବିତା ପାଠ କରନ୍ତି । ନୂତନ ବର୍ଷଟି ସୁଖପ୍ରଦ ହେଉବୋଲି ପରସ୍ପରକୁ ଶୁଭେଚ୍ଛା ଜଣାନ୍ତି । ବନ୍ଧୁ ମିଳନର ଏହା ଏକ ଅପୂର୍ବ ସୁଯୋଗ । ଓଡ଼ିଆ ସଂସ୍କୃତି ଅନୁସାରେ ମନମତାଣିଆ 'ପଣା' ବିତରଣ କରାଯାଏ ।

ଏହି ଅନୁଷ୍ଠାନର ଗୋପବନ୍ଧୁ ଜୟନ୍ତୀ ହେଉଛି ଦ୍ୱିତୀୟ ଉତ୍ସବ । ପ୍ରତ୍ୟେକ ବର୍ଷ ଅକ୍ଟୋବର ୯ ତାରିଖରେ ଗୋପବନ୍ଧୁ ଜୟନ୍ତୀ ସକାଳ ୭ଟା ସମୟରେ ସୁପର ମାର୍କେଟସ୍ଥିତ ଗୋପବନ୍ଧୁଙ୍କ ପ୍ରତିମୂର୍ତ୍ତିଠାରେ ପୁଷ୍ପମାଲ ଅର୍ପଣ କରି ପାଳନ କରାଯାଏ । ସନ୍ଧ୍ୟାରେ ପାଠାଗାର ପ୍ରାଙ୍ଗଣରେ ଓ କେବେ କେବେ ଭଞ୍ଜଭବନ ପ୍ରାଙ୍ଗଣରେ ପାଳନ କରାଯାଏ । ଏହି ଉତ୍ସବ ଉପଲକ୍ଷେ ସ୍କୁଲ ଓ କଲେଜ ଛାତ୍ର ଛାତ୍ରୀଙ୍କ ମଧ୍ୟରେ ଗୋପବନ୍ଧୁଙ୍କ ସାହିତ୍ୟ, କବିତା, ଦେଶସେବା ତ୍ୟାଗ, ରାଜନୀତି ଓ ଜୀବନୀ ଉପରେ ଏକ ପ୍ରତିଯୋଗିତା ହୁଏ । ବକ୍ତୃତା, ପ୍ରବନ୍ଧ ଓ କବିତା ପ୍ରତିଯୋଗିତାରେ ବିଜୟୀ ପ୍ରତିଯୋଗୀମାନଙ୍କୁ ପୁରସ୍କାର ବିତରଣ କରାଯାଏ । ଏହି ଉତ୍ସବରେ ଛାତ୍ର-ଛାତ୍ରୀ ଶିକ୍ଷକ-ଶିକ୍ଷୟିତ୍ରୀ, ରାଜନୀତିଜ୍ଞ, ଇତ୍ୟାଦି ସମସ୍ତେ ଅଂଶ ଗ୍ରହଣ କରନ୍ତି ।

ଏହି ଅନୁଷ୍ଠାନର ପ୍ରଧାନ ଓ ତୃତୀୟ ଉତ୍ସବ ହେଉଛି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ । ଏ ଜୟନ୍ତୀ ପାଠାଗାର ଆଜକୁ ୩୨ ବର୍ଷ ଧରି ପାଳନ କରି ଆସୁଛି । ଯେଉଁଦେବେଳେ ଦର୍ଶକଙ୍କଠାରେ ଭଞ୍ଜ ସାହିତ୍ୟ ଏକ ଅବୋଧ ଥିଲା, ଯେତେବେଳେ ୰ ବନ୍ଧୁ ପଟ୍ଟନାୟକ ଭଞ୍ଜ ସାହିତ୍ୟକୁ ସରଳ, ସହଜ କରି ତାଙ୍କର କଟକ, ଭୁବନେଶ୍ୱରରେ ଶ୍ରୀ ରଜତ କର, ଶ୍ରୀ ଗୌରୀ କୁମାର ବ୍ରହ୍ମା, ଶ୍ରୀ ଶରତ କର, କବି ପ୍ରସାଦ ମିଶ୍ର ଓ ଶ୍ରୀ ହୃଦାନନ୍ଦ ରାୟଙ୍କୁ ଶିଷ୍ୟରୂପେ ଗ୍ରହଣ କରି ଲୋକଲୋଚନକୁ ଆଣିବାକୁ ଚେଷ୍ଟା କରୁଥିଲେ, ଠିକ୍ ସେତେବେଳେ ଆଦର୍ଶ ପାଠାଗାର ସେହିମାନଙ୍କ ପ୍ରେରଣା ଓ ଉତ୍ସାହରେ ସର୍ବ ପ୍ରଥମେ ଆରମ୍ଭ କଲା ଭଞ୍ଜ ଜୟନ୍ତୀ । ସେତେବେଳେ ସାଂସ୍କୃତିକ ଉତ୍ସବ ରାଉରକେଲାରେ ମୋଟେ କିଛି ନଥିଲା । ଲୋକମାନେ କାରଖାନାରେ କଠିନ ପରିଶ୍ରମ କରି କୌଣସି ମନୋରଞ୍ଜନ କରିପାରୁନଥିଲେ । ଭଞ୍ଜ ଜୟନ୍ତୀ ପ୍ରଥମେ ଯେତେବେଳେ ଆରମ୍ଭ ହେଲା ସେତେବେଳେ ଲୋକମାନଙ୍କର ଆଗ୍ରହ ଓ ଉତ୍ସାହ ଦେଖିଲେ ଆଶ୍ଚର୍ଯ୍ୟ ଲାଗୁଥିଲା । ସର୍ବଭାରତୀୟ ରାଉରକେଲା ଇସ୍ପାତ ନଗରୀରେ ଅଣଓଡ଼ିଆମାନେ ଭଞ୍ଜ ସାହିତ୍ୟ ପ୍ରତି ଆକର୍ଷିତ ହେଲେ । ସେମାନଙ୍କ ପାଇଁ ମଧ୍ୟ ଇଂରାଜୀରେ ଭାଷଣ ଦେବାକୁ ପଡ଼ୁଥିଲା । ଭଞ୍ଜ ଜୟନ୍ତୀ ଉତ୍ସବରେ ପ୍ରତ୍ୟେକ ବର୍ଷ ଭଞ୍ଜ ସ୍ମରଣୀକା ପ୍ରକାଶ କରାଯାଉଛି । ଭଞ୍ଜ ଜୟନ୍ତୀ ଉତ୍ସବ ଯେତେବେଳେ ଆରମ୍ଭ ହେଲା ସେତେବେଳେ କର୍ମକର୍ତ୍ତାମାନଙ୍କୁ ବହୁତ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲା । ବକ୍ତା ସହଜରେ ମିଳିଲେ ମଧ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମ ପାଇଁ କଳାକାରଙ୍କୁ ପାଇବା ବଡ଼ କଷ୍ଟସାଧ୍ୟ ହେଉଥିଲା । ଖର୍ଚ୍ଚ ବହୁଳ ମଧ୍ୟ ହେଉଥିଲା । ତେଣୁ ବହୁତ ଚିନ୍ତାକରି ଆଦର୍ଶ ପାଠାଗାର ଏ ଅସୁବିଧାକୁ ଦୂର କରିବା ପାଇଁ ଓ ଓଡ଼ିଶାର ସଂସ୍କୃତିକୁ ଭାରତ ଦରବାରରେ ଠିଆ କରାଇବା ପାଇଁ ସୃଷ୍ଟି କଲା ଭଞ୍ଜ କଳାକେନ୍ଦ୍ର । ଏହି ଭଞ୍ଜ କଳାକେନ୍ଦ୍ର ରାଉରକେଲାରେ କାହିଁକି ସାରା ଭାରତରେ ଓଡ଼ିଶୀ ନୃତ୍ୟ । ଓଡ଼ିଶୀ ସଙ୍ଗୀତର ଶୈଳୀ ଦେଖାଇ ରାଉରକେଲାର ଅଭାବ ପୂରଣ କରିବା ସଙ୍ଗେ ସଙ୍ଗେ ସାରା ଭାରତର ଅଭାବ ପୂରଣ କରିପାରୁଛି । ପ୍ରଥମ ବର୍ଷ ଯେତେବେଳେ ଭଞ୍ଜ ଜୟନ୍ତୀ ଉତ୍ସବ ପାଳନ କରାଗଲା ରାଉରକେଲାରେ ଓଡ଼ିଶୀ ନୃତ୍ୟ ଓ ଓଡ଼ିଶୀ ସଙ୍ଗୀତ ଓ ଭଞ୍ଜ ସଙ୍ଗୀତ ପରିବେଷଣ ପାଇଁ ଦୁଇଟି ବଙ୍ଗୀୟ ଝିଅ ଶ୍ରୀମତି ସୁରେଖା ଓ ସୁଲେଖାଙ୍କୁ ଓଡ଼ିଶୀ ନୃତ୍ୟ ଶିକ୍ଷାଦେଇ ଭଞ୍ଜ ଜୟନ୍ତୀର ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷିତ କରାଯାଇଥିଲା । ଯାହାହେଉ ସେ ଦିନ ଆଉ ନାହିଁ । ଭଞ୍ଜ କଳାକେନ୍ଦ୍ର ଦ୍ୱାରା ତାହା ସବୁ ଅସୁବିଧା ଦୂର କରାଯାଇ ପାରିଛି ।

ଶହ ଶହ ଛାତ୍ର ଛାତ୍ରୀ ନୃତ୍ୟ, ସଙ୍ଗୀତ ଓ ବାଦ୍ୟ ଯନ୍ତ୍ରରେ ଯୋଗ୍ୟତା ହାସଲ କରି ପାରୁଛନ୍ତି । ଭଞ୍ଜ ଜୟନ୍ତୀ ଉତ୍ସବ ଯୋଗୁ ସୃଷ୍ଟି ହେଲା ଭଞ୍ଜ କଳାକେନ୍ଦ୍ର । ତା'ପରେ ସୃଷ୍ଟି ହେଲା "ଭଞ୍ଜ ଭବନ" । ଭଞ୍ଜ ଜୟନ୍ତୀରେ ଏତେ ଲୋକ ହେଲେ ଯେ

ରାଉରକେଲାରେ କୌଣସି ଖୋଲା ଜାଗାରେ ଉତ୍ସବ ପାଳନ କରିବା ସମ୍ଭବ ହେଉନ । ଧାଡ଼ି ନମ୍ବର କମ୍ୟୁନିଟି ସେଣ୍ଟର, ଅଠର ନମ୍ବର ସେକ୍ଟର ସ୍କୁଲ ପଡ଼ିଆ, ଅଠର ନମ୍ବର ସେକ୍ଟର କମ୍ୟୁନିଟି ସେଣ୍ଟର ଇତ୍ୟାଦି ସ୍ଥାନରେ ଭଞ୍ଜ ଜୟନ୍ତୀ ଉତ୍ସବର ସ୍ଥାନ ଅଭାବ ହେଲା । ଏହି ଅସୁବିଧାକୁ ଦୂର କରିବା ପାଇଁ ପାଠାଗାରର କର୍ମକର୍ତ୍ତା ଚନ୍ଦ୍ରା ଜଣ ପରିକଳ୍ପନା କଲେ "ଭଞ୍ଜ ଭବନ" । ଏହି ପରିକଳ୍ପନା କିଛି ଦିନ ପାଇଁ କଳ୍ପନାରେ ରହିଲା । ପାଠାଗାର ସବୁ ପ୍ରକାର ଚେଷ୍ଟା କରି ଇସ୍ପାତ କାରଖାନାର କର୍ତ୍ତୃପକ୍ଷ ଓ ଓଡ଼ିଶା ସରକାରଙ୍କ ସୁପାରିଶରେ ପାଠାଗାରକୁ ଭଞ୍ଜ ଭବନ ନିର୍ମାଣ ପାଇଁ ୩.୧୯ ଏକର ଜମି ଇସ୍ପାତ ମାର୍କେଟ ସମ୍ମୁଖରେ ମିଳିଲା । ପାଠାଗାର ଚେଷ୍ଟା କରି ଭଞ୍ଜ ଭବନ ନିର୍ମାଣ ପାଇଁ ରାଉରକେଲାର ସମସ୍ତଙ୍କର ସାହାଯ୍ୟ ନେଇ ଏକ ଟ୍ରଷ୍ଟବୋର୍ଡ ଗଠନ କରି ଟ୍ରଷ୍ଟବୋର୍ଡ ମାଧ୍ୟମରେ ଭଞ୍ଜ ଭବନର ପ୍ରଥମ ପର୍ଯ୍ୟାୟର କାର୍ଯ୍ୟଶେଷ କରିଛି । ଏଥିରେ ୧୦ ଲକ୍ଷ ଯାଏ ଟଙ୍କା ଖର୍ଚ୍ଚ ହୋଇଛି । ପୁଣି ଦ୍ୱିତୀୟ ପର୍ଯ୍ୟାୟର ନିର୍ମାଣ କାର୍ଯ୍ୟ ଏହା ମଧ୍ୟରେ ଆରମ୍ଭ ହେବାର ଯୋଜନା ପ୍ରାୟ ହୋଇସାରିଛି । ଏଥିପାଇଁ ପ୍ରାୟ ୮-୯ ଲକ୍ଷ ଟଙ୍କା ଖର୍ଚ୍ଚ ହେବ ବୋଲି ଅଟକଳ କରାଯାଇଛି । ଏହି ଭଞ୍ଜ ଭବନରେ ସବୁ ସାଂସ୍କୃତିକ ଅନୁଷ୍ଠାନର ଉତ୍ସବ ପାଳନ କରାଯାଉଛି । ସମସ୍ତଙ୍କର ସାହାଯ୍ୟ, ଶୁଭେଚ୍ଛା, ସହଯୋଗ ଦ୍ୱାରା ଆଦର୍ଶ ପାଠାଗାର ଉପରୋକ୍ତ କାର୍ଯ୍ୟପାଇଁ ସକ୍ଷମ ହେଉଛି । ଏହିଭଳି ସହଯୋଗ ଯଦି ମିଳେ ତେବେ ପାଠାଗାର ଏକ ଅନ୍ୟତମ ପାଠାଗାର ଭାବେ ଗଢ଼ି ଉଠିବ ।

"ଜୟହିନ୍ଦ୍"